ଦେଖି ଭୀମ ଆଗ ହେଲେ[୧] । ବେଣ୍ଟ ଗଦାବର କରେ ଧଇଲେ[୨] ଯେ
କୋପଭରେ ବୁଲାଇଲେ[୩], ସେ ବୀର ହେ ।।୮୭।।
ରାଧିକା ପ୍ରାଣ ବଲ୍ଲଭ । ତାଙ୍କ ପଦ୍ମପାଦ ଯୁଗ[୪] ଦୁର୍ଲ୍ଲଭ ହେ
ଦିଗମ୍ବର କଲେ ଲୋଭ, ଚିତ୍ତଂରେ ଯେ ।।୮୮।।

## ଦ୍ୱାଦଶ ଛାନ୍ଦ

### ରାଗ—ପାହାଡ଼ିଆ କେଦାର

ଏମନ୍ତେ ଶୁଣି ସେ ଭୀମସେନ    ବେଣ୍ଟ ଗଦାକୁ ଘେନି[୫] ବହନ
ବୁଲାଇ ଗନ୍ଧର୍ବଙ୍କ[୬] ଉପରେ ନେଇ ପିଟିଲେ ହେ
ପଡ଼ିଲେ ପାଞ୍ଚ ସାତ ଯେ ବୀର    ବେଢ଼ିଣ ଦେବେ[୭] କଲେ ସମର
ଧରିକେ ଗଦାବର ପ୍ରହାର ଭୀମକୁ କଲେ[୮] ଯେ
ଭୀମ ଅଙ୍ଗେ[୯] ପଡ଼ି ସହସ୍ର ମାନ ଯେ
ପାଷାଣେ ଢେଙ୍କା ପରି[୧୦] ହୁଅନ୍ତି ଚୂର୍ଣ୍ଣ ଯେ
ପୁଣ ମିଶିଣ ସେ ବୃକୋଦର    ଗଦାକୁ ବୁଲାଇ କରେ[୧୧] ପ୍ରହାର
ବହୁତ ଭଙ୍ଗ ରଣେ ପଡ଼ିଲେ[୧୨] ଗନ୍ଧର୍ବ ସୈନ୍ୟ ଯେ ।।୧।।

---

୧ । ଖ. ହୋଏ
୨ । ଖ. ବୁଲାଉ
୩ । ଖ. ଉଚେଇ
୪ । ଖ ଗ ଘ. ପାଦଯୁଗ ଦେବ
୫ । ଖ. ବୁଲାଉଣ
ଗ. ଗଦା ବୁଲାଉଣ
ଘ. ଗଦା ବୁଲାଉ
୬ । ଖ ଗ ଘ. ଗନ୍ଧର୍ବ ମାନଙ୍କରେ
୭ । ଖ. ପୁଣ
ଗ. କଲେ ଘୋର
ଘ. ପୁଣ ବେଢ଼ୀଣ
୮ । ଖ ଗ ଘ. କେ ଶର ମାରେ କେ ଗଦାବର ପ୍ରହାର କଲେ ହେ
ଗ. ସବ
୯ । ଖ ଗ ଘ. ଅଙ୍ଗରେ
୧୦ । ଖ ଘ. ଢେଲପ୍ରାଏ
ଗ. ଢେଲ ମାନ
୧୧ । ଖ ଘ. ଗଦା ବୁଲାଇ କଲେ
ଗ. ଗଦା ବୁଲାଇ କରେ
୧୨ । ଖ ଘ. ପଡ଼ିଲେ ହାରେ

ଦୁଷ୍ଟନ୍ତେ ସନ୍ୟ[୧] ସେ ଭୀମସେନ      କନ୍ଧେ ବସାଇ ଧର୍ମନନ୍ଦନ
 ଗିରି ଶିଖରୁ ତଳକୁ ବେଗେ ଡେଇଁ ପଡ଼ିଲେ[୨] ହେ
ପୁଣ ବେଢ଼ିଲେ[୩] ଗନ୍ଧର୍ବ ବୀର      ଧର୍ମସୁତଙ୍କୁ[୪] ଛାଡ଼ି ଭୂମିର
 କୋପରେ ଭୀମ ଗଦା ବୁଲାଇ ଧାଇଁ ମାଇଲେ[୫] ହେ
 ଏକ ଉପରେ ଆରକକୁ କସ୍ମଡ଼ି ହେ
 କୋପଭରେ ଛାଡ଼ନ୍ତି ସେ ସିଂହରଡ଼ି[୬] ହେ
ପୁଣି ହିଁ ଗଦା ପ୍ରହାର କଲେ      ବହୁ ଗନ୍ଧର୍ବ ସମରେ ମଲେ
 ଦେଖିଣ ସନ୍ୟ ମହାଭୟରେ ପଳାନ୍ତି ଛାଡ଼ି ହେ ।।୨।।
ଚିତ୍ରଂ ସୁଧିଷ୍ଟି ଦେବ ବଦନ      କହନ୍ତି ଭୀମସେନ ବଚନ[୭]
 ମୋତେ ଯେ ସଙ୍ଗେ ଆଣୁ ନଥିଲ ଜଳଅଁ ବୋଲି ହେ
ଏହି ପର୍ବତେ ଥାଅ[୮] ହେ ପଡ଼ି      ଏବେ ପଳାଅ ଅମ୍ଭଙ୍କୁ ଛାଡ଼ି
 କୃଷ୍ଣ ଛାମୁରେ ଜଣାଅ ଭୀମ ରହିଲା ବୋଲି ହେ[୧୦]
 ଶୁଣି ସୁଧିଷ୍ଟି ଦେବେ[୧୧] ପଳାଇ ଗଲେ ହେ
 ରାମକୃଷ୍ଣ ଛାମୁରେ ଯାଇ[୧୨] ମିଳିଲେ ଯେ
କହିଲେ ପ୍ରାଣ ଘେନି ଅଇଲୁ      ଭୀମକୁ ରଣ ମୁଖରେ ଦେଲୁ
 ଆହା ମୋ ଭୀମସେନ ବୋଲିଣ ରୋଦନ କଲେ ହେ ।।୩।।

---

୧ । ଖ ଘ. ଥାଠ
ଗ ଛ. ଥାଅନ୍ତି
୨ । ଖ ଘ. ପଡ଼ନ୍ତେ ଡେଇଁ ହେ
ଗ. ପଡ଼ିଲେ ସେହିଂ
୩ । କ ଖ. ବେଢିଲେ
୪ । ଖ ଗ ଘ. ନନ୍ଦନ
୫ । ଖ ଗ ଘ. କୋପେଣ
ଭୀମସେନ ମାଇଲେ ଗଦା ବୁଲାଇ ହେ
୬ । ଗ. ସିଂହରଡ଼ୀ
୭ । ଗ. କହିଆ
ଘ. କହିଲା
୮ । ଖ. ରହନ୍ତି
୯ । ଖ ଘ. ଶ୍ରୀକୃଷ୍ଣ ଛାମୁରେଣ ଜଣାଅ
ମୁହିଁ ରହିଲା ହେ
ଗ. ଶ୍ରୀକୃଷ୍ଣ ଛାମୁରେଣ ଜଣାଅ ରହିଲ
ବୋଲି ହେ
୧୦ । ଖ ବେଗେ
୧୧ । ଖ ଗ. ରାମକୃଷ୍ଣଙ୍କ
ଘ. ରାମ ଶ୍ରୀକୃଷ୍ଣଙ୍କର
୧୨ । ଖ 'ଜାଇ' ପାଠ ନାହିଁ
ଗ ଚରଣରେ
ଘ. ପାଶେ

ଏଣେ ସମରେ ପବନସୁତ    ବହୁତ ସୈନ୍ୟ କରିଣ ହତ[୧]
ଇନ୍ଦ୍ର ଛାମୁରେ ଗଦା ବୁଲାଇ ଯାଇ ମିଳିଲେ ହେ
ପିଟନ୍ତେ ଗଦା ଇନ୍ଦ୍ର ଉପରେ    ଗଜ ଛନ୍ଦିଲା ଘୋର[୨] ହସ୍ତରେ
ଫିଙ୍ଗି ଦିଅନ୍ତେ ଶତେ[୩] ଯୋଜନେ ଯାଇ ପଡ଼ିଲେ ସେ
ଯୁଧିଷ୍ଠି ଦେବଙ୍କର ଦେଖି ବିକଳ ହେ[୪]
କୋପ କରିଣ ଧାଇଁଲେ ଲୋକପାଳ ହେ
ନନ୍ଦିଘୋଷରେ ବସି ଅର୍ଜୁନ    ଦାରୁକ ବାହୁଅଛି ସେ ଯାନ
ଶ୍ରୀକୃଷ୍ଣ ଆଦି ରଣେ ଧାଇଁଲେ ସକଳ ବଳ ହେ[୫] ॥୪॥
ଗିରି ଶିଖରୁ ବେଗେ ଉତ୍ତରି[୬]    ସକଳ ଦେବେ ରଣେ ଆବୋରି[୭]
ଭୀମସେନ[୮] ରଣେ[୯] ଅଚେତ ହୋଇ ପଡ଼ିଣ ଥିଲେ ହେ
ଉଠିଲେ ପୁଣି ସଚେତ ହୋଇ[୧୦]    ଶ୍ରୀକୃଷ୍ଣଙ୍କୁ ମନରେ ଧାୟି[୧୧]
ବିଶ୍ୱରୂପରେ[୧୨] ଗଦା ବୁଲାଇ ପୁଣି ଧାଇଁଲେ ହେ
ଯମଗଣେ ସେ ପଥ ଓଗାଳି ତାଙ୍କୁ ସେ[୧୩]
ଗଦା ପରଶୁ ପ୍ରହାର କରି ଅଙ୍ଗକୁ ହେ[୧୪]
ବଜ୍ର ଅଟଇ[୧୫] ଯାହା ଶରୀର    ସହସ୍ର ପଡ଼ି ହୁଅଇ[୧୬] ଚୂର
ଗଦା ପ୍ରହାରେ ଭୀମ ମାଇଲେ ଯମଗଣକୁ ହେ ॥୫॥

---

୧ । ଗ. କଲେ ନିପାତ
୨ । ଖ ଗ ଘ ଘୋର
୩ । ଖ ଗ ଘ. ଯାତ
୪ । ଗ. ଯୁଧିଷ୍ଠି ଦେବେ ଦେଖି ହେଲେ
ଆକୁଳ ହେ
୫ । ଖ ଘ. ଶ୍ରୀକୃଷ୍ଣ ସଙ୍ଗେଣରେ
ଧାଏ ସକଳ ସୈନ୍ୟ ହେ
୬ । ଗ. ଉତ୍ତରି
ଘ. ଉତ୍ତରି କରି
୭ । ଖ ଘ. ସମର କରି
୮ । ଗ. ଭୀମ ସେ
୯ । ଘ. ସେ
୧୦ । ଖ ଗ ଘ. ପୁଣ ସେ ସେଚୀ କରି
୧୧ । ଖ ଘ. ମନେ ସୁମରି
ଗ ଯଦୁପତିଙ୍କୁ ମନେ ସୁମରି
୧୨ । ଗ. ବିଶ୍ୱରୂପରେ
୧୩ । ଖ. ଦେଖି ଓଗାଳିଲେ ତାହାଙ୍କୁ ହେ
ଘ. ଦେଖିଣ ଓଗାଳି ତାଙ୍କୁ
୧୪ । ଖ. ପ୍ରହାରିଲେ ଦେହଙ୍କୁ ହେ
ଗ. ପ୍ରହାର କଲେ ତାଙ୍କୁ ସେ
ଘ. ପ୍ରହାରନ୍ତି ଦେହକୁ
୧୫ । ଖ ଘ. ଭିନ
୧୬ । ଗ. ହୋଇଲେ

କୋପେଣ ଭୀମ ବଳବନ୍ତ ରଡ଼ି                    ଯମଗଣଙ୍କୁ ଧରି କଚୁଡ଼ି
ମୃତ୍ୟୁ ଦେବତା ଦେଖି ମନ୍ତ୍ରଣ[1] ଚଳି ଓଗାଳ ଯେ
ଦେଖିଣ ଭୀମ କରି ଗର୍ଜନ                ଶିରେ ପିଟନ୍ତେ ଗଦା ବହନ
ମୃତ୍ୟୁ ଦେବତା ଅଜ୍ଞାନ ହୋଇ ପଡ଼ନ୍ତା ଭଳ ଯେ
ଯମ ହୃଦରେ ଗଦା[2] ପ୍ରହାର କଲେ ଯେ
ପ୍ରାଣ ହାରି ଶମନ ଭୂଳ ପଡ଼ିଲେ ଯେ
ତାଙ୍କର[3] କାଳଦଣ୍ଡ ଛଡ଼ାଇ                ଘୁଞ୍ଚିଲେ ଦେବଗଣ ବଡ଼ାଇ[4]
ସେହି ସବହେଁ ଦେବଗଣଙ୍କୁ ହୋଧେ[5] ମାଇଲେ ଯେ
ଯମକୁ ଯେନ ମଛନ୍ତି ଯାଏ                ମୃତ୍ୟୁ ଉଠିଣ ବେଗେ ପଳାଏ[6]
ବରୁଣ ସହି ନ ପାରିଲି ସେ ଅର୍ଜୁନ ଶର[7] ଯେ
ବହୁତ ସନ୍ୟ ମଲେ ତାହାର                ମୋହେଣ ପଡ଼ିଥିଲ[8] ଭୂମିର
ଚେତନା ପାଇ ଉଠି ପଳାଇ ଗଲ[9] ସତ୍ୱର ଯେ
ଚନ୍ଦ୍ର ସୂର୍ଯ୍ୟ ଏ ବେନି[10] ଗଗନେ ..ଲେ ଯେ
ଶାମ ପ୍ରଦ୍ୟୁମ୍ନ[11] ଶରେ[12] ଆକୁଳ ହେଲେ ଯେ
ଶ୍ରୀକୃଷ୍ଣ ଶର ଘାତେ କୁବେର                ସମର ଛାଡ଼ି ହେଲେ ଅନ୍ତର
ଯକ୍ଷଗଣଙ୍କୁ[13] ଯାଦବେ ବେଢ଼ି କରି ମାଇଲେ ଯେ ॥୭॥

---

୧ । ଖ. ଦେଖିଣ ଶବ
 ଗ. ସବ
 ଘ. ମୃତ୍ୟୁ ଦେବତା ଦେଖିଣ ସବ
୨ । ଗ. ବହନ (ଅଧିକ)
୩ । ଖ ଗ ଘ. ତା କରୁ
୪ । ଖ ଗ ଘ. ସେ ଭୀମସେନ ସେହିଣ ଜାଣ
୫ । ଖ ଗ ଘ. ଶହସ୍ର ଧରିଣ ଦେବ ସନ୍ୟ
୬ । ଖ ଗ. ମୃତ୍ୟୁକୁ ସେନ ଶବ ପଳାଏ
 ଘ. ମୃତ୍ୟୁକୁ ସେନ ସବ ପଳାଏ
୭ । ଗ ଘ. ସର
୮ । ଘ. ପଡ଼ିଥିଲେ
୯ । ଗ ଘ. ପାଧ୍ୱ° ପଳାଇ ତତ୍ତ୍ୱ° ଗଲେ
୧୦ । ଘ. 'ବେନି' ପାଠ ନାହିଁ
୧୧ । ଖ. ପଦ୍ମନ
 ଘ. ସ୍ୱାମ ପଦ୍ମନ
୧୨ । ଗ ଘ. ସରେ
୧୩ । ଖ. ଯମଗଣଙ୍କୁ

କ୍ରୋଧ କରିଣ ସେ କାମପାଳ          କରେ[1] ଶୁଳାଇ ହଳ ମୂଷଳ
ଯଷ୍ଟ କନ୍ଧର ଗଛଙ୍କ ବନ ଧରି[2] ମାରନ୍ତି ସେ
ତ୍ରିଦଶେ ଦେଖି ଭୟ ଭାଜନେ[3]          ବିଡ଼ୌଜାଠାରେ ଶରଣ ଗଲେ
ସନ୍ୟ ମଣ୍ଡବା ଦେଖିଣ ଇନ୍ଦ୍ର କୋପ କରନ୍ତି ସେ
ଲୃଷ ମେଘକୁ ହକାରିଲେ ଆସ[4] ହେ
ବୋଟଲ ପ୍ରଳୟ କାଳ ପରି[5] ବରଷ ହେ
ପୁଣି ପବନ ପାଶେ ହକାରି[6]          ବୋଇଲେ ଯାଅ ବହନ କରି
ଅତି ପ୍ରଖର କରଣି[7] ବହିବ ଅଣବ୍ରଣ ହେ ॥୮॥
ସନ୍ୟ ସକଳ ଦଣ୍ଡ[8] ଉଡ଼ାଇ          ସିନ୍ଧୁ ମଧ୍ୟରେ ଦଅ ବୁଡ଼ାଇ[9]
କେମନ୍ତ କରି ରକ୍ଷା କରିବ ଏ ଦାମୋଦର ହେ
ଅଇରାବତ କନ୍ଧରେ[10] ଥାଇ          ବଜ୍ର ମାରିବ ଭୁହାଇ ମୁଣ୍ଡେ[11]
କେ ଆଜ ତାଙ୍କୁ ରକ୍ଷା କରିବ ପୃଥ୍ୱୀ ଭିତରେ[12] ହେ
ଶୁଣିଣ ମେଘମାନେ କରି[13] ଗର୍ଜନ ହେ
ଜଳ ଶେଜଣ ସେ ଘୋଟିଲେ ଗଗନ ହେ[14]
ଅଠର ପଦ୍ମ ସଇନ୍ୟ[15] ଭୁଲେ          ସେ ଭୃତ୍ୟ ମେଘ ଶୂନ୍ୟେ ମିଶିଲେ[16]
ଧରଣ ଅଣବ୍ରଣ ମୂରତି[17] ବହେ ପବନ ହେ ॥୯॥

---

୧ । ଖ ଘ. କୋପେ
୨ । ଖ ଗ ଘ. ବଳ୍ୟାଧର
୩ । ଖ ଗ ଘ. ଦେଖିଣ ଭୟ କଲେ
୪ । ଖ. ପାପ
ଗ. ହକାରି ଆଣି ପାପ
ଘ. ତାପେ ହକାରି ପାପ
୫ । ଖ ଗ ଘ. ପ୍ରାଏ
୬ । ଖ ଗ ଘ. ହକାରି
୭ । ଖ ଘ. ହୋଇଣ
୮ । ଘ. ଜଅ
୯ । ଗ. ପକାଇ
୧୦ । ଗ ଘ. ଅଇରାବତ କନ୍ଧରେ ଥାଇ
୧୧ । ଗ ଘ. ବଜ୍ରମୁଁ ମାରିବାକୁ ଭୁହାଇଁ
୧୨ । ଘ. ମଧ୍ୟର
୧୩ । ଗ ପୁଣି ମେଘମାନେ କରନ୍ତି
ଘ. ଘନମାନେ କରିଣ
୧୪ । ଖ. ବାଦବ ଆଜ୍ଞା ପାଇଣ ମେଘେ          ଆକାଶ ମାର୍ଗେ ଘୋଟିଲେ ବେଗେ
ଗର୍ଜନ ନାଦ କରିଣ ସେହୁଂ ପୁଣ ରହିଲେ ହେ
ଅଠର ପଦ୍ମ ସଇନ ଭୁଲିଲ          ପବନ ସଙ୍ଗେ ମେଳ ହୋଇଲେ
ପ୍ରଳୟ କାଳ ପରାଏ ସେହୁଂ ହେଲ ପରତେ ହେ
ଜଳ ବେଜଣ ସେ ଘୋଟିଲେ ଗଗନ ହେ
ଦେଖି ଅସ୍ଥିର ହେଲେ ସକଳ ଜନ ହେ   (ଅଧିକ ପାଠ)
ଗ. ଘୋଟିଲେକ ବନ୍ଧନ
ଘ. ଘୋଟିଲେକ ଗଗନ
୧୫ । ଖ. ସଇନ
ଘ. ସହାଦ
୧୬ । ଖ. ମିଳିଲେ
ଗ. ପୁଣ ମିଶିଲେ
ଘ. ଯାଇ ମିଳିଲେ
୧୭ । ଖ ଗ ଘ. ଏକ ହୋଇଣ ସେ ଅଣବ୍ରାସ

ଏମନ୍ତ ଦେଖି ନନ୍ଦ ନନ୍ଦନ    ଚିନ୍ତିଲେ ଚିତ୍ତେ ସେ ହନୁମାନ
କିଷ୍କିନ୍ଧାବନେ[1] ଥାଇ ମାରୁତି ତାହା ଜାଣିଲେ ହେ
ଗମନ କରି ଶୂନ୍ୟ ମାର୍ଗରେ    ମିଳିଲେ ଚକ୍ରୀଂ ଅତି ସତ୍ୱରେ
ଶ୍ରୀକୃଷ୍ଣ ପାଦ ତଳରେ ଯାଇ[2] ପ୍ରସନ୍ନ କଲେ ଯେ
କେଶବ କୋଳ କରି ତାକୁ କହନ୍ତି ହେ
ଦେଖ ପବନ ଅଣଶ୍ୱାସ ବହନ୍ତି ହେ
ମୋ ସବୁ ସୈନ୍ୟ ଉଡ଼ାଇ ନେବେ    ସିନ୍ଧୁ ମଧ୍ୟରେ ବୁଡ଼ାଇ ଦେବେ
ଦ୍ୱାରିକେ[3] ମୋର ସୈନ୍ୟ ରକ୍ଷଣ କର ମାରୁତି ହେ ॥୧୦॥

ଶୁଣିଣ ହନୁ ପୁଚ୍ଛ ବିସ୍ତାରି    ଶ୍ରୀକୃଷ୍ଣଙ୍କ ସୈନ୍ୟ ଦେଲେ ସେ ଘେରି
ପୁଚ୍ଛରେ ତାଳେ ବେଢ଼ ତାଳ ସେ ଅଟଇ ଉଚ୍ଚେ ହେ[4]
ଗଣ୍ଡି ମାଡ଼ଣ[5] ବସିଲେ ହନୁ    ଦେଖି ଗରୁଡ଼ ବିସ୍ତାରି ତନୁ
ଉପରେ ବେଢ଼ ପକ୍ଷି ଘୋଡ଼ାନ୍ତି ଅତ୍ୟନ୍ତ ଯତ୍ନେ ସେ
ତହିଁ ତଳରେ ସର୍ବେ ସୁଖେ ରହିଲେ ସେ
ବାତ ବରଷା କିଛି ନ ଜାଣିଲେ ସେ
ଏମନ୍ତେ ଦେଖି କିରୀ[6] ଅର୍ଜୁନ    ମନ ଭେଦ ସେ ପେଷି ବହନ
ତାଳେ ବହଳେ ଉପରେ ଶର ପୀଡ଼ାପ୍ରେ[7] କଲେ ସେ ॥୧୧॥
ବାସବ ପେଷନ୍ତେ ବଜ୍ର ଶର    ମନ ଭେଦରେ ହୁଅନ୍ତି ତୂର
ଗର୍ଜନ କରି ଘୋର ବରଷା କରନ୍ତି ଘନ ହେ

---

୧ । ଖ ଘ. ଖିଖିନ୍ଧା ବନେ
ଗ. ଖିଷ୍କିନ୍ଧା ବନେ
୨ । ଖ. ପାଦପଦ୍ମ ତଳରେ
ଗ ଘ. ପଦ୍ମପାଦ ତଳରେ
୩ । ଖ ଘ. ଦ୍ୱାରକା
୪ । ଖ ଗ ଘ. ପାର୍ଶ୍ୱ ପ୍ରଷ୍ଠରେ ବେଢ଼ ତାଳରେ
ଅଟଇ ଉଚ୍ଚ ହେ
୫ । ଖ ଗ ଘ. ଗଣ୍ଡି ପାତ୍ତଣ
୬ । ଖ ବୀର
ଗ. ଦେଖିକର
ଘ. ଏମନ୍ତେ ଦେଖିକରି
୭ । ଖ. ସବୁ ପିଡ଼ାପେ
ଘ. ସବୁ ପିଡ଼ାଏ
୮ । ଖ ଘ. ପଡ଼ୀଣ

ଶର[୧] ଗୁଣି ଉପରେ ପଢ଼ି        ଭେଦ ନ ପାରେ ପଡ଼େ ଉପୁଡ଼ି[୨]
ପ୍ରଖରେ ବନ୍ଧ ପଶି ନ ପାରି ଘୋର[୩] ପବନ ଯେ
ଆରତ ଭଞ୍ଜନ କୃପା ସାଗର ହେ
ଏମନ୍ତ ଚରିତ୍ର କଲେ ଶ୍ରୀ ଦାମୋଦର ଯେ[୪]
ନିଷ୍ଟନେ[୫] ଚରିତ୍ର ସର୍ବେ ରହିଲେ        ଦେଖି ବାସବ ବିରସ ହେଲେ
ପବନ ବନ୍ଧ ଘୋର ବରଷା ହେଲେକ ଥିର[୬] ହେ ॥୧୨॥
ପବନ ମୂର୍ତ୍ତି[୭] ହନୁ ଦେଖିଲେ        ଖୃଗଡ଼େ ନେଇ ପ୍ରହାର କଲେ
ମୋହ ହୋଇଣ ପବନ ଧରଣୀରେ ଶୋଇଲେ[୮] ହେ
ମେଘ ଦେଖିଣ ଗଲେ ପଳାଇ        ଚନ୍ଦ୍ର ଆକାଶ ନିର୍ମଳ ହୋଇ
ଅର୍ଜ୍ଜୁନ ମନଭେଦ ଶରକୁ[୯] ସଂଗ୍ରହ କଲେ ଯେ
ଗରୁଡ଼ ଦେଖି ପକ୍ଷି ସଂହାରିଲେ ଯେ[୧୦]
ହନୁ ଲାଙ୍ଗୁଳ ବାହାର କରି ନେଲେ[୧୧] ଯେ
ଦେଖିଣ ସର୍ବ ଯାଦବ ବୀର        ପ୍ରତିଜ୍ଞା[୧୨] କରି ହେଲେ ବାହାର
ଯେ ଯାହା କରେ ନିଜ ଆୟୁଧ ଧରି ଧାଇଁଲେ[୧୩] ହେ ॥୧୩॥
ଶିବଗଣଙ୍କୁ ଯାଇ ଭେଟିଲେ        ବିବିଧ ଶର[୧୪] ପ୍ରହାର କଲେ
ହଳ ମୁଷଳ ଧରିଣ ରାମ ଧାଇଁଲେ କୋପେ ସେ

---

୧ । ଗ. ଘର
୨ । ଖ ଘ. ନ ପାରି ପଡେ ନିଗିଡ଼ୀ
୩ । ଖ ଘ. ପଶିଣ ନ ପାରେଲେ
ଗ. ପସି ନ ପାରିଲେ
୪ । ଖ ଗ ଘ. ବଳଭଦ୍ରବର ଯେ
୫ । ଖ ଗ ଘ. ନିର୍ବ୍ବିଘ୍ନେ
୬ । ଖ ଘ. ପବନ ଘନ ବହୁ ବରସି ହେଲେକ ସ୍ଥିର ହେ
ଗ. ପବନ ବନ୍ଧ ଘନ ବରସି ସ୍ଥିର ହୋଇଲେ ହେ
୭ । କ. ଖ ଘ. ମୃତ
୮ । ଗ, ପଶିଲେ ହେ
୯ । ଗ ଖ. ଘରକୁ
୧୦ । ଖ ଗ ଘ. ନିଜ ପକ୍ଷି ସଂହରି ହେ
୧୧ । ଖ ଘ. ଲାଙ୍ଗୁଡ଼ ନେଲେ ବାହାର କରି ହେ
ଗ. ଲାଙ୍ଗୁଳ ବାହାର କରି
୧୨ । ଘ. ପ୍ରତିଜ୍ଞା
୧୩ । ଖ ଗ ଘ. ଅଚ୍ଛନ୍ତି ଧରି ହେ
୧୪ । ଖ. ଘର

ନନ୍ଦୀକ ଶ୍ରୀମସେନ ଜିଣିଲେ    ଗଣେଶ ତାଙ୍କୁ ଓଗାଳି ଥିଲେ
ଗ୍ରାମ ପ୍ରବେଶ ହୋଇଲେ ଯାଇ ପ୍ରଳୟ ରୂପେ[୧] ହେ
ମୂଷକ ବୁଲାଇଣ ବେଗେ[୨] ପିଟିଲେ ସେ
ଗଣେଶ ଜ୍ଞାନ ହାରି[୩] ତଳେ ଲୋଟିଲେ ସେ
ମହାକାଳକୁ ପ୍ରଦ୍ୟୁମ୍ନ[୪] ବୀର    ଜିଣିଲେ କରି ଘୋର ସମର[୫]
ଯାଦବେ ଶିବଗଣଙ୍କୁ ମାରି[୬] ବିନାଶ କଲେ ସେ[୭] ॥୧୪॥
ସେ ହେମବନ୍ତ ଗିରି ପାଶରେ[୮]    ହନୁ ମିଳିଲେ ଅତି ରୋଷରେ[୯]
ସକଳ ଗିରି ଉଠି[୧୦] ହନୁକୁ ବସନ୍ତେ ମାଡ଼ି ହେ
ବଜ୍ର ଅଟଇ ହନୁ ଶରୀର    ସକଳେ ଚୂର୍ଣ୍ଣ ହୋଇଲେ ଚୂରି
ଯେତେକ ଗିରି ଆସିଣ ହନୁ ଉପରେ ପଡ଼ି ସେ[୧୧]
ହେମବନ୍ତ ଆସି[୧୨] ପାଶେ ମିଳିଲେ ସେ
ଦେଖି ହନୁ ଚପେଡ଼ ପ୍ରହାର କଲେ ସେ
ମୋହେ ପଡ଼ିଲେ ଗିରି ରାଜନ    ବାଧା ପ୍ରହାରନ୍ତେ[୧୩] ହନୁମାନ
ପାର୍ବତୀ ଦେଖି ହନୁମନ୍ତଙ୍କୁ[୧୪] କର ଧଇଲେ[୧୫] ହେ ॥୧୫॥
ମୋହୋ ପିତାଙ୍କୁ[୧୬] ଜୀବନ ଦାନ    ଦିଅ ହେ ପ୍ରଭଞ୍ଜନା[୧୭] ନନ୍ଦନ
ଶୁଣିଣ ହନୁ ରୋଷ ହୋଇଣ ଛାଡ଼ିଲେ ତାଙ୍କୁ ହେ

---

୧ । ଖ ଘ. ଅତ୍ୟନ୍ତ ତାପେ
ଗ. ଅତ୍ୟନ୍ତ କୋପେ
୨ । ଖ ଗ ଘ. ବେଗେ
୩ । ଘ. ଜ୍ଞାନ ତେଜି
୪ । ଖ ଘ. ପଦ୍ମୁନ
୫ । ଗ. ମହାସମର
୬ । ଗ. ବେଢି
୭ । ଖ ଘ. ବେଢ଼ି କରି ମାଇଲେ ହେ
୮ । ଖ. ହେମବନ୍ତର ଗିରି କୁଳରେ
ଗ ଘ. ଗିରି କୁଳରେ
୯ । ଖ ଗ ଘ. ତାଙ୍କ ପାସରେ
୧୦ । ଖ ଘ. ଦେଖି
୧୧ । ଖ. ତାଙ୍କ ଶିରେ ପଡିଲେ ହେ
ଗ. ଅଙ୍ଗରେ ପଡ଼ୀ ଜେ
ଘ. ତାଙ୍କ ଅଙ୍ଗରେ ପଡ଼ିଲେ
୧୨ । ଖ ଘ. ହେମବନ୍ତ ଆସି
ଗ. ଆସିଣ
୧୩ । ଖ. ବାଧାଏ ମାରନ୍ତେ ସେ
ଗ. ବାଧାଏ ମାରନ୍ତେ
ଘ. ବାଧାଏ ମାରନ୍ତି
୧୪ । ଖ. ପାର୍ବତୀଙ୍କର
ଗ. ହନୁମନ୍ତର
ଘ. ପାର୍ବତୀ ଦେଖି ବେନି
୧୫ । ଗ. ଧଇଲେ କର ସେ
୧୬ । ଖ ଗ. ମୋହର ପିତାଙ୍କୁ ପ୍ରାଣଦାନ
ଘ. ମୋର ପିତାଙ୍କୁ ପ୍ରାଣଦାନ
୧୭ । ଖ. ଅଞ୍ଜନାଙ୍କ
ଗ. ପବନର
ଘ. ଅଞ୍ଜନାର

ଅତ୍ୟନ୍ତ କୋପେ ପବନ ସୁତ          ସେଠାରୁ ଚଳଗଲେ ଭୂରତ[1]
ପ୍ରହାର ନାତ[2] ନାଶ କରନ୍ତ ଶିବଗଣଙ୍କୁ ଯେ
ଶ୍ରୀକୃଷ୍ଣ ପାଶେ ପରବେଶ ଶଙ୍କର ଯେ
ଧନୁ ଧର କରନ୍ତ ଘୋର ସମର[3] ଯେ
ଦେଖି ନାରଦ ତୋଷ ହୁଅନ୍ତ          ଲାଗୁ ବୋଲଣ ଉଚେ ଡାକନ୍ତ
ବୀଣା ବଜାଇ ନୃତ୍ୟ କରନ୍ତ ସେ ତପୀବର ହେ ॥୧୬॥
ବାସବ ଚଢି ଅଇରାବତ          ଯାଦବ ବଳ କରନ୍ତ ହତ
ଦେଖି ଅର୍ଜ୍ଜୁନ ଧନୁ ଧରଣ ତାଙ୍କୁ ଓଗାଳ ଯେ[4]
ଦେଖି ବଜ୍ରୋନା[5] ପେଷିଲେ ଶର          ଦୁରୁ ଛେଦଲେ ଅର୍ଜ୍ଜୁନ ବୀର
କେତେବେଳେ ସେ ଅର୍ଜ୍ଜୁନ ଶର[6] ଛେଦନ୍ତ ମିଳ ଯେ[7]
ଦେବଶରରେ[8] ବେଢ଼ କଲେ ସମର ହେ
ସ୍ଵର୍ଗ ଭୁବନ ହୋଇଲା ଅନ୍ଧକାର ହେ[9]
କରନ୍ତ ବେଢ଼[10] ଅସଂଖ୍ୟ ରଣ          ଅପୂର୍ବ ଦେବଶର[11] ପେଷିଣ
କ୍ରୋଧେ ଈଶ୍ୱର ଧଇଲେ ପଶୁପତକୁ କର ଯେ[12] ॥୧୭॥[13]

---

୧ । ଖ ଗ ଘ. ଭ୍ରତ
୨ । ଶ ଘ ସ. ପ୍ରହାର କର
୩ । ଘ ସ. ମହାସମର
୪ । ଖ ଘ ଦେଖି ତାହାଙ୍କୁ ଆଗେ ଓଗାଳ
ଅର୍ଜ୍ଜୁନ ବୀର ହେ
୫ । ଗ ବାସବ ଦେଖି
୬ । ଗ କେତେବେଳରେ ଅର୍ଜ୍ଜୁନ ସର
୭ । ଖ ବାସବ ଶତେ ଶର ପେସିଣ ଅର୍ଜ୍ଜୁନ
ଏକ ଶରେ ଛେଦ ଯେ
ପଞ୍ଚନାରାଚ ପେସିଲେ ଗୁଣ ଛେଦନ୍ତୀ
ସୁନାସୀର ହେ
ଘ. ବାସବ ସତେ ସର ପେସିଣ ଅର୍ଜ୍ଜୁନ
ଏକ ସରେ ଛେଦଣ
ସାଅ ନାହାସ ପେସିଲେ ଛେଦନ୍ତୀ ସୁନା
ସୀର
୮ । ଖ. ଦେବଶରରେ

୯ । ଖ ନ ଘ. ଅର୍ଜ୍ଜୁନ ମନଭେଦ ପେସିଲେ
ବାସବ ଅଙ୍ଗେ ଭେଦ ହୋଇଲେ
ଶର ଯାଳାରେ ମୋହେ ପଡ଼ିଲେ
ସେ ପୁରନ୍ଦର ହେ
ଅର୍ଜ୍ଜୁନ ତହୁଂ ଗଲେକ ଚଳି
ଦେଖିଲେ ଯୁଦ୍ଧ କରନ୍ତୀ ଶୂଳୀ
କୃଷ୍ଣଙ୍କୁ ପଛ କରିଣ ବୀର
କଲେ ସମର (ଅଧିକ ପାଠ)
୧୦ । ଖ ହୋଇଲା ତହିଁ
ଘ. କରନ୍ତେ ତହୁଂ
୧୧ । ଖ. ଦେବଶର
୧୨ । ଖ ଘ. ପସୁପତ ଶ୍ରୀକର ହେ
୧୩ । ଖ ଗ ଘ.
ଦେଖି ଅର୍ଜ୍ଜୁନ ଧନୁକୋଣ ଧଇଲେ ହେ
ଶଙ୍କର ଧନୁକୋଣ ମନେ ଚିନ୍ତଲେ ହେ

ଈଶ୍ୱର ଠାରୁ ସେ ଧନୁ ବହାଣ    ପ୍ରବେଶ ଅର୍ଜୁନର କରେଣ
ବେଢ଼ କକ୍ଷରେ କର ଦେଇଣ ରହିଲେ ହର[1] ସେ
ଶ୍ରୀକୃଷ୍ଣ ବୋଲନ୍ତି ହେ ଅର୍ଜୁନ    ଶିବର ଶିର ଛେଦ ବହନ
କଳି ଲଗାଇ ଆରମ୍ଭ[2] ଏହୁ କଲ ସମର ହେ
ଏ ମୋହୋ ବଚନ କରିବା ବୀର ହେ
କହୁଛ ଦୋଷ ନାହିଁ ସୁରନାଥର ସେ[3]
ଅର୍ଜୁନ ବୋଲେ ଛାଡ଼ିଲେ ଶର[4]    କାକୁତ୍ସ୍ଥ ଉଗ୍ର ହୋଇଲେ ହର
ବହୁତ ଦୋଷ ମୋର ହୋଇବ ଯେବେ ପେଷିବ ଶର[5] ହେ ॥୧୮॥
ଶ୍ରୀକୃଷ୍ଣ ଚନ୍ଦ୍ର ବଚନ ଶୁଣି    ପଦ୍ମ ଚରଣେ ନବେଶି ପାଣି
ବନସ୍ପୃତର ହୋଇ କହନ୍ତି ବୀର ଅର୍ଜୁନ ସେ
ସମରେ ପଶି ରଣେ ହାରିବ    ଉପରେ ପିଠି ଦେଇ ଭାଜିବ
ତାହାକୁ ମୃତ୍ୟୁ ନ କରେ ଦେବ କେବେ ନିଧନ ସେ[6]
ଶୁଣିଣ କୃଷ୍ଣଚନ୍ଦ୍ର[7] ହେଲେ ହରଷ ହେ
ବହୁତ ସୈନ୍ୟ ଦେବେ ହୋଇଲେ ନାଶ ହେ[8]
ଯେ ଥିବା ଥିଲେ ପଳାଇ ଗଲେ    ଦେଖିଣ ସୁମ ତୋଷ ହୋଇଲେ
କହନ୍ତି ଏବେ ମୋ ବାଣୀ ଶୁଣିମା ହୃଷୀକେଶ ହେ ॥୧୯॥
ଯାହା ମୁଁ ସତ୍ୟ ଅଛଇ ଭଣି[9]    ଯେବେ ଇନ୍ଦ୍ରକୁ ପାରିବ ଜିଣି[10]
ସ୍ୱର୍ଗରେ ନୂଆ ଇନ୍ଦ୍ର କରିବ[11] ନିଶ୍ଚୟେ ଆଜ ହେ

---

୧ । ଖ ଘ. ହର ରହିଲେ ହେ
ଗ. ଅର୍ଜୁନ କକ୍ଷରେ କର ଦେଇଣ ହର ରହିଲେ
୨ । ଖ. ଆରମ୍ଭ
ଗ. କଳି ଆରମ୍ଭ
ଘ. ଆମ୍ଭରେ
୩ । ଖ ଗ ଘ. ପାଠ ନାହିଁ
୪ । ଖ ଗ ଘ. କହେ ଛାଡ଼ିଲେ ଶର
୫ । ଗ ଘ. ସର
୬ । ଖ ଗ. "ଶ୍ରୀକୃଷ୍ଣ ଚନ୍ଦ୍ର ବଚନ-କେବେ ନିଧନ ସେ" ପାଠ ନାହିଁ
୭ । ଖ. ଶ୍ରୀକୃଷ୍ଣ ଚନ୍ଦ୍ର ଶୁଣି
ଗ. ଶୁଣି କୃଷ୍ଣଚନ୍ଦ୍ର
ଘ. ଶୁଣି ଶ୍ରୀକୃଷ୍ଣ ଚନ୍ଦ୍ର
୮ । ଖ ଘ. ଦେବସୈନ୍ୟ ହେଲେ ବିନାଶ
ଗ. ଦେବସୈନ୍ୟ ହୋଇଲେ ନାଶ
୯ । ଖ ଗ ଘ. ଯାହା ସେ ସତ୍ୟ ଅଛୁ ମୁଁ ଭଣି
୧୦ । ଖ ଗ ଘ. ମାରି
୧୧ । ଖ ଘ. କରିବ

ବହୁତ ଯଶ କଲ୍ଲ ଅର୍ଜ୍ଜୁନ ଘେନଣ ଯିବା ଧର୍ମନନ୍ଦନ
ସ୍ୱର୍ଗପୁରରେ ଜଣବା ଆଜ[1] ଏ ଦିଶ ରାଜ[2] ହେ
ଶ୍ରୀକୃଷ୍ଣ ଶୁଣି[3] ଆନନ୍ଦ ହେଲେ ଯେ
ସମସ୍ତଙ୍କୁ ଘେନି ସ୍ୱର୍ଗକୁ[4] ଗଲେ ଯେ
ବ୍ରହ୍ମାଙ୍କ ସଙ୍ଗେ ସକଳ ସୁର ଶଙ୍କର ଆଦି ଯକ୍ଷ କିନ୍ନର
ସକଳେ ରାମକୃଷ୍ଣ ଚରଣେ ବନ୍ଦନ କଲେ ହେ ॥୨୦॥
ଘେନାଙ୍କ ସଙ୍ଗେ ଅନ୍ତ୍ରବ୍ରତ[5] ସୁଧର୍ମା ସଭାରେ ଧର୍ମସୁତ
ବସାଇ ବ୍ରହ୍ମା ଆପଣେ ଅଭିଷେକ ସେ କଲେ ଯେ
ଶ୍ରୀକୃଷ୍ଣ କରେ ଘେନଣ[6] ପାଟ ବାନ୍ଧିଲେ ଯୁଧିଷ୍ଠିଙ୍କ ଲଲାଟ
ଦେଖି ଈଶ୍ୱର ଶିରରେ ଛତ୍ର ଟେକି ଧଇଲେ[7] ଯେ
ବୀଣାଧର ନାରଦ ନୃତ୍ୟକୁ କଲେ[8] ଯେ
ଗନ୍ଧର୍ବମାନେ ମଙ୍ଗଳ ଉଚ୍ଚାରିଲେ ଯେ[9]
ବିଦ୍ୟାଧରୀଏ ଗାବନ୍ତି ଗୀତ[10] ଅପସରୀଏ କରନ୍ତି ନୃତ୍ୟ
ପବନ ପାଶେ ରତ୍ନ ଚାମର ଧୀରେ ଢାଳନ୍ତି[11] ଯେ ॥୨୧॥
କୁବେର କରନ୍ତି ରତ୍ନ ବୃଷ୍ଟି ପଢ଼ନ୍ତି ବେଦ ସେ ପରମେଷ୍ଟି
ଆପଣେ ବଳଦେବ କୁସୁମ ବୃଷ୍ଟି କରନ୍ତି[12] ଯେ

---

୧। ଖ. ସୁରପୁରରେ ଜଣବା ନେଇ
ଗ. "ଆଜ" ପାଠ ନାହିଁ
ଘ. ନେଇ
୨। ଗ. ରାଜନ
୩। ଖ ଗ ଘ. ଶୁଣି କୃଷ୍ଣ ଏମନ୍ତ
୪। ଖ. ଘେନଣ ସ୍ୱର୍ଗକୁ
ଗ. ସମସ୍ତ ସୁର ଘେନାଣ ସ୍ୱର୍ଗକୁ
ଘ. ସ୍ୱର୍ଗକୁ
୫। ଗ ଘ. ଅନ୍ଦ୍ରବ୍ରତ
୬। ଘ. ଧଣଣ
୭। ଖ ଗ. ଛତ୍ର ତାଙ୍କର ସିରେ ଟେକଲେ ହେ
ଘ. ଦେଖି ଈଶ୍ୱର ଛତ୍ର ତାଙ୍କର ସୀରେ ବାନ୍ଧିଲେ
୮। ଖ ଗ. ନୃତ୍ୟ କରନ୍ତୀ ହେ
୯। ଖ ଘ. ଉଚ୍ଚରନ୍ତି ହେ
୧୦। ଖ ଘ. ଗାୟନ
୧୧। ଖ ଗ ଘ. ଢାଳୁ ଅଛନ୍ତି ହେ
୧୨। ଘ. ବର୍ଷୁ ଅଛନ୍ତି

ମୃଦଙ୍ଗ ଜୟ ଜୟ ଶବଦ ଗଣିକା ହୁଳହୁଳି ନନାଦ[1]

ଗୁହ୍ୟକ ଗଣ ଦୁନ୍ଦୁଭି ନାଦ କରୁଅଛନ୍ତି ଯେ[2]

ଏମନ୍ତେ ଅଭିଷେକ ବର୍ଷି[3] ସାରିଲେ ଯେ

ସକଳ ଦେବେ ଦେଖି ତୋଷ ହୋଇଲେ ଯେ

ଶ୍ରୀକୃଷ୍ଣ ଘେନି ସକଳ ଦେବ ପ୍ରସନ୍ନ କଲେ ଯୁଧିଷ୍ଠି ଦେବ

ଧର୍ମନନ୍ଦନ ସ୍ୱର୍ଗରେ ଇନ୍ଦ୍ରପଦ ବସିଲେ[4] ଯେ ॥୨୬॥

ଶଚୀ ଅର୍ଜ୍ଜୁନ ଘେନାଇଂ ଗଲେ ପାର୍ଥ ତାହାଙ୍କୁ ଦର୍ଶନ କଲେ

ଶଚୀ କହିଲେ ଶ୍ରୀରାମକୃଷ୍ଣ ହେଲେକ ତୋଷ[5] ହେ

ପ୍ରମଦ କରି କହି ଶ୍ରୀକୃଷ୍ଣଙ୍କୁ[6] ଆନନ୍ଦକାଳେ ଆଣି ପିତାଙ୍କୁ

କ୍ଷମା କରାଅ ପ୍ରସନ୍ନ କରାଇଣ ଏ ଦୋଷ[7] ହେ

ଶୁଣି ଅର୍ଜ୍ଜୁନ ତହୁଂ ସତ୍ୱରେ ଗଲେ ଯେ

ରାମକୃଷ୍ଣଙ୍କ ସମ୍ମୁଖରେ ଜଣାଇଲେ ଯେ[8]

ବ୍ରହ୍ମା ସକଳ ଦେବଙ୍କୁ ଘେନି ଗୋସାଇଁ ଦୁଇକୁଳ ଓ ସଇନି

ଇନ୍ଦ୍ରଙ୍କୁ ଘେନି ଅର୍ଜ୍ଜୁନ ସଙ୍ଗେ ସ୍ୱର୍ଗେ ମିଳିଲେ[9] ଯେ ॥୨୭॥

---

୧ । ଖ ଗ. ସବଦ
ଘ. ହୁଳହୁଳିର ନାଦ
୨ । ଗ. ଗୁହ୍ୟକ ଗଣେ ଦୁନ୍ଦୁଭି ବାଦ୍ୟ ନାଦ
କରନ୍ତି ହେ
ଘ. ବାଦ୍ୟ କରୁଅଛନ୍ତି
୩ । ଖ ଘ. ଆସି ଅଭିଷେକ
ଗ. ବିଧାନ
୪ । ଖ. ଲଭିଲେ
୫ । ଖ ଗ .ଘ. ସକଳେ ଏବେ ହେଲ
ସନ୍ତୋଷ ହେ
ଘ. ହେଲେ ସନ୍ତୋଷ
୬ । ଖ ଗ ଘ. ଜଣାଇ କରି କୃଷ୍ଣଚନ୍ଦ୍ରଙ୍କୁ
୭ । ଖ ଗ ଘ. ରାମଙ୍କୁ କହି କ୍ଷମା କରାଅ
ତାହାଙ୍କ ଦୋଷ ହେ
୮ । ଖ ଆଗେ ଯାଇଂ କହିଲେ ହେ
ଗ. ରାମକୃଷ୍ଣଙ୍କର ଆଗରେ କହିଲେ ହେ
ଘ. ରାମ ଶ୍ରୀକୃଷ୍ଣଙ୍କର ଆଗେ
୯ । ଖ. ପୁଣି ସ୍ୱର୍ଗେ ପଶିଲେ ହେ
ଗ ଘ. ପୁଣି ସ୍ୱର୍ଗେ ମିଳିଲେ ହେ

ସଚଳା[1] କନ୍ୟା ସେନ ଉଡ଼୍ଡୀନା    ଦୂଷଣ କଲେ ଦେବାଧିରାଜା[2]
ବଳରାମଙ୍କୁ ଦୂଷଣ କରି ହୋଇଲେ ଉଗ୍ର ସେ[3]

ସଚଳା ପିତା କୋଳେ ବସିଲେ    ଦେଖିଣ ସର୍ବେ ଆଶ୍ଚର୍ଯ୍ୟ[4] ହେଲେ
କେ ଅବା ତତ୍ତ୍ୱ ପାରିବ କହି କନ୍ୟାର ଶୋଭା ସେ

କୃଷ୍ଣ ଉଠି ଇନ୍ଦ୍ରଙ୍କୁ କୋଳ କରନ୍ତି ସେ
ଆଦର[5] କରି ତାଙ୍କୁ କୋଳେ[6] ବସାନ୍ତି ସେ

କହନ୍ତି ତତ୍ତ୍ୱ ଧର୍ମନନ୍ଦନ    ସଚଳା କନ୍ୟାକୁ ବିଷ୍ୱକସେନ
ବିବାହ କର ସକଳ ମନ ହୋଇବ ଶାନ୍ତି[7] ହେ ॥୨୪॥

ଶୁଣି ଶ୍ରୀକୃଷ୍ଣ ସେ ପୀତାମ୍ବର    ଆନନ୍ଦେ କଲେ ସେ ସିଦ୍ଧକାର
ଶୁଣି ବାସବ ଅମର ପୁରେ କଲେ ଉଚ୍ଛବ[8] ସେ

ସଚଳା ବିଷ୍ୱକସେନଙ୍କୁ ଆଣି    ବିବାହ କଲେ ସାରଙ୍ଗ ପାଣି

ଅନେକ ଯଉତୁକ ସେ ଦେଲେ ରାମ ମାଧବ[9] ହେ
ସକଳ ଦେବେ ଇନ୍ଦ୍ରପୁରେ ରହିଲେ ସେ
ପୀୟୂଷ ପାନ ତହିଁ ସକଳେ କଲେ ସେ

ଇନ୍ଦ୍ରଙ୍କୁ ବହୁ ପ୍ରବୋଧ କରି    ଅନେକ କଥା ତାଙ୍କୁ ଉଚାରି
ଶ୍ରୀରାମକୃଷ୍ଣ ଆଦି ସକଳେ ମେଲାଣି ହେଲେ ॥୨୫॥

---

୧ । ଖ. ସକଳ
୨ । ଖ ଘ. କର ଯୋଡ଼ି ଜଣାନ୍ତି
ମୁହିଁ ହେଲି ଅଗ୍ରାହ୍ୟ ହେ
ଇନ୍ଦ୍ରପଦରୁ ନୋହି ଚଳନ
ଶଙ୍କ ବହିଲି ମୋ ହୋଇ ମନ
ତୋତେ ନ ଚିହ୍ନି ମାତିବ
କଲି କୃପାଜଳଧି ହେ
ଶ୍ରୀହସ୍ତେ ଚକ୍ରେ ମୋତେ ପକାଅ ହାଣି ହେ
ମୃଷ୍ଟି ଦେବେ ହେଲେ ତ କୃପମଣି ହେ
ଏହି ବଚନରେ ନ ସୋଇ ରଜା
ସ୍ୱର୍ଗେ ତ ହୋଇଲି ଦେବରଜା
ଦୂତ ବିବାହ ଇନ୍ଦ୍ର ହୋଇଲେ ସମସ୍ତ
ପୂର୍ଣ୍ଣି ହେ

କର୍ମଂଃ ବାସବର ଶରୀର ବେନି ନୟନୁ
ବହିଲା ନୀର    [ଅଧିକ ପାଠ]
୩ । ଖ ଘ. ବଳରାମଙ୍କୁ ସ୍ତୁତି କରିଣ ହୋଇଲୁ
ଉଗ୍ର ହେ
୪ । ଖ ଗ. ଦେବେ ଆଶ୍ଚର୍ଯ୍ୟ
ଘ. ଦେବେ ଆଶ୍ଚର୍ଯ୍ୟ
୫ । ଖ ଗ ଘ. ସାଦର
୬ । ଖ ଗ ଘ. ପାଶେ
୭ । ଖ ଗ ଘ. ସମ୍ପ୍ରୀତି
୮ । ଖ. ଉତ୍ସବ
୯ । ଖ. ଶ୍ରୀକୃଷ୍ଣ ମୁନି ହେ

ଯଶୋବନ୍ତୀକି ବଧାଛା ଗଲେ          ଈଶ୍ୱର କଇଳାସେ ଗମିଲେ[1]
ସକଳ ଶିବଗଣଙ୍କୁ ଘେନ · ପାର୍ବଣ୍ଡ ଭୁଲେ ସେ
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ସେନ[2]          ଇନ୍ଦ୍ରଙ୍କ ପାଦେ କର ଦଇନ[3]
ରାମକୃଷ୍ଣଙ୍କୁ ମେଲାଣି ମାଗି ରଥେ ବସିଲେ ହେଁ
ଇନ୍ଦ୍ର ଆଜ୍ଞାରେ ତତ୍ତୁଂ ମାତଳି[4] ଗଲେ ସେ
ତମାଳ ବନେ ତାଙ୍କୁ[5] ଛାଡ଼ି ଆଇଲେ ସେ
ଶ୍ରୀ ରାମକୃଷ୍ଣ ସନ୍ୟ ସଙ୍ଗରେ          ପ୍ରବେଶ ହେଲେ ଦ୍ୱାରିକା[6] ପୁରେ
ତାଙ୍କ ଚରଣ ବନ୍ଦଣ ବିଶ୍ୱମ୍ଭର କହିଲେ ସେ[7] ॥୨୭॥

## ତ୍ରୟୋଦଶ ଛାନ୍ଦ

### ରାଗ— ଆହାରୀ

ତମାଳ ବନରେ ସେ ପଞ୍ଚ ପାଣ୍ଡବ ଦ୍ରୁପଦ ରାଜ ନନ୍ଦିନୀ ହେ
ସେ ବନ ତେଜଣ ଭୁଇଁରେ[8] ଗମିଲେ ଯେତଣ ସକଳ ମୁନି ହେ
ସୁଜନେ,[9] ବହୁତ ଦୂର ଗଲେ ହେ
ମହାଭୟଙ୍କର ନିବିଡ଼ ଅନ୍ଧାର[10] ହିରଣ୍ୟ ବନେ ମିଳିଲେ ସେ ॥୧॥

---

୧ । ଗ. ରହିଲେ
ଚ. କଇଳାସକୁ ଗଲେ .
ଘ. ଅଇଲେ
୨ । ଗ ଘ. ମନ୍ତ୍ରୀ
୩ । ଖ. ପାସେ ଭକ୍ତି କରନ୍ତ
ଘ. ଭକ୍ତି କରନ୍ତ
୪ । ଖ ଘ. ମାତେଳୀ
୫ । ଘ. ନେଇ
୬ । ଘ. ଦ୍ୱାରକା ପୁରେ
୭ । ଖ. ଭଣିଲେ ହେ
୮ । କ. ହ୍ୱଣତେ
୯ । ଗ. ରାଜାନ
୧୦ । କ. ତୁଷାର ଅନ୍ଧାର

ସେ ବନ ଦେଖିଣ ଋଷିଙ୍କି ସୁନ୍ଦରୀ ପଷ୍ଟରନ୍ତି[1] ଧର୍ମସୁତ[2] ହେ
ଏକମନ ହୋଇ ଅଗସ୍ତି କହନ୍ତି ଶୁଣିମା ହେଉ ଚରିତ[3] ହେ
ସୁଜନେ,[4] ନାମ ତା ହିରଣ୍ୟକେଶୀ ହେ
ଦିବ୍ୟ ସୁନ୍ଦରୀ[5] ଇନ୍ଦ୍ରପୁର ମୋହିନୀ ରହିଥିଲା ଏଥେ ଆସି[6] ହେ ॥୨॥
ମୃଦୁଗନ ଋଷି ମହାବ୍ରହ୍ମଚାରୀ ମିଳିଲେ ତାର ଭୁବନେ ହେ
ପରମ ସୁନ୍ଦରୀ ମୁନି ମନୋହାରୀ ବସାଇ ତାଙ୍କୁ ଆସନେ[7] ହେ
ରାଜନ,[8] କହଇ ହିରଣ୍ୟକେଶି ହେ
ମୁଁ ଏକା ସୁନ୍ଦରୀ ବନେ ତପ କରି ତୁମ୍ଭେ ତ ସହଜେ ଋଷି ହେ ॥୩॥
ଋଷି ତାହାକୁ ଦେଖି ବଶ ହୋଇଲେ ସେନଗଲ୍ଲ କର ଧରି[9] ହେ
ବ୍ରତ ଛଡ଼ାଇ ଷଡ଼ରସ ପ୍ରକାରେ ଅନ୍ନ ଦେଇ ମନ ହରି ହେ[10]
ରାଜନ, ପିନ୍ଧାଇଣ ଦିବ୍ୟବାସ ହେ
କର୍ପୂର ଚନ୍ଦନ ଦିବ୍ୟ ପୁଷ୍ପମାନ କରାଇ ତାଙ୍କୁ ସୁବେଶ ହେ ॥୪॥
ଦିବ୍ୟ ପଲଙ୍କେ ଅଙ୍କେ ତାଙ୍କୁ ଶୁଆଇ ବେନି ଚରଣ ମଣ୍ଡାଳି[11] ହେ
କାମେ ବଶ ହୋଇ ମୁଖେ ଚୁମ୍ବ ଦେଇ ଗାଢେ ଉଭେ[12] ତପସ୍ବୀରୀ ହେ
ରାଜନ, ବସନ ତାର ଫେଡ଼ିଲେ ହେ
କଲେ ସୁରତ ରସ ଆଣି ଆରମ୍ଭ କରିଜ କୁଚେ ଟିପିଲେ[13] ହେ ॥୫॥

---

୧। ପ. ସେ ବନ ଦେଖିଣ ଋଷୀ ସୁନ୍ଦରୀ
୨। ଖ. ପଚ୍ଚରନ୍ତି ଧର୍ମପୀଣ
୩। ଖ. ନରେଶ ହେ
ପ. ଅଗସ୍ତି କହନ୍ତି ଏକମନେ
ଏବେ ଶୁଣିମା କାହାଣି
୪। ଖ ଗ. ସୁଜନ
୫। ଖ ଗ ପ. ସୁନ୍ଦରୀ
୬। ଖ. ଏଥି ଆସି
ପ. ଅଧୀ ଏଥି
୭। ଖ ଗ. ସେ ବେଶ୍ୟା ସୁନ୍ଦରୀ
ତାଙ୍କୁ ଦେଖିକରି ବସାଇ ଦିବ୍ୟ ଆସନେ
ପ. ସେ ବଣା ସୁନ୍ଦରୀ ତାଙ୍କୁ ଦେଖି
କରି ବସାଇ ଦିବ୍ୟ ଆସନେ
୮। ସୁଜନେ
୯। ଖ ଗ. ଦେଖିଣ ବଶ୍ୟ ହେଲେ କରଧରି
ସେନଗଲ ହେ
ପ. ବଶ ହେଲେ କର ଧରି ସେନଗଲେ ହେ
୧୦। ଖ ଗ. ଅନ୍ନ ତାଙ୍କୁ ଭୁଞ୍ଜାଇଲ ହେ
ପ. ଛଡ଼ରସ ପ୍ରକାରେ ଅନ୍ନ ତାଙ୍କୁ
ଭୁଞ୍ଜାଇଲେ ହେ
୧୧। ପ. ଦିବ୍ୟ ପଲଙ୍କେ ତାଙ୍କୁ ସୁଆଇ
ବେନି ଚରଣ ମର୍ଦ୍ଦିଲେ
୧୨। ଖ ଗ. ଆଲିଙ୍ଗନ କରି ଚୁମ୍ବ ଦେଲେ
ପ. ଆଲିଙ୍ଗନ କରି ଚୁମ୍ବନ ଦେଲେ
ତପଶାଳି ହେ
୧୩। ଖ. କର ସେ କୁଚ ପିଡ଼ୀଲେ ହେ
ଗ ପ. କରଜ କୁଚେ ପିଡ଼ୀଲେ

ହିରଣ୍ୟକେଶୀ ସଙ୍ଗତେ ପଞ୍ଚକଣ ତେତ୍ରେ ଋଷି ନାଶ ଗଲେ ହେ
ଋଷି ବେଦ ଅନ୍ତେ ଶମନ ବସୁଣ ଶିବାକୁଳେ ଜାତ[୧] କଲେ ହେ
ରାଜନ,[୨] ସାରସ ନାମେ ଶୃଗାଳ ହେ
ଗତଜନ୍ମ ହେତୁ କଶଣ ମନରେ ପୁଣ୍ୟ ହଏ ବନ କାଳ ହେ ॥୭॥
ପିତା ମାତା ସ୍ଥାନେ ନରସୁତା ନେଇଁ ଅନ୍ତ ସନ୍ନେ ପାଳଥିଲେ ହେ
ମହୀନ୍ଦ୍ର ରାଜାକୁ କନ୍ୟା ଦାନ କରି ଦୃଷ୍ଟତାକୁ ସମର୍ପିଲେ ହେ
ରାଜନ, ସେ ପୁରଣ୍ୟ ଶିବା ମରଣେ ହେ
ସୂର୍ଯ୍ୟ ବଂଶରେ ସଗର ରାଜା ହୋଇ ଜାତ ହେଲେ ହେତୁ ଗୁଣେ ହେ ॥୮॥
ତପସ୍ୟା କରି ଷାଠିଏ ସହସ୍ର ସୁତା ବିଧାତାକୁ ମାଗେ[୩] ବର ହେ
ତଇବ କୃଷ୍ଣରେ ରାଜମନ୍ତ ଭ୍ରମେ ଷାଠିଏ ସହସ୍ର କୁମର ହେ
ରାଜନ, ପୃଥ୍ୱୀ ମୃତ୍ତିକା ଭକ୍ଷିଲେ ହେ
ଧାତା ବଚନେ କପିଳ ଋଷି ଶାପେ ତାଙ୍କ ଶରୀର ଜଳିଲେ ହେ[୪] ॥୯॥
ସେହି ବଂଶେ ଭଗୀରଥୀ ଜନ୍ମ ହୋଇ ବହୁତ ତପସ୍ୟା କଲେ ହେ
ବହୁ କଷ୍ଟେ କଷ୍ଟେ ଗଙ୍ଗାକୁ ଆଣିଣ ପିତୃଲୋକଙ୍କୁ ତାରିଲେ ହେ
ରାଜନ, ସଗର କାର୍ତ୍ତି ସାଗର ହେ
ଭଗୀରଥୀ ଗଙ୍ଗା ବୋଲାଇଲେ ତେଣୁ ପତିତପାବନୀ ସାର ହେ ॥୧୦॥
ଏହି ବନେ ଥାଇ କେତେକ ସମଏ ସେ ହିରଣ୍ୟକେଶୀ ମଲେ ହେ
ଏଥି ପଥ ଜଗି ବହୁତ ଲୋକଙ୍କୁ କଷ୍ଟରେ ପକାଇଲେ ହେ[୪]
ରାଜନ, ତେଣୁ ଏ ହିରଣ୍ୟ ବନ ହେ
ପିଶାଚୀ ରୂପେ ଅନ୍ଧକାର ହୋଇଛି ତେଣୁ ଏ ଧାତା ବଚନ[୫] ହେ ॥୧୧॥

---

୧ । ଖ ଗ. ଯାତ
୨ । ଘ ସୁଜନ
୩ । ଘ. ମାଗ ବର ହେ
୪ । କ ଗ. ପୋଥିରେ "ସାରସ ନାମେ ଶୃଗାଳ—କଷ୍ଟରେ ପକାଇଲେ ପାଠ ନାହିଁ
୫ । ଖ ଗ. ପୂର୍ବେ ଧାତାର ବଚନ ହେ
ପିଶାଚୀ ରୂପେ ପୂର୍ବେ ଧାତାର ବଚନ ହେ

ଶୁଣି ପାଣ୍ଡବେ ଦଣ୍ଡେ ତହିଁ ରହିଣ ସତ୍ୱରେ ତହୁଁ ଚଳିଲେ[1] ହେ
ଧର୍ମସୁତଙ୍କୁ ଦେଖିକରି ପିଶାଚୀ[2] ମୋକ୍ଷ ଦେହକୁ ପାଇଲେ ହେ
ସୁଜନେ, ତହୁଁ ପାଣ୍ଡବେ ଦ୍ରୌପଦୀ[3] ହେ
ସକଳ ଋଷି ଘେନି ସଙ୍ଗେ ମିଳିଲେ ଅଗସ୍ତି ବନେ ତତ୍କ୍ଷଣେ[4] ହେ ॥୧୨॥
ଦେଖିଲେ ସେ ବନ ଆନନ୍ଦ ସଦନ ସୁସ୍ୱାଦୁ[5] ଫଳ ଅଛନ୍ତି ହେ
ମାର୍କଣ୍ଡ ଋଷି ଧର୍ମନନ୍ଦନଙ୍କୁ ହରଷ ମନେ[6] କହନ୍ତି ହେ
ରାଜନ, ପୂର୍ବେ ଆତାପି ବାତାପି ହେ
ଏହି ବନେ ଗୃହ କରି ରହିଥିଲେ ମାଇଲେ ବହୁତ ତପୀ ହେ ॥୧୩॥
ଆତାପି ମେଷ କରି ସାନଭାଇକି ଦୁଆରେଣ ବାନ୍ଧି[7] ଥାଇ ହେ
ପଥିକମାନେ ପଥଶ୍ରାନ୍ତ[8] ହୋଇଣ ତହିଁରେ ମିଳନ୍ତେ ଯାଇ[9] ହେ
ରାଜନ, ତଉରବେ ସେ ରଖାନ୍ତି ହେ
ଭୋଜନ କରି ଏଥୁ ସନ୍ତୋଷେ[10] ଯାଅ ମେଷ ଗୋଟିଏ[11] ମାରଇ ହେ ॥୧୪॥
ସେ ମାଂସ ଅତି ଯତ୍ନ କରି ରନ୍ଧନ ଭୁଞ୍ଜାଇ[12] ପଥିକ[13] ଜନ ହେ
ଆନନ୍ଦେ କଲ୍ୟାଣ କରିଣ ତାହାକୁ ପଥିକ କରେ ଗମନ ହେ
ରାଜନ, ପଥେ ଆତାପି[14] ଗୋଡ଼ାଇ[15] ହେ
ଆସ ବାତାପି[16] ଆମ୍ଭର ପୁରେ ଯିବା ବୋଲିଣ ଉଚ୍ଚେ ଡାକଇ ସେ ॥୧୫॥

---

୧ । ଖ ଗ. ନଗହ୍ନ ସ୍ୱର୍ଗରେଣ ଚଳି ଗଲେ ହେ
ଘ. ଦଣ୍ଡେ ତହିଁ ନ ରହି ସତ୍ୱରେଣ ଚଳିଗଲେ ହେ
୨ । ଘ. ପିଶାଚି
୩ । ଖ ଦ୍ରୌପଦି
ଘ. ଦ୍ରୁପଦୀ ହେ
୪ । ଗ. ସଙ୍ଗରେ ଘେନିଣ ଅଗସ୍ତି ବନେ ମିଳନ୍ତି ହେ
ଘ. ସଙ୍ଗରେ ଘେନାଇଣ ଅଗସ୍ତି ବନେ ମିଳନ୍ତି ହେ
୫ । ଗ ଘ ଅଛନ୍ତି ନିର୍ମଳ ସୁସ୍ୱାଦୁ
୬ । ଖ ଗ. ହର୍ଷ କରିଣ
ଘ. ହର୍ଷିଣ
୭ । ଖ ଗ. ବାନ୍ଧି
ଘ. ବାତାପି ସାନ ଭାଇକି
ମେଷ କରି ଦୁଆରେଣ ବାନ୍ଧି
୮ । ଗ. ପଥିକମାନେ ପଥଶ୍ରାନ୍ତ
ଘ. ପନ୍ଥିକମାନେ ପଥଶ୍ରାନ୍ତ
୯ । ଘ. ମିଳନ୍ତି
୧୦ । ଘ. ସନ୍ତୋଷେ ଏଥୁ ଯାଅ
୧୧ । ଖ ଗ. ସେ ମେଷ ଗୋଟି
୧୨ । ଖ. ଭୋଜନ କରି ରନ୍ଧିଂଭୁ ଯାଇ
ଗ ଘ. ସେ ମେଷ ଅତି ଯତନ କରି ରନ୍ଧି ଭୁଞ୍ଜାଏ
୧୩ । ଗ. ପଥିକ
୧୪ । ଘ. ପଛେ ବାତାପି
୧୫ । ଗ. ସୁଜନେ, ପଛେ ଆତାପି ବାତାପି ହେ
୧୬ । ଘ. ଆସ ଆତାପି

ଶୁଣି ବାତାପି[1] ପଞ୍ଜରୁ ବାହାରିଣ ଗର୍ଜ୍ଜି ବାହାର ହୁଅଇ ଯେ
ପଥିକ ପ୍ରାଣ ତେଜଣ ତତକ୍ଷଣ[2] ସେହି ଠାବରେ ପଡ଼ଇ ହେ
ରାଜନ, ଶବ ଯେନ ବେନଭ୍ରାତ[3] ହେ
ସେ ମାଂସ ରନ୍ଧନ କରିଣ ଭୋଜନ ଆନନ୍ଦ କରନ୍ତି ଶତ୍ରୁ[4] ହେ ॥୧୬॥
ଯେମନ୍ତେ ଅନର୍ଜୀପ[5] ମାଣ ଖାଇଲେ ଏ ବନ ବାଟ ପଡ଼ିଲା[6] ହେ
ଏହା ଜାଣି ଧାତା ଅଗସ୍ତି ଋଷିଙ୍କି[7] ଏହି ବନକୁ ପେଷିଲେ[8] ହେ
ରାଜନ, ଅଗସ୍ତିଙ୍କି ସେ ଦେଖିଲେ ହେ
ଆତାପି ମେଷକୁ ମାରିଣ ତାହାଙ୍କୁ ଭୋଜନ ବାତାପି ଦେଲେ[9] ହେ ॥୧୭॥
ଭୋଜନ ଅନ୍ତେ ଚଳନ୍ତେ ମହାମୁନି ଆତାପି[10] ଡାକଇ ଆସ ହେ
ଅଗସ୍ତି ବୋଇଲେ ବାତାପି[11] ଆମ୍ଭର ଗର୍ଭେ ପଚିଗଲା[12] ନାଶ ହେ[13]
ରାଜନ କମଣ୍ଡଳୁଂ ଯେନ ମାର ହେ
ମାରନ୍ତେ ତାର ଶରୀର ଭସ୍ମ ଗଲା[14] ବାତାପି ଅସୁର ହେ ॥୧୮॥
ବେନି ଅସୁରଙ୍କୁ ମାରିଣ ଅଗସ୍ତି ଏଥି ପଥ ଛୁଟାଇଲେ[15] ହେ
ବିଧାତା ଏ ବନ ନିର୍ମଳ ଦେଖିଣ ଅଗସ୍ତି ବନ ବୋଇଲେ ହେ
ରାଜନ, ଗର୍ଭେ ଅପାକ[16] ହୋଇଲେ ହେ
ତତକ୍ଷଣେ ଜୀର୍ଣ୍ଣ ହୋଇବ ଅଗସ୍ତି ମନ୍ତ୍ର ପଢ଼ି ଝାଡଦେଲେ ହେ ॥୧୯॥

---

୧ । ଘ. ଆତାପି
୨ । ଘ. ତେଜକର ରୂପରେ
୩ । ଖ. ବେନି ଭାଇ
ଘ. ବେନି ଭ୍ରାଥ ହେ
୪ । ଘ. ବେଗି ଦଇତ
୫ । ଖ ଘ. ଏରଂପେ ଅନର୍ଥୀପ
୬ । ଘ. ବାଟ ପଡ଼ିଲା ହେ
୭ । ଖ ମୁନିଙ୍କି
୮ । ଘ. ବନକୁ ପେଷିଲ ହେ
୯ । ଘ. ମାରିଣ ଭୋଜନ
ସନ୍ତୋଷେଣ ତାଙ୍କୁ ଦେଲେ ହେ
୧୦ । ଖ. ବାତାପି
ଘ. ଚଳନ୍ତି ମହାମୁନି ବାତାପି
୧୧ । ଖ ଘ. ଆତାପି
୧୨ । ଘ. ଗର୍ଭରେ ପଚିଗଲା
୧୩ । ଗ. ନାଶ ଗଲେ
୧୪ । ଖ. ନାଶ ହେଲା
ଘ. ଭସ୍ମ ହେଲା
୧୫ । ଘ. ପଥ ବୁଲାଇଲେ
୧୬ । ଘ. ଅଜୀର୍ଣ୍ଣ

ବାତାପି[୧] ଅସୁର ଭକ୍ଷଣ ଯେ କଲେ ଆତାପି[୨] ମହାପ୍ରବଳ ହେ
ସପତ ସାଗର ଯେ ଆପେ ଶୋଷି[୩] ଅଗସ୍ତି ବଡ଼ବାନଳ ହେ
ରାଜନ, ଏ ଋଷି ବଡ଼ ମହିମା ହେ
ଏହାଙ୍କ କଥା କହିଲେ ନ ସରଇ ପ୍ରଶଂସା କରନ୍ତି ବ୍ରହ୍ମା ହେ[୪] ॥୨୦॥
ଏ ବନ[୫] ଅତି ନିର୍ମଳ ସୁଖକର ଏ ବନେ[୬] ଆମ୍ଭେ ରହିବା ହେ
ଦେଖ ବରଷା ସମୟ ଆସୁଅଛି ଏଥିରେ ନିଶ୍ଚିନ୍ତେ ଥିବା[୭] ହେ
ରାଜନ, ଦିବ୍ୟ ଫଳମୂଳ ଅଛି[୮] ହେ
ଯେତେବେଳେ ଯାହା ଲୋଡ଼ିବେ ପାଇବା ଆଶଙ୍କା ନ ଥିବ କିଛି ହେ ॥୨୧॥
ଶୁଣି ଧର୍ମସୁତ ହରଷ ହୋଇଣ[୯] ରହିଲେ ଅଗସ୍ତି ବନେ ହେ[୧୦]
ପର୍ଣ୍ଣଶାଳା ପୁର ତଳିରେ ରଚିଲେ[୧୧] ଭ୍ରାତମାନେ ଭିନେ ଭିନେ ହେ[୧୨]
ରାଜନ, ଧର୍ମନନ୍ଦନଙ୍କ ପୁରେ[୧୩] ହେ
ସ୍ବତନ୍ତ୍ର ସ୍ବତନ୍ତ୍ର ପୁର କଲେ ତହିଁ କିଛି କିଛି ଦୂରେ[୧୪] ହେ ॥୨୨॥
ଋଷିମାନଙ୍କୁ ଜଣେ ଜଣେ କରଣ ପର୍ଣ୍ଣଶାଳା[୧୫] ନିର୍ମା କଲେ ହେ
ଫଳ ମୂଳମାନ ବନରୁ ଆଣିଣ ଋଷିଙ୍କି ଭୋଜନ ଦେଲେ ହେ
ସୁଜନେ,[୧୬] ନିଶ୍ଚିନ୍ତେ ତହିଁ ରହିଲେ ହେ[୧୭]
ମୃଗୟା କରଣ ଗଣ୍ଡା ମାରି ମାଂସ ଭୋଜନେ ସନ୍ତୋଷ ହେଲେ ହେ ।୨୩॥

---

୧ । ଖ ଘ. ଆତାପି
୨ । ଘ. ବାତାପି
୩ ଖ. ସମୁଦ୍ର ଶୋଷଣ ଯେ କଲେ
ଘ. ସମୁଦ୍ର ଶୋଷ ସେ କଲେ ଅଗସ୍ତି
ବଡ଼ବାନଳ ହେ
୪ । ଖ. ପୋଥିରେ ୧୫-୧୬ ପଦ ହୋଇନାହିଁ
୫ । ଘ. ସେ ବନ
୬ । ଖ ଘ. ଏଥିରେ
୭ । ଖ. ନିଶ୍ଚିନ୍ତ ଏଥି ହୋଇବା ହେ
ଘ. ନିଶ୍ଚିନ୍ତେ ଏଥି ହୋଇବା ହେ
୮ । ଘ. ମୂଳମୂଳ ଅଛନ୍ତି ହେ
୯ । ଖ ଘ. ଲଭିଣ
୧୦ । ଘ. ଅଗସ୍ତି ବନ ହେ
୧୧ । ଖ. ରଚିଲେ
ଘ. ପର୍ଣ୍ଣଶାଳା ପୁର ତଳିରେ ରଚିଲେ
୧୨ । ଘ. ଭ୍ରାତମାନେ ଭିନ ଭିନ ହେ
୧୩ । ଖ. ପୁର
୧୪ । ଖ. ତହିଁ କାଛୁ କାଛୁ ଦୂର ହେ
ଘ. କୁଟୀ କେ
୧୫ । ଖ. ପର୍ଣ୍ଣଶାଲ
୧୬ । ଖ. ରାଜନ
୧୭ । ଘ. ତହିଁ ବସି ରହିଲେ ହେ

ପଶ୍ଚିମ ବିପିନେ ପବନ ନନ୍ଦନ କତୁକ ଦୂର ଗମିଲେ ହେ[1]
ନିବିଡ଼ ବନରେ ଅପୂର୍ବ ପୁରୁଷେ ଅନ୍ଧ ହୋଇଛୁ ଦେଖିଲେ ହେ
ସୁଜନେ, ଅସ୍ଥିରନ୍ତ ସେ ଭୂଷଣ ହେ
ନରତେ ଡାକଇ ଯୁଧିଷ୍ଠିର ସ୍ୱଜନ କର ମୋତେ ପରିତ୍ରାଣ ହେ ॥୨୪॥
ଏମନ୍ତ ଦେଖି ମାରୁତି ଲେଉଟିଣ[2] କହେ ଯୁଧିଷ୍ଠିର ଛାମୁରେ ହେ
ଦ୍ରୌପଦୀ[3] ସହିତେ ସେ ପଞ୍ଚପାଣ୍ଡବେ ମିଳିଲେ ତହିଁ ସତ୍ୱରେ ହେ
ରାଜନ,[4] ଯୁଧିଷ୍ଠିର ମିଳନ୍ତି ପାଶ ହେ
ତତକ୍ଷଣେ ବେନି ନେତ୍ର[5] ସେ ପାଇଣ ଆନନ୍ଦ ଦିବ୍ୟ ପୁରୁଷ ହେ ॥୨୫॥
ଯୁଧିଷ୍ଠିରଙ୍କ ପାଦେ ପ୍ରଣମ କରି ବୋଲଇ[6] ଶୁଣ ନୃପତି ହେ
ପୂର୍ବେ ବିବାଦ ହେଲେ ବିଶ୍ୱାମିତ୍ର ସଙ୍ଗତେ ବଶିଷ୍ଠ ଯତି ହେ
ରାଜନ, ମୋ ନାମ ଅନଳ ବସୁ ହେ
ବିଶ୍ୱାମିତ୍ର ବୋଲେ ବଶିଷ୍ଠଙ୍କ ଗାଭ ହରଇ ମୁଁ ଘେନ ଆସୁଁ ହେ ॥୨୬॥
ଜାଣି ବଶିଷ୍ଠ ମୋର ପାଶେ ମିଳିଣ ଗାଭ ନଅନ୍ତି[7] ଛଡ଼ାଇ ହେ
ମହାକ୍ରୋଧେ ମୁଷ୍ଟି ପଷ୍ଟିଏ ମାଇଲି ତାଙ୍କର ପଛେ ଗୋଡ଼ାଇ[8] ହେ
ରାଜନ, ମୋତେ[9] କୋପେ ଶାପ ଦେଲେ ହେ
ଅନ୍ଧ ହୋଇଣ ଏ ବନେ ମୋତେ ଯେବେ ନ ଚିହ୍ନିଲେ ରେ ॥୨୭॥
ତାଙ୍କର ପାଦତଳେ ପଡ଼ି କାରଣ ମାଗନ୍ତେ ହୋଇଲେ ତୋଷ ହେ
କହିଲେ ସତ୍ୟ ତ୍ରେତୟା ବେନି ଗଲେ ଯେବେ ସେ ହୋଇବ[10] ଶେଷ ହେ
ରାଜନ, ଦ୍ୱାପରେ ଯୁଧିଷ୍ଠିର ଦେବ ହେ
କଉରବଙ୍କ କପଟେ ବନବାସ କରିବେ ପଞ୍ଚପାଣ୍ଡବ ହେ ॥୨୮॥

---

୧ । ପା. ପସିଲେ ହେ
୨ । ପା. ଲେଉଟିଲେ
୩ । ପା. ଦ୍ରୁପଦୀ
୪ । ପା. ସୁଜନେ
୫ । ପା. ବେନି ନୟନ
୬ । ପା. କହଇ ବୋଲନ୍ତି
୭ । ପା. ଗାଭ ନଅନ୍ତେ
୮ । ପା. ପିଟିଲି ତାଙ୍କ ପଛରେ ଗୋଡ଼ାଇ
୯ । ପା. ବନେ ଥାଅ ମୋତେ
୧୦ । ପା. ବେନି ଯୁଗ ଯେବେ ହୋଇବ ଶେଷ ହେ

ସୁଧର୍ମ୍ମ ଦୂତନେ ନସୂନ ଚାଇଣ ଆସିବୁ ଅମରପୁର ହେ
ସେହିଦନୁ ମୂର୍ତ୍ତି ଅନ୍ତ ହୋଇ କର ପଡ଼ି ରହିଲ ବନର ହେ
ସଜନ, ତେଣୁ ତୋ ନାମ ଧରଇ ହେ
ଏତେ କାଳେ ତୋତେ ଦେଖି ନିସ୍ତରିଲ ଆଜ୍ଞା ଦେବ ନରସାଇଁ ହେ ॥୨୯॥
ଏତେ କହି[1] ନମସ୍କାର କରଣ ଆକାଶ ମଣ୍ଡଳେ ଗଲେ ହେ
ମହା ସନ୍ତୋଷ ହୋଇ ପଞ୍ଚ ପାଣ୍ଡବେ ବାହୁଡ଼ି ଚହୁଂ ଅଇଲେ ହେ
ସୁଜନେ, ମିଳଲେ ସେ ନିଜ ବାସ ହେ
ଗଣ୍ଡା ମାର ଦ୍ରବ୍ୟ ଭୋଜନ କରଣ[2] ଲଭିଲେ ଅତି ହରଷ[3] ହେ ॥୨୦॥
ଏମନ୍ତେ କେତେଦିନ ଅନ୍ତେ[4] ବରଷାରତୁ ହୋଇଲା ପ୍ରବେଶ ହେ
ଦଳିତ କଜ୍ଜଳ ପରିଏ ଉଜ୍ଜ୍ୱଳ ଘୋଟିଲା ଘଣ ଆକାଶ ହେ[5]
ସୁଜନେ, ଗିଳିଦେଲା ଗିରି ଶିର[6] ହେ
ତପନ[7] ଗର୍ବ ବିନାଶ କରି ଘନ[8] ଘୋଟାଇଲା ଅନ୍ଧକାର[9] ହେ ॥୩୧॥
ଦିବସକୁ ଗର୍ଭେ ପୂରଇ[10] ରଖିଲା ରାତ୍ରକୁ[11] କଲା ପ୍ରବଳ ହେ
ତାହା ଦେଖିକରି ଆନନ୍ଦ ହୋଇଣ ଖେଳିଲେ ଚଢ଼ତ ମାଳ ହେ
ସୁଜନେ, କରାଇ ଘନ ଗର୍ଜନ ହେ
ତିନି ଭୁବନକୁ ଶବଦ ଶୁଭିଲା ଡ଼ରିଲେ ବିଯୋଗୀ ଜନ ହେ ॥୩୨॥

---

୧ । ଘ. ଏତେକ କହି
୨ । ଘ. ଗଣ୍ଡା ମାରଣ ଦ୍ରବ୍ୟ ଭୋଜନେ ତୃପ୍ତି
୩ । କ ଗ. ପୋଥିରେ ୨୦ରୁ ୨୬ ପଦ ଗୁଡ଼ିକର ପାଠ ନାହିଁ
୪ । ଘ. କେତେକ ଦିନାନ୍ତରେ
୫ । ଖ. ଦଳିଲା କଜ୍ଜଳ ପରି ସଜଳ ଜଳଦ ଘୋଟେ ଆକାଶ ହେ
ଘ. ଦଳିଲା କଜ୍ଜ୍ୱଳ ଜଳଦ ଘୋଟି ଆକାଶ ହେ
୬ । ଘ. ଗିରି ଶିର ହେ
୭ । ଖ ଘ. ତପତ
୮ । ଖ ଘ. ଦସ
୯ । ଖ. ଅନ୍ଧକାର
ଘ. ଘୋଡ଼ାଇ କଲା ଅନ୍ଧାର ହେ
୧୦ । ଖ. ପୁରେଇ
୧୧ । ଖ. ରଜନୀ
ଘ. ଉଦୟ
୧୨. ଗ. ତଡ଼ିତମାଳ ହେ
୧୩ । ଖ ଘ. କରାଇ

କ୍ରମେ ସଲିଳ ମଣ୍ଡିତଲେ ପୂରିଲ[1] ବହିଲ ଝଂଜା ପବନ ହେ
ମହାମତ୍ତ ଭଟର[2] କେଣ୍ଟ କେକା ଡାକି[3] ପୂରିଲ ଯାଇ ଗଗନ ହେ
ସୁଜନେ, ପ୍ରବଳ କଲା[4] ବରଷା ହେ
ଅନ୍ଧାର ଜଳ ଗହଳରେ ବାରିତ ନୋହିଲା[5] ଦିବସ ନିଶା ହେ ॥୩୩॥
ଦର୍ଦ୍ଦୁରମାନେ ଘୋର ଧ୍ୱନି କରନ୍ତି ଡାହୁକ ଅତି ପ୍ରବଳ[6] ହେ
କୁଧର ମହୀରୁହ ଶୋଭା ଦିଶନ୍ତି ଲଭିଲା[7] ବନ ଅନଳ ହେ
ସୁଜନେ, କୋକିଳ ହେଲେ ମଉନ ହେ
କେତେକ ହସିଲ କେତେକ ଭଣିଲ ଧନକୁ ଧନ ନିର୍ଜନ[8] ହେ ॥୩୪॥
କମଳେ ବୁଡ଼ାଇ କମଳ ରଖିଲ[9] ଦେଖିଲେ ତାହା ସାରସ ହେ
ଗମନ କରି ମାନ ସରୋବରକୁ[10] ହୋଇଲେ ଯାଇ ପ୍ରବେଶ ହେ
ସୁଜନେ, ପଥିକ ପଥ ଦୁସ୍ତର ହେ
ହାଳିକମାନେ କେଦାର ମାନଙ୍କରେ ଗୀତ କରନ୍ତି ବିସ୍ତାର ହେ ॥୩୫॥[11]
ନାବିକେ ନାବ ନ ଦେଇ ନିବର୍ତ୍ତିଲେ ନଦୀରେ ପ୍ରଳୟ ବଢ଼ି ହେ[12]
ବ୍ୟାପାରୀମାନେ ଏମନ୍ତ ଦେଖିକରି ଛାଡ଼ିଲେ ବ୍ୟାପାର[13] ଗୁଣ୍ଠି ହେ
ସୁଜନେ, ଗୃହକୁ କଲେ ଆଦର[14] ହେ
କୁଳଶ ପଡ଼ି ଗିରି ଶିରୁଂ ଝଡ଼ିଲେ ଖଣ୍ଡ ଶଇଳ ନିକର[15] ହେ ॥୩୬॥

---

୧ । ଖ. ଛନ୍ଦିଲ
ଘ. ମଣ୍ଡିତଲ ଛୁନ୍ଦିଲ
୨ । କ. ମହାମତ ଭରେ
ଘ. ମହାତମ ଭରେ
୩ । ଖ ଘ. ଏକା
୪ । ଘ. ପ୍ରବଳେ
୫ । ଙ. ଗହଳେ ନ ବାରଲେ କେ ଅଟେ
ଘ. ଜଳ ଗହଳ ନ ବାରଲେ କେ ଅଟେ
୬ । ଖ. ଡ଼ାକ ଗହଳ
ଘ. ଧ୍ୱନି କରନ୍ତି-ଡ଼ାକ ଗହଳ ହେ
୭ । ଖ ଘ. ଧଇତେ ସୁନ୍ଦର ଦଶିଲ ଲିବଲେ
୮ । ଖ: କେତେକ କଥାକୁ କେତେ ହସିଲ
ଘ. ଧନକୁ ଧନ ଦୁର୍ଦ୍ଦିନ ହେ
୯ । ଖ. କମଳ ବୁଡ଼ାଇ ରଖିଲ କମଳ
୧୦ । ଗ. ମାନସ ସରୋବରେ ସେ
୧୧ । 'ଘ' ପୋଥିରେ '୨୪' ପଦଟି ନାହିଁ
୧୨ । ଙ ଘ. ନଦୀରେ ନାବ ପ୍ରବେଶ ଜଗିଲେ ନାବିକଦ କଣ୍ଡୁରୀ ହେ
୧୩ । ଖ ଘ. ବାଣିଜ୍ୟ
୧୪ । ଆଦର କଲେ
୧୫ । ଖ ଘ. କୁଳୀଶ ପଡ଼ିବାରେ ଗିରି ସାନ୍ତରୁଂ
ଖଣ୍ଡ ସଇଳ ଝଡ଼ିଲେ ହେ

ଏମନ୍ତ ଋତୁକୁ ଦେଖି ଧର୍ମସୁତ[1] ଅନ୍ତ ଆନନ୍ଦ ହୋଇଲେ ହେ
ଉତ୍ପଳ ଝଟକ ଦ୍ରୌପଦୀ ଦେଖିଣ ତାଙ୍କୁ[2] ଆଲିଙ୍ଗନ କଲେ ହେ
    ସ୍ୱଜନେ, ଭୁଜକେ କର ନବେଶି ହେ
କୋଳେ ଧରି ପ୍ରିୟବଚନ କହିଣ ନବୀନ ଘନ ଦେଖାନ୍ତି[3] ହେ ॥୩୭॥
ଆରେ ପ୍ରାଣ ପ୍ରିଏ ତୋ କେଶ ସଦୃଏ ପଶ୍ଚିମେ ଉଦଏ ଘନରେ
ତୋ କାନ୍ତି ଦେଖି ନଶ୍ଚଳେ ନ ରହିଲି ବିଜୁରି ଚଞ୍ଚଳ ମନରେ[4]
    ସଜନୀ[5], ଦେଖ ଶକ୍ର ଶରାସନରେ
ତୋ ଭ୍ରୂରୁ ସମ ନୋହିବାରୁ ଆପଣା ଶରୀର କରୁଛି ଲୀନରେ[6] ॥୩୮॥
ଦେଖ ଏ ବକ ମଣ୍ଡଳକୁ ସୁନ୍ଦର ଦଶେ ତୋହୋର[7] ସମାନରେ
କନ୍ଦର୍ପ ଦର୍ପ ଅତଏବ ବଢ଼ିଲା[8] ବିଯୋଗୀ କରେ ଦହନ ରେ
    ସଜନୀ,[9] ଗ୍ରୀଷ୍ମ ଦିବସ ବରଷା ରେ
ଘନ୍ତଘନ୍ତ ରଙ୍ଗ ପଡ଼ୁଅଛି ମାତ୍ର ତୁ ବିନା ମୋର ଭରସାରେ ॥୩୯॥
ଶୁଣି ସେ ବାଣୀ ତରୁଣୀ ଶିରୋମଣି ବାମନୟନାନ୍ତେ ଚୁମ୍ବି ଯେ
କୋଳ କଉତୁକେ ବରଷ ବଞ୍ଚିଲେ ମନରେ ଆନନ୍ଦ ହୋଇ ହେ
    ସୁଜନେ, ଦ୍ରୌପଦୀ ବନ୍ଦ ଚରଣ ଯେ
କହଇ ଦୀନ ବଶୁମ୍ଭର ଚଢ଼ିରେ ଶତ୍ରୁ ପଶିଲି ଶରଣ[10] ହେ ॥୪୦॥

---

୧ । ଘ. ଏମନ୍ତ ଋତୁ ଦେଖିଣ ଧର୍ମସୁତ
୨ । ଘ. ଦେଖିଣ ଦ୍ରୁପଦୀ ତାଙ୍କୁ
୩ । ଖ. କୋଳେ ଧରି ପ୍ରିୟବଚ ହେ
ଘ. ଭୁଜେ କର ନବେଶିଣ ନବୀନ ଘନକୁ
ଦେଖାଇ ଦେନ୍ତି ହେ
୪ । ଖ. ନରହିଲି ଚଞ୍ଚଳ ବିଜୁରି
ଘ. ନ ରହିଲା ଚଞ୍ଚଳ ବିଜୁରି
୫ । ଖ. ସ ଜନି ମ
୬ । ଖ. ଲିନରେ
ଘ. ନୋହିବାରୁ ଆପଣା ଶରୀର କରୁଛି
ଲିନରେ
୭ । ଙ. ବଲାକା ମଣ୍ଡଳି ସୁନ୍ଦର ଦଶେ ତୋ
ହାର
ଘ. ବଲାକା ମଣ୍ଡଳି ସୁନ୍ଦର ଦଶେ
ତୋହୋ ସମାନ ରେ
୮ । ଘ. ଅତିମନ୍ଦ ବଢ଼ିଲ
୯ । ଘ. ସଙ୍ଗିନୀ
୧୦ । ଙ ଘ. ପୁଣି ସୁନ୍ଦରୀ ଗାଢ଼େ ଭଡ଼ି
ଚୁମ୍ବନ ଦଇଲୀ ତାଙ୍କ ମୁଖରେ ହେ
କେଳି କଉତକେ ସେ ଦେନୀ ବଞ୍ଚିଲେ
ବରଷା ମହା ସୁଖରେ ହେ
ସୁଜନେ, ଦ୍ରୌପଦୀ ପତୀ ଚରଣ ହେ
କହଇ ଦୀନ କୃଷ୍ଣମୁର ଚଢ଼ିରେ
ପଶିଲି ମୁହିଁ ଶରଣ ହେ ॥

## ଚତୁର୍ଦ୍ଦଶ ଛାନ୍ଦ

### ରାଗ—କଳସା

ଏକ ଦିନେ ଅର୍ଜ୍ଜୁନ ଯେ[1] ମୃଗୟାକୁ ଗଲେ, ଗଣ୍ଡାବନେ ନେଉଁ ଯେ କାହିଁରେ[2] ନ ପାଇଲେ
ପିଙ୍ଗଳ ପର୍ବତେ[3] ହୋଇଲେ ପରବେଶ, ପିଙ୍ଗଳାକ୍ଷି ଦେବୀଙ୍କି ଦେଖିଣ ହେଲେ ତୋଷ[4] ॥୧॥[5]
ଭ୍ରମଣ କରି ତାହାଙ୍କୁ[6] ବାହୁଡ଼ି ଆଇଲେ, ଦିବ୍ୟ ସରୋବର ତହିଁ ନିକଟେ ଦେଖିଲେ
ନିତ୍ୟକୃତ୍ୟ ସାରିଣ[7] ସେ ହୋଇଲେ ଆନନ୍ଦ, ମଳୟ ପବନ ଯେ ବହିଇ ମନ୍ଦ ମନ୍ଦ ॥୨॥
ସେହି ବନ ଅତ୍ୟନ୍ତ[8] ଯେ ଅଟଇ ନିର୍ମଳ, ନିଦ୍ରାରେ ଯେ ଅଶକତ ପଣ୍ଡୁରାଜା ବାଳ
ଦକ୍ଷିଣକୁ ସୀମସ୍ଥାନ କରି ପହୁଡ଼ିଲେ, ଅଚେଷ୍ଟ ହୋଇକରି ତହିଁରେ ନିଦ୍ରା ଗଲେ ॥୩॥
ଦ୍ୱାରବତୀ[11] ରଥ ଚଢି ପ୍ରବେଶ ହୋଇଲା, ପିଙ୍ଗଳାକ୍ଷିଙ୍କି ଭ୍ରମଣ କରି ବାହୁଡ଼ିଲା
ଅର୍ଜ୍ଜୁନର ପାଶେ ଯାଇଂ[12] ହୋଇଲା ପ୍ରବେଶ, ସୁନ୍ଦର ପୁରୁଷ ଦେଖି ମଦନରେ[13] ବଶ ॥୪॥
ଭୂମିରୁ ତାହାଙ୍କୁ ନେଇ ରଥେ ଶୁଆଇଲା[14], ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲା[15]

---

୧ । ଗ ଘ. ଦିନେକ ଇନ୍ଦ୍ର ନନ୍ଦନ
୨ । ଘ. ଗଣ୍ଡା ଯିବ ନେଉଁ ଚହିଁ କାହିଁ
୩ । ଘ. ପିଙ୍ଗଳ ପର୍ବତରେ
୪ । ଖ. ହରଷ
ଘ. ଦେବୀଙ୍କି ସେ ଦେଖିଣ ହରଷ
୫ । କ ଗ. ପୋଥିରେ ଏହି ଛଅଟି ପାଦରେ ଗୋଟିଏ ପଦ ହୋଇଛି
୬ । ଘ. ଭ୍ରମଣ କରି ତାଙ୍କୁ
୭ । ଖ. ନିତ୍ୟକର୍ମ ସାରି ତହିଁ
ଘ. ନିତ୍ୟକର୍ମ ସାରି ତହୁଂ
୮ । ଖ. ସହଜେ ଯେ ବନ ଅଟେ ଅତ୍ୟନ୍ତ
ଘ. ସହଜେ ବନ ଅଟେ ଅତ୍ୟନ୍ତ
୯ । ଘ. ନିଦ୍ରାଭରେ ଅଶକତ
୧୦ । ଘ. ସୀମନ୍ତିବା
୧୧ । ଘ. ଦ୍ୱାରବତୀ
୧୨ । ଘ. ଅର୍ଜ୍ଜୁନ ପାଶରେ ଯାଇଂ
୧୩ । ଖ ଘ. କାମେ ହୋଇ
ଘ. ଭୂମିରୁ ତୋଳିଣ ତାକୁ ରଥରେ
ଖ ଘ. ଉରରେ ମିଳିଲା

ଯେତେବେଳେ ଚେତନା ପାଇଲେ ଫାଲଗୁନ, ଦେଖିଲେ ବସି ଅଛନ୍ତି[1] ତ୍ରିପୁର ମୋହିନୀ ॥୫॥
ପଚାରିଲେ କେ ତୁ[2] ଅଟୁ କାହାର କୁମାରୀ, କମ୍ପାଇଁ ବନସ୍ତରୁ ଆଣିଲୁ ମୋତେ ହରି
କେବଣ କାର୍ଯ୍ୟ ତୋର କହତ ସମାଚାର, ଶୁଣିଣ ହସି ସୁନ୍ଦରୀ[3] କହଇ ଉତ୍ତର ॥୬॥
ଏହି ସେ କାଞ୍ଚି ନଗର[4] ଅସୁର ଭୁବନ, ନିକୁମ୍ଭ ନାମରେ ଦୈତ୍ୟ ଏଥିର ରାଜନ
ତିନପୁରେ ପ୍ରତାପୀ ସେ[5] ମହାବଳଆର, ଦେବତାମାନଙ୍କର[6] ଉପରେ ସେ[7] ଠାକୁର ॥୭॥
ମୁହିଁ ବିଦ୍ୟାଧରୀ ସ୍ୱର୍ଗପୁରର[8] ସୁନ୍ଦରୀ, ଅମର ପୁରୁ ଅସୁର ଆଣିଅଛି[9] ହରି
ମାୟାବଳେ ମୁହିଂ ତାକୁ ସତ୍ୟ ଯେ କରଇ, ଅବଶଇ କନ୍ୟା ମୋ ପୁରୁଷ[10] ମେଳ ନାହିଁ ॥୮॥
ପିଙ୍ଗଳାକ୍ଷି ଦେବଙ୍କି କରଇ ବରଣେ[11], ଇଚ୍ଛାବର ତାହାକୁ ମାଗଇ[12] ପ୍ରଭଞ୍ଜନ
ଆଜ ମୋତେ[13] ମହାମାୟା ପ୍ରସନ୍ନ ହୋଇଲେ, କାନ୍ତଂ ଆଣି ସ୍ୱାମୀକରି ତୁମ୍ଭଙ୍କୁ ସେ[14] ଦେଲେ ॥୯॥[15]

---

୧ । ଘ. ଦେଖିଲେ ଯେ ବସିଛନ୍ତି
୨ । ଖ. ତୁହି
ଘ. ପଚାରନ୍ତି ତୁହି
୩ । ଘ. ଶୁଣିଣ ସୁନ୍ଦର ହସୀ
୪ । ଙ. କାଞ୍ଚି
ଘ. କାଞ୍ଚି ନଗର
୫ । ଘ. ପ୍ରତାପି ସେ
୬ । ଖ. ତିଦଶୀ ଦେବତାଙ୍କର
ଘ. ତିଦଶ୍ୟ ଦେବତାଙ୍କର
୭ । 'ଖ' ପୋଥିରେ ଏହି ପାଠ ନାହିଁ
ଘ. ଉପରେ ଠାକୁର
୮ । ଖ ଘ. ମୁହିଁ ହାଦେ ବିଦ୍ୟାଧରୀ ସ୍ୱର୍ଗରେ
୯ । ଖ. ଦୈତ୍ୟ ଆଣିଲା ମୋତେ
ଘ. ଦୈତ୍ୟ ଆଣିଲା ମୋତେ
୧୦ । ଖ. ମୁହ ପୁରୁଷେ
ଘ. ମୁଁ ପୁରୁଷେ
୧୧ । ଖ. ଯେ କରଇ
ଘ. ପିଙ୍ଗଳାକ୍ଷି ଦେବ ମୁ କରଇ ବ୍ରଣନ
୧୨ । ଖ. ମାଗଇ ମୁଂ ତାକୁ
ଘ. ତାକୁ ମୁଁ ମାଗଇ
୧୩ । ଖ. ସେତେ ଦନେ
ଘ. ଏତେ ଦନେ
୧୪ । ଖ ତୁମ୍ଭଙ୍କୁ ଆଜ ସେ ମୋତେ
ଘ. ତୁମ୍ଭଙ୍କୁ ମୋତେ ସେ ଆଜ
୧୫ । 'କ' ପୋଥିରେ ତ୍ରୟୋଦଶ ଛାନ୍ଦର
୧୬ । ପଦଠାରୁ ଚତୁର୍ଦ୍ଦଶ ଛାନ୍ଦର
୯ମ ପଦ ପର୍ଯ୍ୟନ୍ତ ନାହିଁ
'ଗ' ପୋଥିରେ ଏହି ଛାନ୍ଦର ୧୨ ପଦ
ପର୍ଯ୍ୟନ୍ତ ପାଠ ଅସ୍ପଷ୍ଟ

ମୋ ରୂପ ଅନୁରୂପରେ[୧] ତୁମ୍ଭେ ଅଛ ବର, ଆସି ପ୍ରାଣନାଥ ହସି ମୋତେ[୨] କୋଳ କର
ମୁଖରେ ଚୁମ୍ବନ ଦେଇ କାମଜ୍ୱର ନାଶ, ରତିରସ ଦେଇଣ ମୋହୋର ମନ ତୋଷ ॥୧୦॥
ଅନେକ କାଳରୁ ମୁଁ ଯେ[୩] ଆଶ କରିଅଛି, ଏତେବେଳ ପାଏ ସେ କେମନ୍ତ ଅଛି ମୂର୍ଚ୍ଛି[୪]
ତୁମ୍ଭର ରୂପକୁ[୫] ଦେଖି ହୋଇଲି ମୁଁ ବାଇ, କନ୍ଦର୍ପ ମୁଖରୁ ମୋତେ ରଖିବ[୬] ଗୋସାଇଁ ॥୧୧॥
ଅର୍ଜ୍ଜୁନ ଶୁଣି ବୋଇଲେ[୭] ରହ ରହ ସଖି, ବହ୍ନଳର୍ଚ୍ଚ[୮] ଲୁହ ତୁ ମୋହୋର ରୂପ ଦେଖି
ପର ସ୍ତ୍ରୀର ମାତା ପର ପୁରୁଷ ମୋ ପିତା,[୯] ପରଦ୍ରବ୍ୟ ନ ହରଇ ନ କରେ[୧୦] ଅହନ୍ତା ॥୧୨॥
ପର କାର୍ଯ୍ୟରେ ଶତ୍ରୁ ମୁଁ ନ ମାରଇ ରଣେ[୧୧], ଦୁଃଖୀ ଲୋକର ବନ୍ଧୁ[୧୨] ମୁଁ ଶରଣ ରକ୍ଷଣେ
ମୋତେ ଆଶ ନ କର ତୁ[୧୩] ଚତୁରୀ ସୁନ୍ଦରୀ, ମୁହିଂ ବନବାସୀ ତୋ ରୂପକୁ କାହିଂ[୧୪] ସରି ॥୧୩॥

---

୧ । ଘ. ମୋ ରୂପ ଅନୁରୂପେ

୨ । ଖ ଘ. ଆସ ଆସ ପ୍ରାଣନାଥ ହସି
ଗ. ଆସ ପ୍ରାଣନାଥ ହସିଣ

୩ । ଗ. କାମକାରୁଂ ମୁଂ
ଘ. ଅନେକ ଦିନରୁ ମୁହିଂ

୪ । ଗ. ଏତେବେଳେ କାଏ ମୋତେ
କେମନ୍ତେ ଅଛୁ ମୁଛି

୫ । ଗ. ତୋହୋ ରୂପ

୬ । ଖ. ରଖିବା

୭ । ଖ. ଧନଞ୍ଜୟ ବୋଇଲେରେ
ଗ. ବୋଇଲେରେ
ଘ. ଧନଞ୍ଜୟ ବୋଇଲେରେ

୮ । ଖ ଗ ଘ. ବହ୍ନଳାତ୍

୯ । ଖ, ମୋର ପର ପୁରୁଷ ପିତା
ଗ. ପର ପୁରୁଷ ମୋର ପିତା
ଘ. ପର ନାରୀ ମାତା ମୋର
ପର ପୁରୁଷ ପିତା

୧୦ । ଘ. ନ କରି

୧୧ । ପରକାର୍ଯ୍ୟେ ଶତ୍ରୁକୁ ନ ମାରଇ ରଣ

୧୨ । ଗ. ଲୋକବନ୍ଧୁ ମୁଂ
ଘ. ଦୁଖିଲୋକ ବନ୍ଧୁ ମୁଂ ସରଣ ରକ୍ଷିଣ

୧୩ । ଖ. ଆହ୍ମ ତୁହିଂ ନ କର
ଗ. ତୁ ଯେବେ ନ କର
ଘ. ଆହ୍ମ ଏବେ ନ କର

୧୪ । ଖ. କୋହ୍ନେ

ହାବବତୀ[1] ବାମା ବୋଲେ ଆହେ ପ୍ରାଣନାଥ[2], କପାଇଁ[3] ନବାଶ କର କହିଲ ଏମନ୍ତ
ପ୍ରସନ୍ନେ ଦେବୀ ତୁମ୍ଭଙ୍କୁ ବର କର ଦେଲେ[4], ବସୁନ୍ଧ ଦଣ୍ଡ ଦଅ ମୋହୋର ଦୋଷ ଥିଲେ ॥୧୪
ନୁହଇ ପର ନାରୀ ମୁଁ ତୁମ୍ଭ ପ୍ରିୟବତୀ[5], ଅବୋଧ ବାମା ମୁଁ ଅଟେ[6] ନବୀନ ଯୁବତୀ[7]
କନ୍ଦର୍ପ ଭୟରେ[8] ମୁହିଁ ପଶିଲି ଶରଣ, ତୁମ୍ଭେ ଯେ ବୋଇଲ[9] ମୁହିଁ ଶରଣ ରକ୍ଷଣ ହେ ॥୧୫॥
ଅର୍ଜ୍ଜୁନ ବୋଇଲେ ଯେ ନୁହଇ[10] କଦାଚିତେ, କଉଁ ଧନ[11] ବଶ ମୁହିଁ ହୋଇଥିଲି ଚିତେ
ଏ ମୋହୋର ବଚନ ଯେ[12] ପାଷାଣର ଗାର; ତୁମ୍ଭେ ନଷ୍ଟନାରୀମାନେ ଇଚ୍ଛାବର ବର[13]॥୧୬॥
ଏବେ ମୋତେ ମେଲ୍ଲିଣି ଯେ ଦଣ୍ଡରେ[14] ସୁନ୍ଦରୀ, ସତ୍ୱର ହୋଇଣ ମୁହିଁ ଯିବ ମୋର[15] ପୁରୀ
ଏହି ସମୟରେ ଯେ ଖଣ୍ଡିଆ ଡ଼ାକ ଦେଲା, ହାବବତୀ ବସୁରଇ ନୃପତି ଅଇଲା ॥୧୭॥
ଅର୍ଜ୍ଜୁନଙ୍କୁ ବୁଝିଁ ରାମା କହଇ ଉତ୍ତର, ନକୁଳନ୍ତ ଦୈତ୍ୟ ବଜାଏ କଳା ମୋର ପୁର
ତାହାର ସ୍ତମ୍ଭରେ ତୋତେ ଦେବ ନେଇ ଧରି, ବୋଲବ ଏ କାହୁଂ ଆସି ପଶିଲା ମୋ ପୁରୀ॥୧୦୦

---

୧ । ଗ ଘ. ହାବ୍ୟବତି
୨ । ଙ. ହାବ୍ୟବନ୍ତ ବୋଇଲ ରୁ ପୁଣ
ଘ. ହାବ୍ୟବତୀ ବୋଇଲେ ପୁଣ ପ୍ରାଣକାନ୍ତ
୩ । ଙ. କାମାଦି
୪ । ଗ. ପ୍ରସନ୍ନ ହୋଇ ଦେବ ତୁମ୍ଭଙ୍କୁ ବର
ଘ. ପ୍ରସନ୍ନ ହୋଇ ଦେବୀ ତୁମ୍ଭଙ୍କୁ ମୋତେ
୫ । ଘ; ନୁହଇ ମୁଁ ପର ସ୍ତ୍ରୀଣ ତୁମ୍ଭ ପ୍ରିୟବତୀ
୬ । ଖ. ମୁହିଁ ଯେ
ଗ. ମୁହିଁ
ଘ. ମୁହିଁ ସେ
୭ । ଗ. ବଯୁସି
୮ । ଗ. ଡରେ ମୁହିଁ
ଘ. କନ୍ଦର୍ପ ଯାତେ ତୋ ପୀଡେ
୯ । ଘ. ତୁମ୍ଭେ ବୋଇଲ
୧୦ । ଘ. ବୋଇଲେ ନୁହଇ
୧୧ । ଘ. କେଉଁ ଧନ
୧୨ । ଘ. ବଚନ ସେ
୧୩ । ଖ. ତୁ ଗୋ ନଷ୍ଟ ନାଗରି ବଶରୁ ଇଚ୍ଛା ବର
ଘ. ତୁମ୍ଭେ ନଷ୍ଟ ନାଗରି ବଶବ ଇଚ୍ଛା ବର
୧୪ । ଘ. ମେଲ୍ଲିଣି ତୁ ଦଣ୍ଡରେ
୧୫ । ଙ. ସତ୍ୱରେଣ ଚଳିଯିବି ଏ ମୋହୋର
ଗ. ସତ୍ୱରେଣ ମୁହିଁ ଯିବଇ ମୋର
ଘ. ସତ୍ୱରେ ଚଳଇ ମୁହିଁ ଯିବ

ମୋତେ ବନେ ହଣିବାକୁ କରଇ ବିସ୍ତର, ଏହା ଶୁଣି ପ୍ରାଣେ ତୋତେ ମାରିବ ଅସୁର
ମୋତେ ପ୍ରୀତି କଲେ ତୋତେ ଲୁଚ୍ଚଇ ରଖିବ, କଥାରେ ଭୁଲାଇ ତାକୁ ବାହୁଡ଼ାଇ ଦେବା॥୧୯॥
ଅର୍ଜୁନ ବୋଇଲେ ମୋତେ ଉପାଇ କହିଲେ, ଏ ମୋହୋର ଶତ୍ରୁ ଆଜ ନ ଟଳଇ[୧] ଭଲେ
ହାବଶୀ ବୋଲେ କାହିଂ ଏତ୍ତୁ[୨] କଥା, ଏ ମୋହୋର ବଚନ ଯେ କଲୁକି[୩] ଉପେକ୍ଷା[୪]॥୨୦॥
ମାୟାରେ ଅର୍ଜୁନକୁ ପକାଇ ଜୀର୍ଣ୍ଣ କୂପେ, ଲେଉଟି[୫] ବସିଲା ଯାଇ ପଲଙ୍କ ସମୀପେ
ପାତତାଳେ ଗର୍ତ୍ତରେ ପଡ଼ିଲେ ଧନଞ୍ଜୟ[୬], କେବଳ ଅନ୍ଧକାର ସେ ସବୁ ମାୟାମୟ[୭] ॥୨୧॥
ବାହାର ଆସିବାକୁ ତହିଂରେ ନାହିଁ ବାଟ, ଅର୍ଜୁନକୁ ପଡ଼ିଲା ଯେ ଦୁଃସହ[୮] ସଙ୍କଟ[୯]
ହାବଶୀ[୧୦] ସମୀପେ ନକୁମ୍ଭ ପରବେଶ, ବୋଇଲା ଦେହଟି ତ[୧୧] ମନୁଷ୍ୟର ବାସ ॥୨୨॥
ହାବଶୀ[୧୨] ବୋଇଲା ମୁଂ ଏକା ଅଛି ପୂର; ଏମନ୍ତ ନ କହ ତୁ ଖେଳନ[୧୩] ମୋତେ କର
ଶୁଣିକରି ଦାନବ ଯେ ଫପିଲା[୧୪] ରସନା, ତୁ ହାବଶୀ ମୋହୋର ଜୀବ[୧୫] ଅଟୁ ପ୍ରିନା ॥୨୩॥

---

୧ । ଘ. ନ ଟଳିବ
୨ । ଘ. କାହିଁ ପିବ ଏଡ଼େ
୩ । ଘ. ସେବେ କଲୁନି
୪ । କ ଗ. ପୋଥିରେ ୧୮-୨୦ ପଦର ପାଠ ନାହିଁ
୫ । ଖ ଗ ଘ. ଧାଇଁଲା ଟି
୬ । ଘ. ପଡ଼ିଲେ ଧନଞ୍ଜୟ
୭ । ଖ. ମାୟାମୟ
ଗ ଘ. ସକୃତ ମାୟାମୟେ
୮ । ଖ. ପଣ୍ଡଅଛୁ ଏ ଘୋର
ଗ. ପଡ଼ିଲା ସ୍ୱେ ଘୋର
୯ । ଘ-ଧାଇଁଛି ପୋଥିରେ ନାହିଁ
୧୦ । ଗ. ହାବ୍‌ବତୀ
ଘ. ହାବ୍‌ବତୀ ପାସରେ
୧୧ । ଖ. ବୋଧଲାଭ ଦହଟଏ
ଗ. ହେଲାତ
୧୨ । ଖ ଗ ଘ. ହାବ୍‌ବତୀ
୧୩ । ଘ. ଏମନ୍ତ ସେତେବେ କହୁ ଖେଳନ
୧୪ । ଘ. ପୁଣି ଜିଭ ନଖରେ ଦେଖିଲା
୧୫ । ହାବ୍‌ବତୀ ମୋର ଜିବନ
ଘ. ହାବ୍‌ବତୀ ମୋହର ପ୍ରାଣ

ଏ ମୋହୋର ଜୀବନ ଯେ[1] ଯାଉ ବନା ଜଳ, ତୋହୋ ପଦ୍ମପାଦ ଧୂଳ ପଡୁ ମୋ[2] ମସ୍ତକ
ଆଜ୍ଞ ଏବେ ଏମନ୍ତ ଭୁ ନ କହବୁ[3] ମୋତେ, ଆନନ୍ଦ ହେଉଥାଉ ମୁଂ ଦେଖୁଥିଲେ[4] ତୋତୋ ॥୨୪
କହିଁବନ[5] ତୋ ଅଙ୍ଗ ଛୁଇଁବ ଗମାକର, ସେହ୍ବଦନ ସାର୍ଥ[6] ହେବ ଶରୀର ମୋହୋର[7]
ଏତେ କହ୍ବ ବାତୁଳଣ ଗଲ[8] ଦଡଂଗଏ[9], ଜୀର୍ଣ୍ଣ କୂପ ପାଶେ ଯାଇ[10] ସୁନ୍ଦରୀ ବଜଏ ॥୨୫॥[11]
ଡାକଇ[12] ହେ ପ୍ରାଣନାଥ ମୋର[13] ବୋଲକର, ଅକାରଣ କଥାରେ ଯେ ନ ଗୁଡ଼ ଶରୀର[14]
ଅର୍ଜୁନ ବୋଇଲେ ଏ ଯେ[15] ସତ୍ୟ ମୋର ବାଣୀ, ଏଥିରେ ପ୍ରାଣକୁ ମୁଷ୍ଟଂ ତେଜବ ତରୁଣୀ[16] ॥୨୬
ପୁରୁଷ ହତ୍ୟାକୁ ମାଁ[17] ଅର୍ଜିଲୁ ସୁନ୍ଦରୀ ପୂର୍ବେ ତୋତେ ମୁଷ୍ଟି ନଥିଲ[18] ଦୋଷ କର
ଏ କଷଣ ମୋତେ ଭୁଞ୍ଜ ଦେଲୁ ଗୋ[19] ଦୂରନ୍ତ, ଏ କଷ୍ଟରୁ ରଖିବେ[20] ରାଧିକା ପ୍ରାଣନାଥ[21] ॥୨୭

---

୧ । ଖ. ପାପିଷ୍ଠ ପିଣ୍ଡ
 ଙ. ମୋହୋର ପିଣ୍ଡ
 ଘ. ଏ ମୋର ପାପିଷ୍ଠ ପିଣ୍ଡ
୨ । ଖ. ତୋହର ଅପାଦ ପଡୁ ମୋହର
 ଗ. ତୋହୋର ପାଦଧୂଳି ପଡୁ ମୋ
 ଘ-ତୋହୋର ଅପଦ ପଡୁ ଏ ମୋର
୩ । ଖ ଗ ଘ. ନ କହବୁ
୪ । ଘ. ଆନନ୍ଦ ମୁଁ ହେଉଥାଉ
୫ । ଖ ଗ ଘ. କେବେଁବନ
୬ । ଗ. ସେ ଦିନ ସାର୍ଥକ
 ଘ. ସାର୍ଥକ୍ୟ
୭ । ଗ. ଏ ମୋର ଶରୀର
 ଘ: ମୋହୋର ଶରୀର
୮ । ଗ. ବାତୁଳଭଲ
୯ । ଏତେ କହି କୂପରେ ପାଳଟୀଣ ଗଲ
୧୦ । ଗ ଚେ
୧୧ । ଗ. ଏତେ କହି କୂପରେ ଗୋ
 ପାଳଟୀଣ ଗଲ
 ଘ. ଦ୍ୱାରାବତୀ ଜୀର୍ଣ୍ଣ କୂପ ନିକଟେ ମିଳଲ
୧୨ । ଖ. ବୋଲଇ
 ଘ. ବୋଇଲ
୧୩ । ଗ. ଡାକଇ ପ୍ରାଣନାଥ ଏବେ ମୋ
୧୪ । ଗ. ପ୍ରାଣ ନ ହରାଅ
 ଘ. କଥାରେ ନ ଗୁଡ଼ କଳେବର
୧୫ । ଗ ଘ. ସତ୍ୟଶାଚ ବୋଲନ୍ତି ଯେ
୧୬ । ଖ. ଏଥିରେ ନିଶ୍ଚଏ ପ୍ରାଣ ତେଜିବ
ମୀନଣୀ
 ଘ. ଏଥିରେ ନିଶ୍ଚଏ ପ୍ରାଣ ତେଜବ ତରୁଣୀ
୧୭ । ଘ. ପୁରୁଷ ହତ୍ୟା ମାଗିକ
୧୮ । ଘ. ପୂର୍ବେ ମୁଷ୍ଟିଂ ତୋତେ ନ ଥିଲ
୧୯ । ଖ. ଆଣି ଦେଲୁରେ
 ଘ. ମୋତେ ଆଣି ଦେଲୁ ରୁ
୨୦ । ଗ. ରଖିବେ
 ଘ. ଏଥୁ ଉଦ୍ଧରିବେ ସେ ରାଧିକା ପ୍ରାଣକାନ୍ତ

ଶୁଣି କର ହାବକଶା[1] ନବଣ ହୋଇଲା, ଏମନ୍ତ ପ୍ରକାରେ ତହିଁ ଏକ ସ୍ବଣଗଲା[2]
ଅର୍ଜ୍ଜୁନକୁ ନ ଦେଖି ସକଳ ଭ୍ରାତମାନେ, ଚଞ୍ଚଳଚିତ୍ତ ଲୋଡ଼ୁଛନ୍ତି ବୁଲିଣ[3] କାନନେ ॥୨୮॥
କାର୍ତ୍ତି ଅର୍ଜ୍ଜୁନ ନ ଦେଖି[4] ନବଣ ହୋଇଲେ, ଅର୍ଜ୍ଜୁନ କଥା ଶୁଣି ଦ୍ରୌପଦୀ ମୋହଗଲେ[5] ସେ
ଋଣଭାଇ ନ ଦେଖି ସେ ଦୁଃଖନ୍ତି ସକଳ[6], କୃଷ୍ଣଙ୍କୁ ଶରିଲେ[7] ସେ ଯୁଧିଷ୍ଠି ମହୀପାଳ ॥୨୯॥
ଗରୁଡ଼ ପୃଷ୍ଠରେ ବସେ[8] ପ୍ରଭୁ ଭଗବାନ, ଧର୍ମସୁତ ପାଦେ ଆସି[9] କରନ୍ତି ଦ୍ରସନ
ଭୀମସେନ ନକୁଳ ସେ ସହଦେବ ତିନ, ଶ୍ରୀକୃଷ୍ଣ ଚରଣେ ପଡ଼ି କରନ୍ତି ଦଇନ ॥୩୦॥
ଯୁଧିଷ୍ଠି ଜଣାଇଲେ[10] ଶୁଣିବା ଦେବ ହରି, ମୃଗୟା ଅର୍ଥେ ଅର୍ଜ୍ଜୁନ କାନନେ ଚହଳି[11]
ଲୋଡ଼ି ନ ପାଇଲୁ ଭ୍ରାତ କଟକଣ[12] ଗତ, କି ଅବା ବନସ୍ତେ ତାଙ୍କୁ ପ୍ରମାଦ ପଡ଼ିଲା[13] ॥୩୧॥
ସହଦେବ ବଦନକୁ ଚାହିଁ ଦାମୋଦର[14], ଗୋପ୍ୟ ନ କରିବୁ[15] ଏବେ କହ ମନ୍ତ୍ରୀବର।
ସହଦେବ ଜଣାଇଲେ ଦେଖି[16] ବାମକର, ଶୁଣ ପ୍ରଭୁ[17] ଜଗନ୍ନାଥ ବ୍ରହ୍ମାଣ୍ଡ ଠାକୁର[18] ॥୩୨॥
ପିଙ୍ଗଳା ପର୍ବନରେ ସେ[19] ଅର୍ଜ୍ଜୁନ ଠାକୁରେ, ଶୟନ ସେ କରିଥିଲେ ନିଦ୍ରାସୁଖ ଭରେ
ହାବକଣା ତହିଁରେ ସେ[20] ପ୍ରବେଶ ହୋଇଲା, ପିଙ୍ଗଳାକ୍ଷୀ ଦେବଙ୍କ ଦ୍ରସନ ପାଇ[21] କଲା ॥୩୩॥

---

୧ । ଖ ଗ ଘ. ହାବ୍ବକଣା
୨ । ଖ. କେତେକ ହେଁ ଦିନ ଗଲା
ଘ. ଏହି ପ୍ରକାରେଣ ତତ୍ରୁଂ କେତେ ଦିନ ଗଲା
୩ । ଖ ଘ. ପଚାରିଣ
୪ । ଖ ଘ. ନ ଦେଖିଣ ତାଙ୍କୁ
୫ । ଖ. ଶୋକ କଲେ
ଘ. ଦ୍ରୋପଦୀ ସୋକ କଲେ
୬ । ଖ ଘ. ଗୁଣ ପାଣ୍ଡବେ ତହିଁରେ ଦୁଃଖୀ ଆକୁଳ
୭ । ଘ. ଚିନ୍ତା କଲେ
୮ । ଖ. ଗରୁଡ଼େ ବସେ କରିଣ
ଘ. ଗରୁଡ଼େ ବସେ କଲେ
୯ । ଖ ଘ. ଧର୍ମସୁତଙ୍କ ଚରଣେ
୧୦ । ଖ. ପୁଣ ହେ
ଘ. ପୁଣିମା
୧୧ । ଖ. ଅର୍ଥରେ ଅର୍ଜ୍ଜୁନ ବନେ ବନେ କରି
ଘ. ଅର୍ଥେ ଅର୍ଜ୍ଜୁନ ବନେ ବସେ କରି
୧୨ । ଖ ଘ. ବନେ ଲେଉଟିକଣା
୧୩ । ଘ. ବନସ୍ତେ ତାଙ୍କୁ ବିପତ୍ତି ପଡ଼ିଲା
୧୪ । ଘ. ବଦନ ଚାହିଁଲେ ଦାମୋଦର
୧୫ । ଖ ଘ: ଗୋପ୍ୟ ନ କରିଣ
୧୬ । ଖ. ଜଣାନ୍ତି ଅନାଇ
ଘ. ଜଣାନ୍ତି ଯୋଡ଼ିଣ ବେନିକର
୧୭ । ଖ ଘ. ପୁଣିମା ହେ
୧୮ । ଖ ଘ. ଧ୍ୱଣ୍ଡର
୧୯ । ଖ. ପିଙ୍ଗଳ ପର୍ବତେ ସେହୁ
ଘ: ପିଙ୍ଗଳ ପର୍ବତରେ ସେ
୨୦ । ଖ. ଆସି ତହିଁ
ଘ. ତହିଁ ଆସି
୨୧ । ଘଃ ଆସି

ତାହାଙ୍କୁ ଦେଖି ହୋଇଲ[1] ମଦନେ କାତର, ତୋଳ ଶୁଆଇଲା ନେଇ ଆପଣା ରଥର
କାଞ୍ଚିପୁରେ ଯାଇଣ ସେ[2] ପ୍ରବେଶ ହୋଇଲା, ବହୁତ ପ୍ରକାରେ ସେ ଯେ[3] ବିନୟ କହିଲା[4] ।।୩୪।।
ସନମତ ନ କଲେ ସେ ଅର୍ଜ୍ଜୁନ[5] ଠାକୁରେ, ମାୟାକରି ପକାଇଲା[6] ସେ ଜୀର୍ଣ୍ଣ କୂପରେ
ବହୁତ କଷ୍ଟ କପଟ ଜାଣଇ ସୁନ୍ଦରୀ, ନିକୁମ୍ଭ ଦୈତ୍ୟ ସ୍ୱର୍ଗରୁ ଆଣିଅଛି[7] ହରି ।।୩୫।।
ତା ଭୂଲେ ପ୍ରୀତି କରିଛି ଆଣି ଧନଞ୍ଜୟ[8], ନିକୁମ୍ଭ ଦୈତ୍ୟକୁ ଏବେ ଜିଣିବା ହେ[9] ଷଏ
ବିଳମ୍ବ ନ କର ପ୍ରଭୁ ବେଗେ ଯିବା ଚାଲି[10], ଶୁଣି କରି ହରଷ ହସନ୍ତୁ ବନମାଳୀ ।।୩୬।।
ଦ୍ରୌପଦୀଙ୍କି ବହୁତ ପ୍ରବୋଧିଣ[11] କହିଲେ, ସାମସେନକୁ ଘେନି ଗରୁଡ଼େ ବିଜେ କଲେ
ପିଙ୍ଗଳ ପରବତେ ହୋଇଲେ ପରବେଶ[12], ଗରୁଡ଼ରୁ ଓହ୍ଲାଇଲେ[13] ଶ୍ରୀମ ହୃଷୀକେଶ ।।୩୭।।
ଆଜ୍ଞା ଦେଲେ ଗରୁଡ଼କୁ କାଞ୍ଚିପୁରେ[14] ଯାଅ, ପକ୍ଷିଘାତେ ଅସୁର ମାନଙ୍କୁ ଯେ[15] ଉଡ଼ାଅ
ଅର୍ଜ୍ଜୁନ ଯେ ଅଛି ଦ୍ୱାରାବତୀର ପୁରରେ[16], ତାହାଙ୍କ ପବନ ଆଉ ନ ଲାଗିବ ଖରେ[17] ।।୩୮।।

---

୧ । ଖ ଘ. ଅର୍ଜ୍ଜୁନଙ୍କୁ ଦେଖିକରି
୨ । ଘ. କାଞ୍ଚନଗ୍ରେ ନାଗପୁର
୩ । ଙ. ବାଳୀ
୪ । ଘ. ବହୁତ ପ୍ରକାରେ ବାଳ ବିନଏ କହିଲା
୫ । ଘ. ସେ ଅର୍ଜ୍ଜୁନ
୬ । ଘ. ମାଉାରେ ପକାଇ ଅଛୁ
୭ । ଖ. ସ୍ୱର୍ଗୁଂ ଆଣିଲ ତାକୁ
ଘ. ଦୈ୍ୟ ତାକୁ ଅଣିଲ ସ୍ୱର୍ଗୁ ହରି
ଖ. ସ୍ୱର୍ଗୁ ଅଣିଲ ତାକୁ
୮ । ଙ. ତାର ଭୂଲେ ପ୍ରିତି କରି ଆଣିମା ଧନଞ୍ଜୟ
ଘ. ତା ଭୂଲେ ପ୍ରୀତିକରି ଆଣିମା ଧନଞ୍ଜଏ
୯ । ଙ. ଯେ ଜିଣିବା ନିଶ୍ଚେ
ଘ. ନିକୁମ୍ଭ ଅସୁରକୁ ଜିଣିବା ହେବ ଷଏ
୧୦ । ଘ. ଯିବା ହେଉ ଚାଲି
୧୧ । ଘ. ଦ୍ରୁପଦୀଙ୍କି ବହୁତ ସେ ପ୍ରବୋଧି
୧୨ । ଖ. ପବତେ ଯାଇଂ ହୋଇଲେ ପ୍ରବେଶ
ଘ. ପ୍ରବତେ
୧୩ । ଘ. ଗରୁଡ଼ୁ ଓହ୍ଲାଇଲେ
୧୪ । ଖ. କାଞ୍ଚନଗ୍ର ଯାଅ
ଘ. ଗରୁଡ଼ୁ କାଞ୍ଚିପୁର
୧୫ । ଖ ଘ. ପକ୍ଷିବାତଘାତେ ଦୈତ୍ୟ ମାନଙ୍କୁ
୧୬ । ଖ. ରହିଅଛନ୍ତି ଦ୍ୱାରାବତୀ ପୁରେ
ଘ. ଅର୍ଜ୍ଜୁନର ଅଛନ୍ତି ଦ୍ୱାରାବତୀ
୧୭ । ଘ. ଧିରେ

ଆବର ଯେ[1] ପୁରମାନ ଅସୁର ସଙ୍ଗତେ, ଉଡ଼ିଯାଇ ବହୁ ଦୂରେ ପଡ଼ିବେ ବନସ୍ତେ
ଏମନ୍ତ କର ଆସି[2] ଆମ୍ଭଙ୍କୁ ଜଣାଇବ, ସ୍ୱାଗବଙ୍ଗ ପୁର[3] ତୁମ୍ଭେ କରିଥିବ ଠାବ ॥୩୯॥
ଶୁଣିଣ ସେ ଖଗେଶ୍ୱର[4] ନମସ୍କାର କଲେ, କାଞ୍ଚି ନଗ୍ରରେ ଯାଇଣ[5] ପ୍ରବେଶ ହୋଇଲେ
ସ୍ୱାଗବଙ୍ଗ ପୁରର ଠାବ କଲେକ ସେ[6] ଯାଇ, ପକ୍ଷିବାତେ[7] କାଞ୍ଚନଗ୍ର ଦେଲେକ ଉଡ଼ାଇ ॥୪୦॥
ନଗ୍ରର ସଙ୍ଗେ ଯେ[8] ସକଳ ଦୈତ୍ୟମାନେ, ଅଶ୍ୱ ଗଜ ସଙ୍ଗତେଣ ଉଡ଼ିଲେ ଗଗନେ
ସ୍ତ୍ରୀଶ ବୃଦ୍ଧ ବାଳକ ସଙ୍ଗତେ ଗଲେ ଉଡ଼ି, କେ ଶହେ କେ ପାଞ୍ଚଶ[9] ଯୋଜନେ ଯାଇ ପଡ଼ି[10] ॥୪୧
ବହୁତ ଦୈତ୍ୟ ଚକ୍ଷୁଁରେ ହୋଇଲେ ନିଧନ, ଆଉ କେତେ ଚକ୍ଷୁଁରେ[11] ହୋଇଲେ ଅଚେତନ
ଶ୍ରୀକୃଷ୍ଣ ପାଶେ ଜଣାନ୍ତ ଯାଇ[12] ଖଗେଶ୍ୱର, ବିଜୟ କର ହେ ଦେବ ଏବେ କାଞ୍ଚିପୁର ଯେ[13] ॥୪୨

---

୧ । ଘ. ଆବର
୨ । ଖ. ଆସିଣ
୩ । ଘ. ପୁର
୪ । ଖ ଘ. ଏମନ୍ତ ଶୁଣି ଗରୁଡ
୫ । ଘ. କାଞ୍ଚି ନଗ୍ରେ ରୂଣତେ ସେ
୬ । ଘ. ପୁର ତହିଁ ଠାବ କଲେ
୭ । ଘ, ପକ୍ଷି ଘାତେ
୮ । ଘ, ସଙ୍ଗତେ
୯ । ଘ. କେ ସତେ କେ ପଞ୍ଚାସ
୧୦ । 'ଗ' ପୋଥିରେ ୨୯ ପଦର ଶେଷପାଦ ଠାରୁ ୪୧ ପର୍ଯ୍ୟନ୍ତ ନାହିଁ
୧୧ । ଖ. ଆଉ କେତେ ମୋହରେ
ଗ. ଆହ୍ମମାନେ ତହିଁ
ଘ. ଆହ୍ମମାନେ ମୋହରେ
୧୨ । ଖ. ପାସରେ ସେ ଜଣାନ୍ତି
୧୩ । ଖ ବିଜଏ କରିବା ପ୍ରଭୁ କାଞ୍ଚନଗ୍ରପୁର
ଗ. କର ଦେବ କାଞ୍ଚନଗ୍ରପୁର

ଶୁଣି କର ଶ୍ରୀକୃଷ୍ଣ ସ୍ୱାମକୁ ଘେନ ଚଳେ, କାଞ୍ଚି ନଗ୍ରରେ ଯାଇଣ[1] ପ୍ରବେଶ ହୋଇଲେ
ଦ୍ୱାରକା ପୁରରେ ମିଳିଲେ ଶୀଘ୍ରେ[2] ଯାଇ, ଦେଖିଣ ଦ୍ୱାରକା ସେ ଦ୍ରସନ[3] କରଇ ॥୪୩॥
ଶ୍ରୀକୃଷ୍ଣ ପଚ୍ଛରନ୍ତି ଅର୍ଜୁନ କାହିଁ ଅଛି, ତାହାକୁ ଏଥିକ ଆଣି[4] ଆଣରେ ମୃଗାକ୍ଷି
ଶୁଣି ଦ୍ୱାରକା ସେ ଯୋଡ଼ଇ ବେନକର[5], ମୋହର କଥା ସ୍ୱାମି ତୋତେ କି[6] ଅଗୋଚର॥୪୪॥
ଅନ୍ତର୍ଯାମି ଜାଣ ତୁମ୍ଭେ ଅନ୍ତର୍ଗତ କଥା, ଜାଣି ଆଜ୍ଞା ଦେଉ ପ୍ରଭୁ ମୋର[7] ମନ ବ୍ୟଥା
ଶ୍ରୀକୃଷ୍ଣ ବୋଇଲେ ସତ୍ୟ କରଅଛୁଁ[8] ଆମ୍ଭେ, ଅର୍ଜୁନକୁ ଅବଶ୍ୟ ସେ ବନ୍ଧୁ[9] ଦେବ ତୁମ୍ଭେ ॥୪୫॥
ଶୁଣି କଣ ସୁଦର୍ଶ ସେ[10] କୂପର ନିକଟେ, ଆସ ବୋଲି ଡାକ ସେ[11] ତେଲ୍ଲକ ଉତ୍କଟେ
ମନ୍ତ୍ରବଳେ କୂପରୁଂ ଅଇଲେ ପାର୍ଥବୀର, ଶ୍ରୀକୃଷ୍ଣ ଚରଣ ତଳେ କଲେ ନମସ୍କାର ॥୪୬॥
ସ୍ୱାମଙ୍କ ଚରଣେ ଯାଇ ପ୍ରଣାମ ସେ[12] କଲେ, ଅଥିର ଆସନ୍ତି ବୋଲି କର ଜଣାଇଲେ[13]
ନଗର ବାହାରେ[14] ଗଡ଼ ଅଛି ଚାରି ଦ୍ୱାର, ପୂର୍ବ ଦ୍ୱାରେ ଆପଣେ ରହିଲେ ଚକ୍ରଧର ॥୪୭॥

---

୧ । ଖ. ନଗ୍ରେ ଜାଇଂ ପୁଣ
ଗ. ନଗ୍ରେ ଜାଇ
ଘ. କାଞ୍ଚିନଗ୍ରେ ପୁଣ
୨ । ଖ. ପୁଣ
ଗ. ପୁରେ ପ୍ରବେସ ହେଲେ
ଘ. ଦ୍ୱାରାବତୀ ପୁରେ ସେ ମିଳିଲେ ସେ
୩ । ଘ. କୃଷ୍ଣପାଦେ ଦ୍ୱାରାବତୀ ଦ୍ରସନ
୪ । ଖ. ଭକ୍ତି ବେନ କରଣରେ
ଗ. ଆଗ କର
ଘ. ଭକ୍ତି ବେଗକର ତୁମ୍ଭେ
୫ । ଖ. ଶୁଣୀକର ଦ୍ୱାରାବତୀ କହେ
ଯୋଡ଼ିକର
ଘ. ଶୁଣିକର ଦ୍ୱାରାବତୀ ଯୋଡ଼ି କହେ କର
୬ । ଖ. ତୋହୋ କଥା ମହାପ୍ରଭୁ ମୋତେ
ଘ. ମୋର କଥା ମହାପ୍ରଭୁ ମୋତେ
୭ । ଖ. ଶ୍ରୀମୁଖରେ ଆଜ୍ଞାଂ ହୋଇ ଗ୍ରନ୍ଥ
ଘ. ଶ୍ରୀମୁଖେଣ ଆଜ୍ଞାଂ ହେଉ ଗ୍ରନ୍ଥ
୮ । ଗ ଘ. କରୁଅଛୁ
୯ । ଖ. ବନ୍ଧୁ ନିଷ୍ଟେ
ଘ. ନିଷ୍ଟେ ବନ୍ଧୁ
୧୦ । ଶୁଣି ତୋଷରେ ସୁଦର୍ଶ
ଘ. ଶୁଣି ତୋସେଣ ସୁଦର୍ଶ
୧୧ । ଘ. ଆସ ଆସ ବୋଲି ଡାକ
୧୨ । ଗ: ଚରଣ ତଳେ ପ୍ରଣାମ ପୁଣ
ଘ. ସେ ପ୍ରଣମ୍ୟ ପୁଣ
୧୩ । ଗ ଘ. ଅସ୍ଥିରେ ଆସନ୍ତି ବୋଲି ଗରୁଡ଼
କହିଲେ
୧୪ । ଗ. ନଗ୍ର ବାହାରେ
ଘ. ନଗ୍ର ବାହାରେଣ

ପଶ୍ଚିମ ଦ୍ୱାରେ ଗରୁଡ଼ ଓଗାଳଲେ[1] ଯାଇ, ଉତ୍ତର ଦ୍ୱାରରେ ଭୀମ ରହିଲେକ ଯାଇ[2]
ଅର୍ଜୁନ ଯେ ଆବୋରଲେ[3] ଯାଇଣ ଦକ୍ଷିଣ, ଅସୁର ସୈନ୍ୟ ଆସନ୍ତି ହୋଇ ଅଗଣନ[4] ॥୪୮॥
କାହାର ଭୁଜ ଭଗ୍ନ କାହାର ପାଦ ଗ୍ରୋଷ୍ଠା; କାହା କଟି ଲଡ଼ବଡ଼[5] କାହାଶିର ଫଟା
ଯେବଣ ଦ୍ୱାରରେ ଯେତୁ ମିଳୁଛନ୍ତି[6] ଯାଇ, ତହିଁ ମରୁଛନ୍ତି ଯେ ସମର କହୁ ନାହିଁ ॥୪୯॥[7]
ଚଣଦ୍ୱାରେ ମଡ଼ା ଯେ ପଡ଼ିଲେ ଅପ୍ରମାଣ[8], ନଦୀ ପରାଏ ବହଇ ତହିଁରେ ଯେ ଶ୍ରୋଣ[9]
ସେହି ରୂପେ[10] ସପତ ଦିବସ ତହିଁ ଗଲା[11], ରାକ୍ଷସଙ୍କ ସବୁ ସୈନ୍ୟ ଏହି ରୂପେ ମଲା[12] ॥୫୦॥
କଳୁମ୍ବ ସେ ଆସିଣ[13] ହୋଇଲା ପରବେଶ, ଉତ୍ତର ଦ୍ୱାରେ ପଶଇ କ୍ରୋଧେଣ[14] ରାକ୍ଷସ
ଦେଖିଣ ଯେ[15] ଭୀମସେନ ବୃକ୍ଷେକ ଉପାଡ଼ି, ଦନୁଜ ରାଜା ଉପରେ ନେଇଣ ପକ୍ୱଡ଼ି[16] ॥୫୧॥

---

୧ । ଘ. ହୁଗାଳିଲେ
୨ । ଗ. ଆପଣେ ଜାଇ
ଘ. ଉତର ଦ୍ୱାରେ ମାରୁତି ଆପଣେ ଜଗଇ
୩ ଖ. ଧନଜ୍ଞଏ ଓଗାଳିଲେ
ଗ. ଓଗାଳିଲେ
ଘ. ଧନଜ୍ଞସ୍ତୁ ଅବୋଣ୍ଡଲେ
୪ । ଗ. ଅଚ୍ଛଣ
ଘ. ଦୈତ୍ୟମାନେ ଆସନ୍ତି ହୋଇଣ
ଅଚ୍ଛିଣ
୫ । ଗ. କାହାର କଟି ଅସଳ
୬ । ଗ. ଦ୍ୱାରେ ଯେ ବା ମିଳନ୍ତି
୭ । ଖ ଘ. କାହାର ଚରଣ ଭଗ୍ନ କାହାର
ଶିର ଫାଟି
କାହାର ଭୁଜ ଅସଳ କାହାର କଟକଟି
ଯେଉଁ ଦ୍ୱାରେ ଯେଉଁମାନେ ମିଳୁଛନ୍ତି
ଜାଇଂ
ତହିଁରେ ମରୁଛନ୍ତି ଶଂସମ୍ଭ. କହୁଂନାହିଁ

୮ । ଘ ଚ୍ଚର ଦ୍ୱାରେଣ ପଡ଼ିଲେ ମଡ଼ା
ଅପ୍ରମାଣ
୯ । ଖ ଗ ଘ. ବହୀନଦୀ ପ୍ରାଏ ତହିଁ ବହୁଯାଏ
ଶ୍ରୋଣ
୧୦ । ଗ ଘ. ଏହି ରୂପେ
୧୧ । ଖ ଗ ଘ. ବହିଗଲା
୧୨ । ଖ ଗ. ରାକ୍ଷସ ସୈନ୍ୟ ସବୁ ଗୋଟି ଏକ-
ଠାରୁ ମଲା
ଘ. ରାଜାର ସୈନ୍ୟ ସବୁ ଗୋଟିକ ଠାରୁ
ମଲା
୧୩ । ଘ. ଆସି ପୁଣ
୧୪ । ଖ ଘ. ଦ୍ୱାରବାଟେ ପଶାଇ
ଗ ଦ୍ୱାରେ ଆସି ମିଳିଲା
୧୫ । ଖ. ଦେଖି ତାକୁ
୧୬ । ଖ ଗ. ଦୈତ୍ୟରାଜା ଉପରେ ସେ
ନେଇଣ କଷ୍ଟିଡ଼ି
ଘ. ଦୈତ୍ୟରାଜା ଉପରେ ନେଇଣ କଷ୍ଟିଡ଼ି

ଅଙ୍ଗେ ପଡ଼ି ବୃକ୍ଷ ଚୂନା ହୋଇଣ ସେ ଗଲ[୧], ପୁଣ ଭୀମସେନ ପବଂଚେକ କଚ୍ଛିଲ[୨]
ଦେଖିଣ ଗରୁଡ଼ ଆଟେ[୩] ଓଗାଳଲ ଯାଇ, ବେଢ ଡ଼େଣା ଅଙ୍ଗରେ ପ୍ରହାର କଲେ[୪] ନେଇ॥୫୨
ତେବେ ହେଲେ ଅସୁରର[୫] କଚ୍ଛିଣ୍ଣି ନୋହିଲା, ଧନ୍ୟ ଅସୁର ବୋଲି ବଧାତା[୬] ପ୍ରଶଂସିଲା
ବଧାତାର[୭] ବାଣୀ ଶୁଣି ଅର୍ଜୁନ ଅଇଲେ, ଦେବଶର[୮] ବସାଇ ଦତ୍ୟକୁ ପ୍ରହାରଲେ ॥୫୩॥
ଅଙ୍ଗରେ ବାଜଣ ଶର[୯] ହୋଇଲାକ ଧୂଳ[୧୦], ପାଦଭରେ ଦତ୍ୟର[୧୧] କମ୍ପିଲା ମହୀସ୍ଥଳ
ବଧାଏକ ପଟୁଡ଼ିଲେ[୧୨] ପବନର ସୁତ, ଖଗେଶ୍ୱର ଧାଇଁଣ[୧୩] ମାଇଲେ ପାଦଘାତ ॥୫୪॥
ଅର୍ଜ୍ଜୁନ ଶରକୁ ତାହାର ନାସ୍ତି ଭଏ[୧୪], ଶୂନ୍ୟେ ଥାଇ ଦେଖନ୍ତି ଆନନ୍ଦେ[୧୫] ଦେବତାଏ
ବେଳୁଂ ବେଳ ସମର ବଢିଲା ମହାରୋଷ[୧୬], ଚକ୍ର ଘେନ ପ୍ରବେଶ ହୋଇଲେ ହୃଷୀକେଶ[୧୭]॥୫୫॥

---

୧ । ଖ ଗ ଘ. ଦତ୍ୟ ଅଙ୍ଗେ ବାଜି ବୃକ୍ଷ ଚୂର୍ଣ୍ଣ ହୋଇଗଲ

୨ । ଘ. ପଟଙ୍କେ କର୍ତ୍ତିଲ

୩ । ଗ. "ଆଟେ" ନାହିଁ
ଘ. ଖଗେଶ୍ୱର ଦେଖିକର

୪ । ଖ. ଦତ୍ୟ ଅଙ୍ଗେ ବେନାବୃକ୍ଷ ପ୍ରହାରଲେ ନେଇ
ଘ. ଦତ୍ୟ ଅଙ୍ଗେ ବେନ ଡ଼େଣା ପ୍ରହାରଲେ ନେଇ

୫ । ଖ. ତେବେ ହେ ଦତ୍ୟରାଯାର
ଗ. ତେବେହେ ଅସୁରର
ଘ. ତେବେ ଦତ୍ୟ ରାଜାର

୬ । ଘ. ଧନ୍ୟ ଧନ୍ୟ ଦତ୍ୟ ବୋଲି ଧାତା

୭ । ଗ. ଧାତା
ଘ. ବିଧତାଙ୍କ

୮ । ଖ ଗ. ଦେବଶର

୯ । ଖ. ଅଙ୍ଗେ ପଡ଼ୀ ଶସ୍ତ୍ରମାନ
ଗ. ଅଙ୍ଗେ ବାଜିରେ
ଘ. ଅଙ୍ଗେ ପଡ଼ି ସସ ମାନେ ହୋଇଲେକ

୧୦ । ଘ. ଅଙ୍ଗେ ପଡ଼ି ସସ୍ତ୍ରମାନେ ହୋଇ-ଲେକ ଧୂଳି

୧୧ । ଖ. ପାଦେତ ଘାତ
ଘ. ଦତ୍ୟ ପାଦ ଘାତରେ

୧୨ । ଖ. ପ୍ରହାରଲେ
ଘ. ବିଧାଏ ପଟୁଡ଼ିଲେ ସେ

୧୩ । ଗ. ଖଗେନ୍ଦ୍ରରେ ଧାଇ
ଘ. ଝମକିଂ

୧୪ । ଖ. ଧନୁର୍ଦ୍ଧରୀ ନାୟକକୁ ନାସ୍ତି ତାର ଭଏ
ଘ. ଧନର୍ଦ୍ଧରୀ

୧୫ । ଘ. ସୁନ୍ୟେ ଥାଇ ଆନନ୍ଦେ ଦେଖନ୍ତି

୧୬ । ଗ. ବେଳୁବେଳ ବଢିଲା ଅସୁରର ସାହାସ
ଘ. ବେଳୁବେଳ ଅସୁରର ବଢ଼ୀଲ ସାହାସ

୧୭ । ଘ. ବେଳୁଂ ବେଳୁଂ ଅସୁର ବଢ଼ୀଲ ସାହାସ
ଚକ୍ରଧର ପ୍ରବେସ ହୋଇଲେ ପିତବାସ

ଅସୁର ଉପରକୁ ମାଇଲେ[୧] ଭୂଜ ତୋଳ, ଧାଇଁ ଯାଇ ଚକ୍ରକୁ ଧଇଲ ମହାବଳୀ[୨]
ଛଡାଇ ନେବାକୁ[୩] ଚକ୍ର ତାହାର ଯେ[୪] ମନ, ଜାଣି ଅତି ଆଣ୍ଟେ ଯେ[୫] ଧଇଲେ ଭଗବାନ॥୫୬॥
ଗରୁଡ଼ ଦେଖି ଦୈତ୍ୟର ବେନଭୂଜ ଧରି, ଭୀମସେନ କେଶଧରି ପଛକୁ ଓଟାରି
ଅର୍ଜୁନ ଶର ବାଛି ପେଷିଲେ ମର୍ମସ୍ଥାନ[୬], ତେବେ[୭] ଚକ୍ର ନେଇ ନ ପାରିଲେ ଭଗବାନ ॥୫୭॥
ମାଳଚକ୍ର[୮] ବିଧାତା ପବନ କରେ ଦେଲେ, ଅର୍ଜ୍ଜୁନର କରେ ଦଣ୍ଡ ବୋଲଣ ବୋଇଲେ[୯]
କଟିସ୍ଥଳେ ତାହାର ଯେ ପ୍ରହାରିବ ବୀର[୧୦], ଶୁଣି କରି ଅତି ବେଗେ ଅଇଲେ ସମୀର ଯେ[୧୧]॥୫୮
ବିଧାତାର ଆଜ୍ଞା ଯେ ଅର୍ଜୁନ କର୍ଣ୍ଣେ[୧୨] କହି, ମାଳଚକ୍ର ତାହାଙ୍କ କରରେ ଦେଲେ[୧୩] ନେଇ
ଚକ୍ର ଧରି କଟି ସ୍ଥଳେ ମାଇଲେ ଅର୍ଜୁନ, ବେନି ଖଣ୍ଡ ହୋଇଲା ସେ ଅସୁର[୧୪] ଗଜନ ॥୫୯॥
ପ୍ରାଣ ଯେନ ମାଳଚକ୍ର ଯାତାନେ ପଶିଲା, ମୃତ୍ୟୁପିଣ୍ଡ[୧୫] ବେନଖଣ୍ଡ ଭୂମିରେ ପଡ଼ିଲା[୧୬]
ଚକ୍ର ଧରି ଚକ୍ରଧର[୧୭] ଆନନ୍ଦ ହୋଇଲେ, ଅର୍ଜ୍ଜୁନର[୧୮] ଶିରେ ଦେବେ ପୁଷ୍ପ[୧୯] ବୃଷ୍ଟି କଲେ॥୬୦

---

୧ । ଖ. ଦୈତ୍ୟର ଉପରକୁ ମାରନ୍ତେ
ଗ. ଅସୁର ଉପରକୁଁ ମାରନ୍ତି
ଘ. ଦୈତ୍ୟ ଉପରକୁ ମାରନ୍ତେ ଭୂଜ ତୋଳି
୨ । ଧାଇଁ ନିକୁମ୍ଭ ଚକ୍ର ଧଇଲ ଆଗୋଳି
ଘ. ଧାଇଣ ନିକୁମ୍ଭ ଚକ୍ର ଧଇଲ ଆଗୋଳି
୩ । ଖ. ନେବାକୁ
୪ । ଖ. ବଡ
ଗ ଘ. ତାର ବଡ଼
୫ । ଖ ଗ ଘ. ଜାଣିକରି ଆଣ୍ଟେଣ
୬ । ଖ. ପେସନ୍ତି ମର୍ମଥାନ
ଘ. ପେସନ୍ତି ମର୍ମସ୍ଥାନ
୭ । ଖ ଗ. ତେବେ ହେ
୮ । ଗ. ବ୍ରହ୍ମା
୯ । ଖ. ଧନଞ୍ଜୟ କରେ ଦାଅ
ବିଧାତା ଆଜ୍ଞା ଦେଲେ
ଗ. ଅର୍ଜ୍ଜୁନ କରେ ଦଅ ବୋଲି ଆଜ୍ଞା
ଦେଲେ
ଘ. ଧନଞ୍ଜୟ କରେ ଦଅ ବୋଲି ଆଜ୍ଞା
ଦେଲେ
୧୦ । ଘ. କଟୀତଟେ ତାହାର ପ୍ରହାର ବରବୀର
୧୧ । ଗ. 'କ' ପୋଥିରେ ୫୮ ପଦର ପାଠ
ନାହିଁ
୧୨ । ଖ. ଆସି ଅର୍ଜ୍ଜୁନକୁ
ଗ. ଆସେ
ଘ. ବିଧାତାଙ୍କ ଆଜ୍ଞା ଆସି ଅର୍ଜ୍ଜୁନକୁ
କହି
୧୩ । ଖ. ତାଙ୍କ କରେ ସମର୍ପିଲ ନେଇ
ଘ. ତାଙ୍କ କରେ ସମର୍ପିଲେ ନେଇ
୧୪ । ଖ ଗ ଘ. ନିକୁମ୍ଭ
୧୫ । ଘ. ଦୈତ୍ୟପିଣ୍ଡ
୧୬ । ଗ. ବସିଲ
୧୭ । ଘ. ଚକ୍ରଧରି ଚକ୍ରଧର ଆନନ୍ଦ ହୋଇଲେ
୧୮ । ଖ ଗ ଘ. ଅର୍ଜ୍ଜୁନ
୧୯ । ଖ ଗ ଘ. କୁସୁମ

ପାର୍ଥଙ୍କୁ ସେ ଆଲିଙ୍ଗନ କଲେ ଭଗବାନ୍ତ[1], ଦ୍ୱାରାବତୀ ସତ୍ୟ କଥା ତାଙ୍କ ଆଗେ କହି
ଦ୍ୱାରାବତୀ ପୁରେ ପରବେଶ ପାଇ ହେଲେ[2] ପାଣ୍ଡବଙ୍କୁ ଆଣିବାକୁ ଗରୁଡ଼ ସେ ଗଲେ[3] ॥୭୧॥
ଯୁଧିଷ୍ଠିରଙ୍କି ଗରୁଡ଼ ସେ କଲେ ଦରଶନ[4], ମଣାଇଁ କହିଲେ ତାଙ୍କୁ ସକଳ ବିଧାନ
ଯୁଧିଷ୍ଠି ସହଦେବ ସେ ନକୁଳ ଦ୍ରୌପଦୀ[5], ଆବର ସଙ୍ଗତରେ[6] ସେଜଣ ସବପତି ॥୭୨॥
କାଞ୍ଚନଗ୍ରେ ଯାଇ ସେ ହୋଇଲେ ପରବେଶ[7], ଅର୍ଜୁନଙ୍କୁ ଶ୍ରୀକୃଷ୍ଣ କରନ୍ତି ବରବେଶ[8]
ଦେଖିଣ ସମସ୍ତ ଋଷି ବେଦ ଧ୍ୱନି[9] କଲେ, ଦ୍ୱାରାବତୀକ ସୁବେଶ[10] କରିଣ ଆଣିଲେ ॥୭୩॥
ଗନ୍ଧର୍ବ ବିଧି ବିଧାନେ[11] ବିଭା[12] ବଢ଼ିଲାକ, କାଞ୍ଚନଗ୍ର ଅର୍ଜୁନ ପାଇଲ ସଉଭୁକ[13]
ଋଷିମାନେ ଫଳମୂଳ ଭକ୍ଷି ଶାନ୍ତ ହେଲେ[14], ପାଣ୍ଡବ ବାସ କରିଣ ତହିଁରେ[15] ରହିଲେ ॥୭୪॥
ଅର୍ଜୁନର ଦ୍ୱାରାବତୀ[16] ବହୁତ ପୀରତି, ବିବିଧ ବିନୋଦେ ସେ ବଞ୍ଚିଲେ[17] ଦିବାରାତି

---

୧ । ଘ. ପାର୍ଥଙ୍କୁ ଆଲିଙ୍ଗନ କଲେକ ଭବତ୍ରାହ
୨ । ଖ ଘ. ଯାଇ ପ୍ରବେଶ ହୋଇଲେ
ଗ. ପ୍ରବେଶ ହୋଇଲେ
୩ । ଖ ଗ ଘ. ପେଷିଲେ
୪ । ଗ. ଯୁଧିଷ୍ଠିରଙ୍କି ଗରୁଡ଼ କଲେ ଦରଶନ
ଘ. ଯୁଧିଷ୍ଠିରଙ୍କ ଖଗେଶ୍ୱର କଲେକ ଦରଶନ
୫ । ଖ ଗ. ଦ୍ରୌପଦୀ
ଘ. ଯୁଧିଷ୍ଠିର ସହଦେବ ନକୁଳ ଦ୍ରୁପଦୀ
୬ । ଖ ଗ. ସଙ୍ଗତେଣ
୭ । ଗ. ପ୍ରବେଶ
ଘ. ବେଗେ ଯାଇ ହୋଇଲେ ପ୍ରବେଶ
୮ । ଗ. ବରବେଶ
୯ । ଗ. ଦେଖିଣ ସର୍ବ ଋଷି ବେଦଧ୍ୱନି
ଘ. ଦେଖିକରି ଋଷିମାନେ ବେଦଧ୍ୱନି
୧୦ । ଘ. ଦ୍ୱାରାବତୀ କନ୍ୟାବେଶ
୧୧ । ଖ ଘ. ବିଧିରେ ତହିଁ
ଗ. ବିଧାନରେ
୨ । ଗ. ବିବାହ
୧୩ । ଘ. ପାଇଲେ ସଉରୁକ
୧୪ । ଖ. ପାନେ ଶାନ୍ତ କଲେ
ଗ. ଫଳ ଭୋଜନେ ଶାନ୍ତ ହେଲେ
ଘ. ପାନେ ଶାନ୍ତ କଲେ
୧୫ । ଘ, ସେ କଟକରେ ନିର୍ଣ୍ଣିଲେ
୧୬ । ଘ. ଅର୍ଜୁନ ଦ୍ୱାରାବତୀର
୧୭ । ଖ. ବନରେ ସେ ରହିଲେ
ଗ. ବିନୋଦେ ବଞ୍ଚିଲେ
ଘ. ବିନୋଦେ ସେ ବଞ୍ଚିଲେ

ଶ୍ରୀକୃଷ୍ଣ ମେଲାଣି ହୋଇ ଦ୍ୱାରକାକୁ[1] ଗଲେ, ପାଣ୍ଡବେ ଯେ ଚତୁର୍ମାସ ତହିଁରେ ବଞ୍ଚିଲେ[2] ॥୭୫॥

ଋଷିମାନେ ସମସ୍ତେ ଅଛନ୍ତି ସଙ୍ଗତରେ[3], କୃଷ୍ଣଲୀଳା ଗାୟନ କରନ୍ତି ନିରନ୍ତରେ[4]

ସେହି କଥାକୁ ସ୍ମରଣ କରି ସ୍ୱମ୍ଭର ମନ[5], ବଚନ ଭାରତ ଏଣୁ କରଇ ଲେଖନ[6] ॥୭୬॥

୧ । ଘ. ଦ୍ୱାରକାକୁ
୨ । ଘ. ଚତୁର୍ମାସ୍ୟ ପାଣ୍ଡବେ ଯେ ତହିଁ ରହିଲେ
୩ । ଘ. ରହିଛନ୍ତି ତାଙ୍କର ସଙ୍ଗର
୪ । ଖ. ଶ୍ରୀକୃଷ୍ଣ ଲୀଳା ଗାୟନ ଆନନ୍ଦ ମନର
ଘ. ଶ୍ରୀକୃଷ୍ଣ ଲୀଳା ଗାୟନେ ଆନନ୍ଦ ମନର
୫ । ଘ. ସେହିକଥା ନିରନ୍ତର କରି ନିରନ୍ତର ବଚନ ଭାରଥ କହେ ଦୀନ ସ୍ୱଅମ୍ଭର
୬ । ଖ. ସେହିକଥା ସୁମରଣା କରି ନିରନ୍ତର ବଚନ ଭାରତ କହେ ଦୀନ ସ୍ୱଅମ୍ଭର

## ପଞ୍ଚଦଶ ଛାନ୍ଦ

### ରାଗ—କାଫି[1]

ବରଷା ହୋଇଲା ଶେଷ ଶରଦ ହେଲା ପ୍ରବେଶ
ନିର୍ମଳ ଦିଶିଲେ ଜଳମାନେ[2]
ପଙ୍କ ହୋଇଲା[3] ନିଃଶେଷ ଶୁଭଗ ଦିଶେ ଆକାଶ
ନିର୍ଜଳ ଭଜିଲେ ମେଘମାନେ
ମାଳ[4] ଗର୍ଜନେ, କଲେ ପ୍ରାଣ ସଞ୍ଜୀବନ ତୋଷ ସଦନେ[5]
ଦେଖି ହରଷ ହୋଇଲେ ପଦ୍ମକୁଳ ହେ[6]
ଚାତମାନେ ଚଉପାଶେ[7] ଦିଶନ୍ତି ଗହଳ ହେ ॥୧॥

---

୧ । ଘ. ରାଗ କାମ୍ବି
୨ । ଖ ଗ ଘ. ଜଗମାନେ
୩ । ଘ. ପବନ ହୋଇଲେ
୪ । ଖ ଗ. ଗହେ
ଘ. ସନମାନ ଗହେ ଗର୍ଜନ ହେ
୫ । ଖ. କଲ ପ୍ରକାଶ ସଦନ କି ଉଜ୍ଜ୍ୱଳ ହେ
ଗ. କଲ ପ୍ରାଣ ସଜନ ଯେ ଉଜଳ ହେ
ଘ. କଲ ପ୍ରାଣ ସଜନ ଯେ ଉଜଳ ହେ
ଘ. କଲ ପ୍ରାଣ ସଜନଙ୍କି ଯେ ପ୍ରଫୁଲ୍ଲ ହେ
୬ । ଗ. ଦେଖି ବିକସିତ କୁମୁଦନ କୁଳ
ଘ. ଦେଖି ବିକାସିତ କୁମୁଦନ କୁଳ ହେ

ତେଜି ମାନସସରୋବର      ଆଇଲେ ହଂସ ନିକର

ଅବସରେ ମିଳି ଧ୍ୱନି କଲେ

ନିର୍ମଳ ହୋଇଲେ ଜଳ      ଫୁଟିଲେ ଛନ୍ଦି[1] କମଳ

ଦେଖି ଭ୍ରମର ମିଳି ଚୁମ୍ବ ଦେଲେ[1] ସେ

ବନ ସୁନ୍ଦର[2], ଛନ୍ଦି ଫୁଟିଲେ ସେ କୁମୁଦ[3] କହ୍ଲାର ହେ

ସ୍ୱରପାଶେ[4] ବେଢ଼ିଛନ୍ତି ଇନ୍ଦୀବର ହେ

ଜନମନ କରୁଛନ୍ତି ସୁଖକର[5] ହେ ॥୨॥

ଏ ଋତୁ[6] ଦେଖିଣ ବନେ      ହରଷ ଧର୍ମ ନନ୍ଦନେ

ସଙ୍ଗେ ଘେନି ଦ୍ରୁପଦ ଦୁହିତା[7]

ପୁଣି ଅନାଇଁ ଗଗନ      କହନ୍ତି ପ୍ରିୟ ବଚନ

ଦେଖ ସଖି ଏବେ ଚନ୍ଦ୍ରର ଶୋଭିତାରେ[8]

ପ୍ରାଣ ସଜନି, ଦେଖ କି ସୁନ୍ଦର ଦିଶଇ ରଜନୀରେ[9]

ତାରାକୁଳକୁ ମଣ୍ଡୁଛି କର ଘେନିରେ

ଏଣୁ ନିର୍ମଳ ହୋଇଛି[10] ଏ ଅବସରେ ॥୩॥

---

୧ । ଖ. ନିର୍ମଳ କମଳ ନେତ୍ରକ ହେ ଜା କମଳ
ଅଳିକୁଳ ମିଳି କେଳି ଛନ୍ଦି କଲେ ହେ
ଗ. ଭ୍ରମର ମାନେ ଚୁମ୍ବ ଦେଲେ
ଘ. ଅଳିକୁଳ ମିଳି କେଳି ଛନ୍ଦିଲେ
୨ । ଖ. ନବ ସୁନ୍ଦର
ଗ. ନବ ସୁନ୍ଦର
୩ । ଖ. ଛନ୍ଦି ବନ୍ଧଲେଣ ଫୁଟିଲେ
ଗ. ବନ୍ଧଲେଣ ଫୁଟିଲ
ଘ. ଟଙ୍କଂ ବନ୍ଧଲେଣ ଫୁଟିଲେ କହ୍ଲାର ହେ
୪ । ଖ ଗ ଘ. ଚଉପାସେ
୫ । ଖ. ସୁଖକର
ଗ. ସୁଖକର
ଘ. ଜନମ କରୁଛନ୍ତି ସୁଖକର ହେ
୬ । କ. ଋତୁ
୭ । ଖ. ଦୁହିତ
ଗ. ଦୋହିତା
ଘ. ଦ୍ରୁପଦ ଦୁହିତା
୮ । ଖ. ସୁଧାବର୍ଷିତରେ
ଗ. ଅକ୍ଷର ନଷ୍ଟ ହୋଇଥିବାରୁ ନାହିଁ
ଘ. ଦେଖ ସଖି ଏ ସୁଧା ବର୍ଷଣରେ
୯ । ଗ, ଅକ୍ଷର ନଷ୍ଟ ଯୋଗୁଂ ଏ ପଦଟି ନାହିଁ
ଘ. କି ସୁନ୍ଦର ଦିସନ୍ତି ରଜନୀରେ
୧୦ । ଗ. ଶୁଭ୍ରନିର୍ମଳ କରୁଛି
ଘ. ଏଣେ ନିର୍ମଳ କରୁଛି

ଅନା ଅନା ନାସ୍ୱବର    ନଖ ମାନଙ୍କର ଶିର
ଦିଶୁଛନ୍ତି କେମନ୍ତ ପ୍ରଜ୍ୱଳନରେ[୧]
ଏହା ନନ୍ଦେ ମୋର ମନ    ସଖି ତୋହୋର ଜଘନ
ଅତ ସୁଖ[୨] ମୋ ନେତ୍ର ମଣ୍ଡନରେ
ଚମ୍ପା[୩] ବରନା, ଦଣ୍ଡି ଭ୍ରମର ବିକାଶ ପ୍ରି ଏ[୪] ଅନାରେ[୫]
ଚୋର ହାସ ପ୍ରାଏ[୬] ଦଶଇ[୭] ଶୋଭନାରେ
ମୋତେ ହସି ବାରେ[୮] କୋଳ କରୁ କନାରେ ॥୩॥

ଶୁଣି ନୃପତି କୁମାରୀ    ଗାଢ଼େ ଆଲିଙ୍ଗନ କରି
ବଦନ ମଣ୍ଡନେ ଚୁମ୍ବ ଦାନ[୯]
ନାନା ରୂପେ କଜରୁକେ    ରତ୍ନ ବନ୍ଧିଲେ ଉଚ୍ଛୁକେ[୧୦]
ଏହି ରୂପେ ନିଶ୍ଚିନ୍ତ ହୋଇଲେ[୧୧] ବନେ ହେ[୧୨]
ପାର୍ଥ[୧୩] ବିବେକ, ଚତୁର୍ମାସ୍ୟା ଅନ୍ତ୍ରେଣ ରଦ ଆଲୋକ[୧୪] ହେ
ମ୍ଳାସବନ୍ତାଙ୍କ ପ୍ରବୋଧି ସେ[୧୫] ଅନେକ ହେ
ନଷ୍ଟନ୍ତ୍ରେଣ ରହିଥାଅ ଏ କଟକ ଗୋ[୧୬] ॥୪॥

---

୧ । କ. ପ୍ରଜ୍ୱଳଣ
୨ । ଖ. 'କରେ' (ଅଧିକ)
ଘ. ଅତ ସୁଖକର ମୋର
୩ । ଘ. ହେମ
୪ । ଖ. ଦଣ୍ଡୀ ଭ୍ରମର ବକାସେ ଅନା
ଘ. ଦଣ୍ଡୀ ଭ୍ରମୁ ବକାସେ
୫ । ଗ. ଏ ପାଦ ଦୁଇଟି ଅକ୍ଷର ନଷ୍ଟ ହୋଇ ଥିବାରୁ ନାହିଁ
୬ । ଗ ପ୍ରିୟେ
୭ । ଘ. ଦସନ୍ତୀ
୮ । ଗ. 'ବାରେ' ପାଠ ନାହିଁ
୯ । ଖ. ବଦନ ଚୁମ୍ବିଲେ ଚିବୁକ ଦାନେ
ଗ ଘ. ବଦନ ମଣ୍ଡିଲେ ଚୁମ୍ବଦାନେ
୧୦ । ଘ. ନାନା କଜ୍ଜଳକ ଜର ବନ୍ଧିଲେ ଚବା ଧାଙ୍ଗର
୧୧ । ଘ. ହୋଇଣ
୧୨ । ଗ. ଅକ୍ଷର ନଷ୍ଟ ହୋଗ୍ୟ ଏ ପାଦଟି ନାହିଁ
୧୩ । ଖ ଗ ଘ- ପୁଣ
୧୪ । ଖ ଗ, ଚତୁର୍ମାସ ଅନ୍ତେ ହୋଇଲେ ଉତ୍ସୁକ ହେ
ଘ. ଚତୁର୍ମାଶା ଅନ୍ତେ ହୋଇଲେ ଉତ୍ସୁକ ହେ
୧୫ । ଖ ଗ. ପ୍ରବୋଧିଣ
ଘ. ପ୍ରବୋଧିଲ ଜନେକ ହେ
୧୬ । ଖ. କଟେକ ହେ

ସାର ଜନ୍ମେ ବନବାସ ଏଥି ହୋଇବ[1] ପ୍ରବେଶ

ନାନା ତୀର୍ଥ ସ୍ନାହାନ କରିବ[2] ଗୋ

ଶୁଣି ଶୋକ କଲ୍ଲ ବାଳ ଅର୍ଜୁନ ବୋଧନ୍ତି ମିଳ[3]

ସ୍ୱାବନ୍ତୀ ବୋଲେ ତୁମ୍ଭ ସଙ୍ଗେ ଯିବ ହେ[4]

ପ୍ରାଣ ନାୟକ, କେତ୍ନେ ବଞ୍ଚିବ ମୋ ପ୍ରାଣ ହେଉ ଧିକ[7] ହେ

ତୁମ୍ଭେ ଅଟ ପର ଧାର୍ମିକ ବିବେକ ହେ[5]

ମୋର ଗର୍ଭ ବେନି ମାସଟି ରସିକ ହେ[6] ॥୬॥

ବହୁତ ପ୍ରବୋଧ କରି[8] ଅର୍ଜୁନ ତହୁଂ ବାହାର

ଧର୍ମସୁତ ପାଶେ ପରବେଶ

ପଞ୍ଚ ପାଣ୍ଡବ ଦ୍ରୌପଦୀ[9] ସଙ୍ଗେ ଘେନି ଧର୍ମ ପତି

ବନେ[10] ଗମିଲେ ତେଜଣ ସେ କାଞ୍ଚୀଦେଶ ହେ[11]

ଶୁଣ ସୁଜନେ, ତହୁଂ ବହୁ ଦୂର କଲେ ସେ[12] ଗମନ ହେ[13]

ତୀର୍ଥ ଦେଖିଲେ ତହିଁ କରନ୍ତି ସ୍ନାହାନ[14] ହେ

କାହିଁ ଫଳ ମୂଳ କରନ୍ତି ଭୋଜନ ହେ[15] ॥୭॥

---

୧ । ଖ. ସର୍ବଲେଖ ବନବାସ ଏଥୁ ହୋଇବୁଂ
ଗ ଘ. ସାରଲେଖ ବନବାସ ଏଥି ହୋଇବୁ
୨ । ଖ. ସ୍ନାନ ଯେ କରିବୁଂ
ଗ. କରିବୁ
ଘ. ନାନା ତୀର୍ଥେ ସ୍ନାନ କେ କରିବ
୩ । ଖ. ପ୍ରବୋଧ କରି
ଗ ଘ. ପ୍ରବୋଧେ
୪ । ଖ. ଯିବୁ ହେ
୫ । ଖ. ତୁମ୍ଭ ବନ୍ଧୁ ଜ ଧରିବ
ଏକାୟୁ କହେ
ଘ. ତୁମ୍ଭ ବନ୍ଧୁ ଧରିବ ନାଏକ ହେ
୬ । ଗ. ମୋର ଗର୍ଭ ବେନି ମାସଟି
ରସିକ ହେ
୭ । ଖ. କେଉଁ ମୁହଁବ ମୋ
ପ୍ରାଣ ହେଉ ଧିକ ହେ
ଘ. ପ୍ରାଣ ନାୟକ ମୋର
ଗର୍ଭେ ବେନୀ ମାସଟୀ ରସିକ ହେ
୮ । ଘ. ବହୁତ ପ୍ରବୋଧ କରି
୯ । ଘ. ପଞ୍ଚ ପାଣ୍ଡବେ ଦ୍ରୁପତୀ
୧୦ । ଖ. ପାଠ ନାହିଁ
ଗ. ବନେ
୧୧ । ଗ. କାଞ୍ଚୀଦେଶ ତେଜିଣ ହେ
ଘ. ବନେ ପଶିଲେ ତେଜୀ କାଞ୍ଚି ଦେଶ ହେ
୧୨ । ଖ. ଶୁଣ ସଜନ ବହୁ ଦୂର ସେହୁ କରନ୍ତ
ଘ. ବହୁଦୂର କରନ୍ତୀ ସେ ଗମନ ହେ
୧୩ । ଖ. ଏହି ପାଦଟିର ପାଠ ନାହିଁ
୧୪ । ଖ. ସ୍ନାନ
ଗ. ତୀର୍ଥ ଦେଖିଣ କରନ୍ତ
ସ୍ନାହାନ ହେ
ଘ. ଧାଉଁଟି ନାହିଁ
୧୫ । ଘ. କରନ୍ତୀ ସେ ଭୋଜନ ହେ

ହନେ ଶ୍ରୀହରି[1] ଭେଟିଲେ ବଶିଷ୍ଠ ଋଷି ଦେଖିଲେ[2]
ଶୁଣ ଏବେ ଅର୍ଜ୍ଜୁନ[3] ଚରିତ ହେ
ଋକ୍ଷ କପି ମନ୍ତ୍ରୀବର ଶୁଷେଣ ନାମ ତାହାର[4]
ରାମଚନ୍ଦ୍ର ରଖିଥିଲେ ଏ ପର୍ବତ ହେ[5]
ଧର୍ମନନ୍ଦନ, ଏଥିରେ କଣବା[6] ତାହାକୁ ରାଜନ[7] ହେ
ଶୁଣି ଶୁଷେଣ ସାରସ କଲେ ମନ ହେ
ନାମ ଧରଣ ତେଜଲେ ସେ[8] ଜୀବନ ହେ ॥୮॥

କେତେହନେ ଦାଶରଥି ପ୍ରବେସ ହୋଇଲେ ଆସି[9]
ଏଥି[10] ରାଜ ଅଭିଷେକ ବଧି[11] ଯେନ
ରାମଚନ୍ଦ୍ର ଆଜ୍ଞା ଦେଲେ ଶୁଷେଣ ଆଣ ବୋଇଲେ[12]
ଶୁଣିକରି ଗଲେ ସେ[13] ପାବେନ ହେ
ତର୍ଜ୍ଜି ମିଳଲେ, ହନୁ ଦେଖନ୍ତି ଶୁଷେଣ ନାଶ ଗଲେ ହେ
ଗିରି ଖୋଳ[14] ତାହାକୁ ଶୁଆଇଲେ ହେ
ମଲ୍ଲୀ କୁସୁମ ଗୁଣ୍ଡାଏ ଯୋଡ଼ାଇଲେ ହେ ॥୯॥

---

୧ । ଘ. ବନେ ଶ୍ରୀଗିରି
୨ । ଘ. କହିଲେ
୩ । ଗ. ଅପୂର୍ବ
ଘ. ସୁନ୍ଦର
୪ । ଘ. ତାଙ୍କର
୫ । ଘ. ଏ ପ୍ରବତେ ହେ
୬ । ଖ. ଏଥି କରିବାକୁ
୭ । ଘ. ଏଥି କରିବାକୁ ରାଘନ ହେ
୮ । ଖ ଗ ଘ. ରାମନାମ ଧରି ତେଜିଲେ
୯ । ଖ ଘ. ଏଥି
୧୦ । ଖ ଗ ଘ. ଏହି ପାଠ ନାହିଁ
୧୧ । ଗ. ପାଠ ନାହିଁ
ଘ. ସର୍ବ
୧୨ । ସୁଷେଣଙ୍କୁ ଆଣ ଭଲେ
ଘ. ସୁଷେଣଙ୍କୁ ଆଣ ବୋଲେ
୧୩ । ଖ. ତହୁଂ ଗଲେ
ଗ. ଗଲେ ତହିଁ
ଘ. ଗଲେ ତହୁଂ
୧୪ । ଗ ଘ: 'ତହିଁ' ଅଧିକ

କୃଷ୍ଣ ମୃଗଛାଲ ଆଣି[୧]　　　ତଥି ଘରେ[୨] ଦେଲେ ପୁଣି

ପାଲଟି ଜଣାନ୍ତି ଶ୍ରୀରାମଙ୍କୁ[୩]

ଭରଥେ ଶ୍ରୀରାମ ଗଲେ[୪]　　　ସେ ସ୍ଥଳେ ଭଜଏ କଲେ

କାହିଁ ଅଛି[୫] ବୋଲି ପୁଚ୍ଛନ୍ତି ହନୁକୁ ହେ

କହେ ମାରୁତ, ସେଠାରେ ମୂର୍ତ୍ତି ଅଛି ତାହାଙ୍କୁ ପୋତ ହେ[୬]

ଶୁଣିକରି ତତ୍କ୍ଷଣ ଉଠି ସୀତାପତି[୭] ହେ

ଛାଲ ଫୁଲ ତତ୍କ୍ଷଣ କାଢ଼ିଲେ ତତ୍ତ୍ୱ ହେ ॥୧୦॥

ଦେଖିଲେ ରଘୁନନ୍ଦନ　　　ପାତାଳ ଫୁଟି ବଦନ[୮]

ମର୍କଟରେ ଲଙ୍ଗେଳ ହୋଇଛି

ହରଷ ହୋଇ ଅନେକ　　　ତର୍ପ୍ପଣ କଲେ ଅଭିଷେକ[୯]

ତାଙ୍କ ମଲ୍ଲିକା ଅର୍ଜ୍ଜୁନ ପଦ ଅଛି[୧୦] ହେ

ରଘୁ ତିଳକ,[୧୧] ଏଥି ଖୋଳାଇଲେ ପୁଷ୍କରଣୀ ଏକ

ଆପେ ଲଗାଇଲେ[୧୨] ଏ ଆରାମ ଯାକ

ଦେଖ ଦେଉଛନ୍ତି ଫଳ ଦାୟକ[୧୩] ॥୧୧॥

---

୧। ଗ. କୃଷ୍ଣାଜିନ ଛାଲ ପୁଣି
ଘ. କୃଷ୍ଣାଜିନ ଛାଲ ଆଣି
୨। ଖ ଗ ଘ. ତଥିପରେ
୩। ଘ. ପାଲଟିଣ ଜଣାନ୍ତି ରାମଙ୍କୁ
୪। ଘ: ଭର ଶ୍ରୀରାମ ଗଲେ
୫। ଖ ଗ. କାହିଁ ଅଛ
ଘ. କାହିଁ ଅଛନ୍ତି
୬। ଘ. ତାଙ୍କୁ ମୂର୍ତ୍ତି ଅଛ ପୋତା ହେ
୭। ଘ. ଶୁଣିକରି ଉଠି ତକ୍ଷଣ ସୀତାପତି ହେ
୮। ଘ. ପାତାଳ ଫୁଟି ବଦନ
୯। ଘ: ଅଭିଷେକ
୧୦। ଖ. ତାଙ୍କ ମଲ୍ଲିକା ଅର୍ଜୁନ ପଦବାନ୍ଧି
ହେ
ଘ ତାଙ୍କ ମଲ୍ଲିକା ଅର୍ଜୁନ ପଦ ବାନ୍ଧିଲେ
ହେ
୧୧। ଖ ଗ. ରଘୁ ତିଳେକ
ଘ. ରଘୁନାଏକ
୧୨। ଖ. ଲଗାଇଣ ଅଛନ୍ତି
ଘ. ଲଗାଇଛନ୍ତି
୧୩। ଗ. ଲଗାଇଛନ୍ତି ସେ ଆରାମ ଜାକ ହେ
ଦେଖ ହୁଅନ୍ତି ଫଳ ଦାୟକ ହେ
ଘ. ଦେଖ ହୁଅନ୍ତି ଫଳ ଦାଏକ ହେ

ଏଥିରେ ଆମ୍ଭେ ରହିବା  ସୁଖେଣ ଦିନ[1] ହରିବା
ଦେଖିବା ଯାଇ ମଲ୍ଲିକାର୍ଜୁନ[2]
ପଞ୍ଚ ପାଣ୍ଡବ ଦ୍ରୌପଦୀ[3]  ଦର୍ଶନ ଯାଇ କରନ୍ତି
ଅତି ଆନନ୍ଦେ ରହିଲେ ସେହି ବନ ହେ[4]
ପଣ୍ଡୁ ନନ୍ଦନ, ପର୍ଣ୍ଣଶାଳା ତହିଁ ରଚିଲେ[5] ବନ୍ଦନ ସେ
ଋଷିଙ୍କ ମଡ଼ିଆଁ[6] ଭିନ୍ନ ଭିନ୍ନ ସେ
ଦିବ୍ୟଫଳମାନ କରନ୍ତି ଭୋଜନ ହେ[7] ॥୧୨॥
ଗଲା ତହିଁ କେତେଦିନ  ମିଳିଲେ ମଧୁସୂଦନ
ଯୁଧିଷ୍ଠିରଙ୍କି ଦର୍ଶନ କରନ୍ତି
ସେ ପାଣ୍ଡବ ଗୁରୁଜଣ[8]  ପୂଜିଲେ କୃଷ୍ଣ ଚରଣ[9]
ଧର୍ମସୁତ ଶ୍ରୀକୃଷ୍ଣଙ୍କୁ ପଚାରନ୍ତି ହେ
ନନ୍ଦନନ୍ଦନ, କେଉଁଠାରୁ ଏଥିକୁ କଲ ଗମନ ହେ[10]
ଆମ୍ଭ ଆଗେ କହିବା ଦେଇ[11] ବଦନ ହେ[12]
ଶୁଣି ଜଣାଇଲେ ତାଙ୍କୁ ଭଗବାନ ହେ ॥୧୩॥

---

୧। ଖ. ସୁଖେ ଦିନ ହରିବା
୨। ମଲ୍ଲିକାର୍ଜୁନ
୩। ଘ. ଦ୍ରୁପଦୀ
୪। ଘ. ସେହିବନ ହେ
୫। ଖ ଗ. ରଖିଲେ
ଘ. ପୂର୍ଣ୍ଣସାଳା ତହିଁ ରହିଲେ
୬। ଘ. ଋଷି ମାନଙ୍କ ମଢ଼ୀଆ
୭। 'କ ଓ ଘ' ପୋଥିରେ ଏହି ପାଠ ନାହିଁ
୮। ଖ ଘ. ପାଣ୍ଡୁଜଣ
୯। ଘ. ପୋଥିରେ ନାହିଁ
୧୦। ଘ. କଲ ଗମନ ଏଥିକୁ ହେ
୧୧। ଖ. କହିବା ହଇ
ଘ. କହିବା ଭେଦ
୧୨। ଗ. ଏ ପାଦଟି ନାହିଁ

ସୁମଣ୍ଡଳେ ବ୍ୟୋମକେଶ ପାଇଥିଲୁ କପିଳାସ[୧]
ଶ୍ରବଣା ନାମେଣ[୨] ଦୈତ୍ୟ ସାର ହେ
ମହାପ୍ରତାପୀ ଅସୁର କଲା ଅସଂଖ୍ୟ[୩] ସମର
ଆମ୍ଭେ ତାଙ୍କୁ ହାରିଗଲୁ[୪] ହରହର ହେ

ଧର୍ମକୁମର, ଜାଣଇ ସେ ନାନା ପ୍ରକାରେ ସମର ହେ
ପାଇଥିଲା ବ୍ରହ୍ମାଙ୍କ ଠାରୁ ବର
ପାଇ କହିଲୁ କର୍ଣ୍ଣଙ୍କାର ଆଗର ହେ[୫] ॥୧୪॥
ଆମ୍ଭ ବୋଲେ କର୍ଣ୍ଣ ଗଲା ଅସୁରକୁ ଓଗାଳିଲା
ବେଳକାନେ ପଡ଼ିଲା ସମର[୬]
ଦେଖି ଦୈତ୍ୟ[୭] କୋପ କଲା ବ୍ରହ୍ମ ଶକତ ମାଇଲା
ବାଣ ମୋହଗଲା ରାଧାର[୮] କୁମର ହେ
ଦୈତ୍ୟ ଚଳିଲା, ଯାଇ ଆପଣା ଭୁବନରେ[୯] ମିଳିଲା ହେ[୧୦]
ପୁଣ ରାବ ପାର୍ଥି ରବ ଛଦେ[୧୧] ହେଲା ହେ
ବଡ଼ ବଳର ଦନୁଜ[୧୨] ମନେ କଲା ହେ[୧୩] ॥୧୫॥

---

୧ । ଘ. ଜଳାଳସ
୨ । ଖ. ନାମରେ
ଗ. ପ୍ରବଣା ନାମେଣ
ଘ. ପବଣା ନାମରେ
୩ । ଖ. ଅପାର
୪ । ଘ. ଆମ୍ଭେ ତାହାକୁ ହାରିଲେ
୫ । ଖ ଗ. ବଳେ ନ ଜିଣିଲେ । ମୁରାରିଙ୍କୁ କର୍ଣ୍ଣ ପଚାରିଥିଲ
ଦୈତ୍ୟ କଥା ବେଗେ କହେ ତାଙ୍କୁ କହିଲେ ହେ
ଦ୍ରୁପଦୀ କୁମାର ବୋଲେ, ଆମ୍ଭେ ବୋଲନ୍ତେରେ
୬ । ଖ ଗ ଘ. ଅନେକ ସମର କଲା ସାର
୭ । ଗ. ଅସୁର
୮ । ଖ. ରାଧିକା
ଗ. ମୋହ ହୋଇଲା ରାଧିକା
ଘ. ରାଧେୟ
୯ । ଖ. ଭୁବନରେ
ଗ ଘ. ଭୁବନେ
୧୦ । ଖ. ଶତ୍ରୁ ମଲା ବୋଲି ମନରେ
ଭାଳିଲା ହେ (ଅଧିକ ପାଠ)
୧୧ । ଗ. ପାଣ୍ଡୁ ଛଦେ ହେଲା
୧୨ । ଗ. ନିହୁଳ ବଳର ଦୈତ୍ୟ
୧୩ । ଘ. ଏ ଧାଡ଼ିଟି ନାହିଁ

ଅମୃତ କୁଣ୍ଡଳ କର୍ଣ୍ଣ            ଯୁଗଳରେ ସୁଶୋଭନ[୧]
ସୂର୍ଯ୍ୟ ତେଜେ ଅମୃତ ଝରନ୍ତି
ପଶିଲା ତାର କୁଣ୍ଡରେ            ଚେତନା ହେଲା ପିଣ୍ଡରେ
ତତକ୍ଷଣେ ଉଠି କର୍ଣ୍ଣ ଉଭା[୨] ହେଲା ହେ
ତାକୁ ଦେଖିଲୁ, ଆମ୍ଭେ ହରହର ଆଗରେ ମିଳିଲୁଁ[୩] ହେ
ମାନବାଣ ଭୁଜବାଣ ତାକୁ ଦେଲୁ ହେ
କର୍ଣ୍ଣଠାରୁ ବହୁତ ପୂଜା ପାଇଲୁ ହେ[୪] ॥୧୬॥
କର୍ଣ୍ଣ ମୋହ ଗଲାବେଳେ            ବସି ରହିଲୁଁ[୫] ସକଳେ
ବେଣଶର ଦେହୁଁ[୬] ଜାତ କଲୁଁ
ଏ ଶରେ[୭] ଦୈତ୍ୟଙ୍କୁ ମାର            କହୁଁ ମିଳିଲା ଅସୁର
ତାକୁ ଦେଖି ବେଣ ଅନ୍ତର ହୋଇଲୁ ହେ
ଦୈତ୍ୟ ଯୁଝିଲା, କର୍ଣ୍ଣ ଅସଂଖ୍ୟ[୮] ସମର ତହିଁ କଲା ହେ[୯]
ଦୈତ୍ୟ ଛିନଖଣ୍ଡ ହୋଇଣ[୧୦] ପଡ଼ିଲା ହେ
ପ୍ରାଣ ଗଲାବେଳେ ରଡ଼ଏ ଛାଡ଼ିଲା ହେ[୧୧] ॥୧୭॥

---

୧ । ଖ ଗ. କର୍ଣ୍ଣ ଯୁଗଳେ ଶୋଭନ
ଘ. କର୍ଣ୍ଣ ଯୁଗରେ ଶୋଭନ
୨ । ଖ. ହେଲ (ଅଧିକ)
ଗ. ହୋଇଲା ଅଧିକ
୩ । ଖ ଗ. ତା ଆଗେ ମିଳିଲୁଁ
ଘ. ହରହର ଆଗେ ମିଳିଲୁ
୪ । ଘ. କର୍ଣ୍ଣଠାରେ ବହୁତ ପୂଜା ପାଇଲୁ
୫ । ଖ ଘ. ରହିଲୁ
ଗ. ଜିବାବେଳେ ରହିଲୁ
୬ । ଖ. ବେଣୀ
ଗ. "ଶର ଦେହୁଁ" ନାହିଁ
ଘ. ବେଣୀ ସର ବେଣୀ ଜାତକଲୁ
୭ । କ ଗ. ସରେ
୮ । ଖ. ଅପଷ
୯ । 'କ' ପୋଥିର ୧୭ ପଦର ଶେଷ
ଦୁଇପାଦ ପୂର୍ବରୁ 'ଖ' ପୋଥିରେ
ଗ. ଏକାବେଳେ ବେଣୀ ଶର ପ୍ରହାରିଲା ହେ
(ଅଧିକ ପାଠ)
୧୦ । ଗ. ହୋଇ ତଳେ
ଘ. ହୋଇ ପଡ଼ିଲା ହେ
୧୧ । ଖ ଗ. ଶେଷ ପାଦଟି ନାହିଁ

ଦେଖି ଆମ୍ଭେ ତୋଷ ହେଲୁ    କର୍ଣ୍ଣ ଛାମୁରେ ମିଳିଲୁଁ[1]
ବୋଇଲୁ ହେ କର୍ଣ୍ଣ ମାଗବର
ବସ୍ତ୍ର ରୂପେ ମୂର୍ତ୍ତି କଲ    ଶିରରେ କର[2] ଯୋଡ଼ିଲ
କର୍ଣ୍ଣ ବୋଇଲା ବଞ୍ଚ ଏ ବେନି ଶର[3] ହେ
ବାଣୀ ତାହାର, ଶୁଣି ବେନି ଜନ[4] କହିଲୁଁ[5] ଭଲ ହେ
କେବା ହରିନେବ ହରିହର ଶର ହେ[6]
ତାହାକୁ ଜଣନ୍ତା ନୋହିବ[7] ତ୍ରିପୁର ହେ ॥୧୮॥

ଚାରି ତାର ବେନି ଜାନୁ    ଶର ରଖେ ଭାନୁ ସୂନୁ[8]
ସେଠାରୁ ଅଇଲୁ ଆମ୍ଭେ ଚଳି
ଶୁଣି କହିଲେ ଅର୍ଜ୍ଜୁନ    ଅଷ୍ଟପ୍ରୁ ହୋଇଲେ କର୍ଣ୍ଣ
ତୁମ୍ଭେ ହରିହର କଲ ଏହା ଭଲ ହେ
ଇନ୍ଦ୍ର ଛାମୁରେ, ବର ମାଗିଅଛି ମୁଁ ହିଁ ତ ପୂର୍ବରେ[9] ହେ
ସ୍ୱର୍ଗେ ନିବାତକୁ ମାରିବା ବେଳରେ ହେ[10]
ପିତା ଅବଶ୍ୟ[11] ଯିବଟି କର୍ଣ୍ଣପୁରେ ହେ ॥୧୯॥

---

୧ । ଖ. କହିଲୁଁ
୨ । ଘ. ରୂପେ ତୃପ୍ତି କଲ ଶିରେ କର ଯୋଡ଼ିଲ
୩ । କ ଖ. ଶର
୪ । ଖ. ବେନିଜଣେ
୫ । ଘ. କରେ
୬ । ଗ. ସେନାଜିବ ଶର ହେ
ଘ. ସେନାଜିବ ବେନି ଶର ହେ
୭ । ଗ. ତାକୁ ଜଣନ୍ତା ନାହିଁ
ଘ. ତାକୁ ଜଣନ୍ତା ନୋହିବ
୮ । ଖ ଘ. ଶର ରଖେ ରବି ସୁତ
ଗ. ରବି ସୁନୁ
୯ । ଘ. ମୁଁ ପୂର୍ବରେ ହେ
୧୦ । ଘ. ନିବାତ ଦୈତ୍ୟକୁ ମାରିଣ
୧୧ । ଗ ଘ. ଅବଶ୍ୟ

ଅମୃତ କୁଣ୍ଡଳ ବେନ    ଅଭେଦ କବଚମଣି[1]
ବଜ୍ର ଛଳରେ[2] ସେ ଆଣିଦେବ
ତୁମ୍ଭେ କଲ ପୁରୁଷାର୍ଥ    ହୋଇଲା ସବୁ ବ୍ୟର୍ଥ[3]
ଆଉ କେଉଁ ବୀର କର୍ଣ୍ଣକୁ ଜିଣିବ[4] ହେ
ପଦ୍ମଲୋଚନ, ଏହା ଶୁଣି ବିରସ ହୋଇଲା ମନ ହେ
ଶୁଣି ତାହାଙ୍କୁ କହନ୍ତି ଭଗବାନ ହେ
ଆମ୍ଭେ କରାଇବା ତାହାକୁ ନିଧନ[5] ହେ ॥୨୦॥

ଆମ୍ଭେ ଅଙ୍ଗ ଦେଶ ଯିବୁଁ    ତାହାର ସତ୍ୟ ବୁଝିବୁଁ[6]
ବାସବ ଆଣିଲେ[7] ଦେବଶକ୍ତି
ସେ ପ୍ରକାରେ ବେନ ଶର[8]    ଆଣିମା ହେ ବୀରବର
ଏବେ ଶୋଚନା ତ ନ କର ଚିତ୍ତକି[9] ହେ
ନନ୍ଦ କୁମର, ଏତେ କହି ସେଠାରୁ[10] ହେଲେ ଅନ୍ତର ହେ
ଯାଇ ପରବେଶ କର୍ଣ୍ଣର ମନ୍ଦିର ହେ[11]
ଏଣୁ ଚିନ୍ତା ଅହର୍ନିଶି ବିଶ୍ୱମ୍ଭର ହେ[12] ॥୨୧॥

---

୧ । ଖ ଗ ଘ. କପଟ
୨ । ଖ ଗ. ବଜ୍ର ଛଳେଣ
ଘ. ବଜ୍ର ଛଳେଣି
୩ । ଖ. କଲୁ ପୁରୁଷାର୍ଥ ସକଳ ହେଲା ବ୍ୟର୍ଥ
୪ । ଖ ଗ ଘ. ଜିଣିମ
୫ । ଖ. ପୁଣି କହନ୍ତି ମନ ମୋହନ ହେ
କିଛି ଚିନ୍ତା ତୁ ନ କର ଅର୍ଜୁନ ହେ
ଗ. ପୁଣି କହନ୍ତି ତାଙ୍କୁ ମନମୋହନ ହେ
ଆମ୍ଭେ କରାଇବା ତାହାଙ୍କୁ ଭକ୍ଷଣ ହେ
ଘ. ପୁଣି ତାଙ୍କୁ କହନ୍ତି ମନମୋହନ ହେ
କିଛି ଚିନ୍ତା ତୁ ନକର ଅର୍ଜୁନ ହେ
୬ । ଖ. ବୁଝିବୁଁ
ଘ. କର୍ଣ୍ଣର ସତ୍ୟ ବୁଝିବୁ
୭ । ଘ. ମାଗିଲେ
୮ । ଖ. ଏ ପ୍ରକାରେ ବେନି ଶର
୯ । ଖ. ତୁମ୍ଭ କହିଁ ହେ
ଘ. ଶୋଚନା ତୁ ନ କର
୧୦ । ଗ. ହୋଇଲେ
ଘ. କହିକରି ହୋଇଲେ
୧୧ । ଘ. ପରବେଶ କର୍ଣ୍ଣ ମନ୍ଦିର ସେ
୧୨ । ଘ. ଅହର୍ନିଶି ବିଶ୍ୱମ୍ଭର ସେ

## ଷଷ୍ଠଦଶ ଛାନ୍ଦ

### ରାଗ—ଚୋଡଖଣ୍ଟିଆରୀ[1]

ବିପ୍ର ରୂପେ ନରହରି　　　　ବସନ ଛିନ୍ନ କନ୍ଥ କରି
କରେ କୁଶ ବଟୁ ଚମ୍ପାପାଣି ଘେନି କନ୍ଧେ ପବିତ ଉତ୍ତରୀ[2]
　　କପଟେ ହରି[3] ॥୧॥
ଦ୍ୱାଦଶ ଚିତା ଭୂଷଣ　　　　ରୁଦ୍ରାକ୍ଷ ମାଳା ଗଳେଣ
କର୍ଣ୍ଣ ଦ୍ୱାରେ ମିଳି ବେଦ ଧ୍ୱନି କଲେ ଆପଣେ ଶ୍ରୀ ନାରାୟଣ
　　ଦିବ୍ୟ ବ୍ରାହ୍ମଣ ॥୨॥
କର୍ଣ୍ଣ କର୍ଣ୍ଣରେ ଶୁଣିଲେ[4]　　　　ବ୍ରାହ୍ମଣ ଆଗେ ମିଳିଲେ[5]
ନମସ୍କାର କରି ବିନମ୍ର ହୋଇଣ ସେ ବିପ୍ର ପାଦ ଧୋଇଲେ[6]
　　ସନ୍ତୋଷ ହେଲେ[7] ॥୩॥
ବସାଇ ଦିବ୍ୟ ଆସନ　　　　ବେନିକର ଯୋଡ଼ି କର୍ଣ୍ଣ
ଜଣାଇଲେ ଦାନବେଳ ଗଡ଼ିଗଲା[8] କାଲି ଦେବି ବହୁଧନ
　　ତୋଷିବି ମନ ॥୪॥
ଶୁଣି କହନ୍ତି ଶ୍ରୀପତି　　　　ଧନେ ନାହିଁ ଆମ୍ଭମତି
ଅମୃତ[9] ଭୋଜନ ଦେବ ହେ ରାଜନ ମୁଁ ବଡ଼ କ୍ଷୁଧା ଆରତି
　　କମ୍ପଇ ଗାତ୍ର[10] ॥୫॥
କହନ୍ତି ଅଙ୍ଗ ରାଜନ　　　　ଦେବି ଅପୂର୍ବ ଭୋଜନ
ବିପ୍ର ବୋଇଲେ ସତ୍ୟ କଲେ ତୁ ଯିମା ମାଗିବୁ ତୁମ୍ଭଙ୍କୁ କର୍ଣ୍ଣ[11]
　　ଯହିଁକି ମନ[12] ॥୬॥

---

୧। ଘ. ରାଗ ଭୂଟୀଆର ତୋଡ଼ି
୨। ଖ ଗ. ଉତୁରି
　ଘ. ପଇତା ଉତୁରି
୩। ଖ. କପଟ କରି
　ଘ. କପଟ ହରି
୪। ଗ. ଶୁଝିଲ
　ଘ. ଶୁଣିଲ
୫। ଗ ଘ. ମିଳିଲ
୬। ଘ ବ୍ରାହ୍ମଣ ପାଦ ଧୋଇଲ
୭। ଘ. ସନ୍ତୋଷ ହେଲ
୮। ଖ. ଜଣାଇଂ ଦାନ ବେଳ ଆଜ ସରିଲ
　ଗ ଘ. ଜଣାଇ ଦାନବେଳ ଆଜ ବହିଲ
୯। ଗ ଘ. ଅପୂର୍ବ
୧୦। ଖ. ମତ
　ଘ. ତୋଷ ମୋ ମତ
୧୧। ଗ. ଯହିଁକି ମନ
୧୨। ଗ. ତୁମ୍ଭଙ୍କୁ କର୍ଣ୍ଣ

କର୍ଣ୍ଣ ସତ୍ୟ ଉଚ୍ଚରିଲେ ବିପ୍ର ଧର୍ମ[1] ସାକ୍ଷୀ କଲେ
ନୃସିଂହ ଉପାସିକ ଆମ୍ଭେ ସନ୍ତୋଷ କେବଳ ମାଂସ ଖାଇଲେ[2]
ତୁ ସତ୍ୟ କଲେ[3] ॥୭॥
ତୋ ପୁତ୍ର ବୃଷକେସନ[4] ଆପଣେ ମାର ରାଜନ
ସେ ମାଂସ ତୋ ନାରୀ ରନ୍ଧନ କରିବ[5] ଆମ୍ଭେ କରିବୁ ଭୋଜନ
ସନ୍ତୋଷ ମନ ॥୮॥
ଶୁଣି କରି[6] କର୍ଣ୍ଣ ଗଲେ ରାଣୀ ଗୃହରେ କହିଲେ[7]
ସତ୍ୟ କରାଇଣ ବିପ୍ରବର ମୋତେ ବୃଷକେସନ[8] ମାଗିଲେ
ସଙ୍କଟ ଦେଲେ[9] ॥୯॥
ମୋହୋର ଏକ ନନ୍ଦନ କେମନ୍ତେ କରିବ ବଧନ
ନୋହିଲେ ସେ ସତ୍ୟଭଙ୍ଗ[10] ହୋଇଅଛୁ ରାଣୀ କହିଲେ ବଚନ
ନୃପ ଶମନ ॥୧୦॥
ସତ୍ୟେ ଅନନ୍ତ ଧରଣୀ ଶିରେ ବହିଛନ୍ତି ଆଣି[11]
ସତ୍ୟେ ଦିବାକର ଚନ୍ଦ୍ରମା ଉଦୟ ହୋଏ ଦିବସ ରଜନୀ[12]
ମର୍ତ୍ତ୍ୟରେ[13] ପୁଣି ॥୧୧॥
ମାର ବୃଷକେସନକୁ[14] ଭୋଜନ ଦିଅ ବିପ୍ରଙ୍କୁ
ତୁମ୍ଭେ ଆମ୍ଭେ ପ୍ରୟାଗରେ ଝାସ ଦେବା ନ ଭାଳ ଆଉ ମନକୁ
ରଖ ସତ୍ୟକୁ ॥୧୨॥

---

୧ । ଗ. 'ଧର୍ମ' ପାଠ ନାହିଁ
୨ । ଖ. ରୁଧିର ମାଂଶ ପାଇଲେ
ଘ. ଉପାସୀକ ମୁହିଂ ସନ୍ତୋସ
ରୁଧିର ମଂସ ପାଇଲେ
୩ । ଘ. ରୁ ସତ୍ୟ ଦେଲେ
୪ । ଖ ଗ. ବୃଶିକେଶନ
ଘ. ବୃର୍ସା କେହନ
୫ । ଖ ଗ ଘ. କରିବ
୬ । ଖ. କହିଂ
୭ । ଘ. କର୍ଣ୍ଣ କହିଂ ଗଲ ଟ୍ରଣି ଗ୍ରୁମୁରେ
କହିଲ
୮ । ଗ. ବୃସିକେସନ
ଘ. ବୃସିକେସନ ମାଗିଲ
୯ । ଖ ଗ ଘ. ହେଲ
୧୦ । ଘ. ନୋହିବ ସତ୍ୟଭଙ୍ଗ
୧୧ । ଖ. ପୁଣି
୧୨ । ଖ ଘ. ଉଦଏ ଥିଲେ ନ ଲଢେ ଧରଣୀ
୧୩ । ଖ ଗ ଘ. ସତ୍ୟରେ
୧୪ । ଖ ଗ ଘ. ବାସିକେଶନକୁ

ବୃଷକେତନ[1] ଆଇଲେ        ରାଜାରାଣୀ ଶୋକ କଲେ
ପିତା ମାତାଙ୍କର ଚରଣେ ଓଳଗି କୁମର ତାଙ୍କୁ ପୃଚ୍ଛିଲେ
ସବୁ[2] ଶୁଣିଲେ ॥୧୩॥

କହଇ ବୃଷକେତନ[3]        ବିପ୍ରଙ୍କୁ ଦେବ[4] ଭୋଜନ
ପିତା ମାତାଙ୍କର ସତ୍ୟ ମୁଁ[5] ରଖିବି ଧନ୍ୟ ମୋହୋର ଜୀବନ
ନୃପ ନନ୍ଦନ ॥୧୪॥

ଆସ ଆସ ହେ ପିତୁର        ଖଡ଼ଗେ ଛେଦ ମୋ ଶିର
ପୁଣ ତୁମ୍ଭର କି କୁମର ନୋହିବ ତୋଷ କଲେ[6] ବିପ୍ରବର[7]
ଶୋକ ନ କର ॥୧୫॥

ଖଡ଼ଗ ଧରିଣ କର୍ଣ୍ଣ        ସଙ୍ଗରେ ବୃଷକେତନ[8]
ବିପ୍ରଙ୍କ ସମୀପେ ଦେଇଣ ବୋଲନ୍ତି ମାରିଣ କର ଭୋଜନ[9]
ମୋର ନନ୍ଦନ ॥୧୬॥

ଶୁଣି କହେ ଦ୍ୱିଜବର        ତୁମ୍ଭେ ଛେଦ ପୁତ୍ର ଶିର
ସତ୍ୟ ଛାଡ଼ିଲେଟି ବାହୁଡ଼ିଣ ଯିବି[10] ଥାଉ ତୁମ୍ଭର କୁମର
ହେ ନୃପବର[11] ॥୧୭॥

ପୁତ୍ରକୁ ବୋଲଇ ପିତା[12]        ତୁମର ଇଷ୍ଟ ଦେବତା
ବୃଷକେତନ ବୋଲେ ରାଧା ମାଧବ ସେ ସିନା ଇଷ୍ଟ ଦେବତା[13]
ମାର ହେ ପିତା ॥୧୮॥

---

୧ । ଖ ଗ ଘ. ବୃଷିକେତନ
୨ । ଖ ଗ ଘ. ସବୁ
୩ । ଖ ଗ ଘ. ବୃଷୀକେତନ
୪ । ଖ ଗ ଘ. ହେବ
୫ । ଗ ଘ. ସତ୍ୟକୁ
୬ । ଖ. ନନ୍ଦନ ନୋହିବ ତୋଷକର
ଗ. ବିପ୍ରସତ୍ୟ
ଘ. କି ତୁମ୍ଭର ନନ୍ଦନ ନୋହିବ ତୋଷକର
୭ । ଗ. ରକ୍ଷାକର
୮ । ଖ ଗ ଘ. ସେନାଣ ବୃଷିକେତନ
୯ । ଗ. ବିପ୍ରଙ୍କୁ ସମର୍ପି ବୋଲନ୍ତି ମାରିଣ କର ଏହାକୁ ଭୋଜନ
ଘ. ବିପ୍ରଙ୍କୁ ସମର୍ପି ବୋଲନ୍ତି ମାରିଣ ଏହାକୁ କର ଭୋଜନ
୧୦ । ଘ. ସତ୍ୟ ଛାଡ଼ିଲେ ବାହୁଡ଼ି ମୁଁ ଯିବି
୧୧ । ଖ. ବୀରବର
୧୨ । ଘ. ବୋଲନ୍ତି ପିତା
୧୩ । ଖ. ବୃଷିକେତନ ବୋଲେ ରାଧାବଲ୍ଲଭ
ସିନା ମୋ ଜୀବ ଦାତା
ଗ. ବୃଷିକେତନ ବୋଲେ ରାଧା ମାଧବ
ସେ ସିନା ମୋ ଜୀବ ଦାତା
ଘ. ବୃଷୀକେତନ ବୋଲେ ରାଧାବଲ୍ଲଭ
ସେ ସିନା ମୋ ଜୀବ ଦାତା

କର୍ଣ୍ଣ ଖଣ୍ଡିଗ ଧରଣ ଲୁମର କର୍ଣ୍ଣେ ମାରଣ
ବଶୁକେସନ[୧] ବେନଖଣ୍ଡ ହୋଇଣ ପଡ଼ନ୍ତି ଭୂମି ଛନେଣ[୨]
ଗଲା ତା ପ୍ରାଣ ॥୧୯॥
ଦେଖିଣ ବିପ୍ର କହନ୍ତି ଜଅ ତୋର ଗ୍ରାଣୀ କନ୍ତ
ଏ ମାଂସ କାଟି ରନ୍ଧନ କରଦେବ ଭୁଞ୍ଜିବୁ ଆମ୍ଭେ[୩] ତତ୍ତତ
ଅଟେ ନୃପତ ॥୨୦॥
ସେଠାରୁ ଗଲେ ଗ୍ରଧେବ[୪] ଯେକଣ ପୁତ୍ରର ଶବ
ଗ୍ରାଣୀ ଆଗେ ଦେଲେ ଖଣ୍ଡ ଖଣ୍ଡ କରି[୫] ଏ ମାଂସ ରାନ୍ଧିଣ ଦେବ
ବିପ୍ର ଭୁଞ୍ଜିବ[୬] ॥୨୧॥
ଦେଖି[୭] ଗ୍ରାଣୀ ମାଂସ ନେଲେ ତଳ ପ୍ରମାଣ କାଟିଲେ[୮]
ବିପ୍ର ଗଲେ[୯] ପଛେ ଗ୍ରୋଦନ କରନ୍ତି ପୁତ୍ର ମସ୍ତକ ରଖିଲେ
ବିସ୍ମୃର କଲେ ॥୨୨॥
ଷଡରସ ପ୍ରକାରେଣ ସେ ମାଂସ କଲ ରନ୍ଧନ[୧୦]
ଜଳ ଯେନ ବିପ୍ର ପାଦ ଧୋଇ କହେ ବସ ଏଣୁ ଠାବରେଣ
ଦଦ୍ୟ ବ୍ରାହ୍ମଣ ॥୨୩॥
ବିପ୍ର ବୋଲନ୍ତି ଗ୍ରଜନ ହେଉଛ ତ ସତ୍ୟ ଭଗ୍ନ
ଦେହରୁ ଯାଉ ଅଟଇ ନା ମସ୍ତକ ଗ୍ରାଣୀ ନ କଲେ ରନ୍ଧନ
ଜାଣିଲ ମନ ॥୨୪॥

---

୧। ଖ ଗ ଘ: ବର୍ଣକେସନ
୨। ଖ ଗ ଘ. ସେ ଭୂମିରେଣ
୩। ଖ ଗ ଘ. କାଟିଣ ରନ୍ଧନ କରଣ ଆମ୍ଭକୁ ଦିଅ
୪। ଖ ଘ. ଗଲେକ ତହୁଂ ଗ୍ରାଧେବ
ଗ. ଗଲେକ ତହିଁ ନୃଧବ
୫। ଘ. ଖଣ୍ଡି ଖଣ୍ଡି କର
୬। ଖ ଗ ଘ. ବକଳସ୍ତବ
୭। ଖ ଗ ଘ. ଶୁଣି
୮। ଗ ପତ୍ରେ କାଟିଲ
ଘ. ପତ୍ରେ ଛେଦଲେ
୯। ଗ. ବୋଲେ
୧୦। ଖ ଗ ଘ. ସେ ମାଂସକୁ ସିଝାଇଣ

ସେ ମୁଣ୍ଡ ଗୋଟି ଛେଦିବୁ[1]   ପାଚନ କରିଣ ଦିଅ
ତେବେ ସେ[2] ଆମ୍ଭେ କରିବୁ[3] ହେ ଭୋଜନ ସଭିରେ ରାଜନ ଯାଅ[4]
ତୋଷ କରଅ ॥୨୫॥

ଶୁଣି କରି ରାଜା[5] ଗଲେ   ରାଣୀ ଗୃହରେ କହିଲେ
ଶୁଣି କରି ରାଣୀ ମହାଭୟ କରି ମସ୍ତକ ଆଣି ଛେଦିଲେ ହେ
ପାଚିଲ କଲେ ॥୨୬॥

ଦେଖି କରି କର୍ଣ୍ଣ ଗଲେ   ବିପ୍ର ପାଶେ[6] ଜଣାଇଲେ[7]
ଅପୂର୍ବ ଭୋଜନେ ପାଣି ଠାବ କରି[8] ବ୍ରାହ୍ମଣଙ୍କୁ ବସାଇଲେ
ହରଷ ହେଲେ ॥୨୭॥

ବିପ୍ର ବୋଲନ୍ତି[9] ହେ କର୍ଣ୍ଣ   ସ୍ୱର୍ଣ୍ଣ ଠାବେ ବାଢ[10] ଅନ୍ନ
ମାଂସ ସ୍ୱର୍ଣ୍ଣ ଠାବେ ଭୁଲ[11] କରିଦିଅ ତେବେ କରିବା ଭୋଜନ
ହରଷ ମନ ॥୨୮॥

ତୁ ରାଜା ରାଣୀ ସହିତେ   ଭୁଞ୍ଜିବ[12] ଆମ୍ଭ ସଙ୍ଗତେ
ତେବେ ତୋର ଚରିତ[13] ନିର୍ମଳ ଜାଣିମା ଆମ୍ଭେ ସେ ଯିବା ପରତେ[14]
ତୋ ଶୁଦ୍ଧ ଚିତେ ॥୨୯॥

କହଇ କର୍ଣ୍ଣ[15] ରାଜନ   ବିପ୍ର ମୋ ଦୋଷ ନ ଘେନ
ପୁତ୍ର ମାଂସ ମୁହିଁ କେମନ୍ତେ ଭକ୍ଷିବି ଶୁଣିବେ ତିନି ଭୁବନ[16]
ବିସ୍ମୟ ମନ ॥୩୦॥

---

୧ । ଖ. ଛେଦିବ
୨ । ଙ. ଯେବେ
୩ । ଖ. ଯାଉ କାହିଁ
ଗ. କରିବୁନି
୪ ।ଘ. କରିବୁ ବା ଭୋଜନ ପଞ୍ଚଂଭେରଣ
ଦେଖା ଯାଅ
୫ । ଖଗ ଙ. କର୍ଣ୍ଣ
୬ । ଗ. ଗୃହରେ
ଙ: ବିପ୍ରଙ୍କୁ ଦେଖି
୭ । ଗ. କହିଲେ
୮ । ଖ. ତେଣି
ଘ. ଅପୂର୍ବ ଭୁବନେ ଠାବ ଆଣି କରି
୯ । ଖଘ. ବୋଇଲେ
୧୦ । ଖଘ. ବାଢ
୧୧ । ଙ. ଭୁଲ
ଘ. ଭୁଲେ
୧୨ । ଘ. ଭୁଞ୍ଜିବୁ
୧୩ । ଖ. ମନ
୧୪ । ଘ. ଆମ୍ଭେ ଯେ କରୁଂ ପରତେ
୧୫ । ଘ. କହନ୍ତି କର୍ଣ୍ଣ
୧୬ । କ. ମଧ୍ୟ ଭୁବନ
ଘ. ଜା ସୁନ୍ଦର ତ୍ରିଭୁବନ

ଶୁଣି ବିପ୍ର କଲେ ରୋଷ    ଭରିଛ ଚଣ୍ଡିରେ[1] ବିଷ
ତୁମ୍ଭେ ବେଦଜନ ନ ଭକ୍ଷିଲେ ଆମ୍ଭେ କେମନ୍ତେ କରିବୁ ଗ୍ରାସ
ତୁ ଅବିଶ୍ୱାସ ॥୩୧॥
କର୍ମା ତୁମ୍ଭ ସତ୍ୟ କଲୁ    ଭୋଜନ ଦେବ[2] ବୋଇଲୁ
ଅକାରଣେ କର୍ମା ପୁତ୍ର ନାଶ କରି[3] ଏବେ ସତ୍ୟ ଭଗ୍ନ ହେଲୁ
ଯାହା କହିଲୁ ॥୩୨॥
ଶୁଣି କର୍ଣ୍ଣ କର ଯୋଡ଼    ସେ ବିପ୍ର ଚରଣେ ପଡ଼
ସନମତ କରି ଅନ୍ନ ମାଂସ ଆଣି[4] ସ୍ୱର୍ଣ୍ଣଠାବ କରି ବାଢ଼ି[5]
ଫଣସ୍ତୁ ଗୁଡ଼ ॥୩୩॥
ବିପ୍ରକୁ ଠାବେ ବସାଇ    କର୍ଣ୍ଣ ଠାବକେ ବସଇ
ରାଣୀ ଠାବକେ ବସି କରି ଅନାଇଂ ବିପ୍ରଙ୍କୁ ପୁଣ କହଇ
ଠାବେ ରହଇ ॥୩୪॥
ରନ୍ଧି ଝୁର ଧରି[7] କରେ    ରାଣୀ ତୁ ଯାଅଁ ବାହାରେ
ବୃଷକେତନର ନାମ ଧରି ଡ଼ାକ ଦିଅ ଅତି[9] ଉଚ୍ଚ ସ୍ୱରେ[10]
ଅତି ସତ୍ୱରେ ॥୩୫॥
ରାଣୀ କହଇ ବଚନ[11]    ଦଶ ବରଷ ନନ୍ଦନ
ତୁମ୍ଭ ଆଜ୍ଞାଂରେ[12] ଛେଦନ କରି ମାଂସ ମୁହିଁତ କଲା ରନ୍ଧନ[13]
ବୃଷକେତନ[14] ॥୩୬॥

---

୧ । ଖ. ନ ଚଣ୍ଡି
ଘ. ବିପ୍ର କରେ ରୋଷ ଭରିଛୁକ ଚଣ୍ଡି
୨ । ଘ. ଭୋଜନ ଦେବା
୩ । ଗ. କରୁ
ଘ. ପୁତ୍ରକୁ ନାଶ କରି
୪ । ଖ, ସମତ ହେଲୁ
ଗ. ଯାହା ଦେଖିଲୁ
୫ । ଗ. ପାଣି
୬ । ଖ ଘ. ବାଢ଼ୀ
୭ । ଖ. ଯାଦ
ଘ. ଝୁର ଯେମା
୮ । ଗ. ଯେନ
୯ । ଗ. ବୃଷିକେତନ ନାମ ଧରି
ଯିବାର ଡ଼ାକ ଦିଅ
ଘ. ବୃଷିକେଣେ ନାମ ଧରି ବାହାରେ
ଡ଼ାକ ଦିଅ
୧୦ । ଘ. ଉଚ ସ୍ୱରେ
୧୧ । ଘ. କହନ୍ତୀ ବଚନ
୧୨ । ଖ- ଆଗରେ
୧୩ । ଖ ଗ ଘ. କରିଛୁ ମୁହିଁ ରନ୍ଧନ
୧୪ । ଖ ଗ. ବାସୀକେତନ
ଘ. ବୃଷୀକେତନ

ଚନ୍ଦ୍ର ବୋଲେ ନୃପବେ ଯାଅ    ତୋ ପୁତ୍ରଙ୍କୁ ଡାକ ଦିଅ
ଶୁଣି କରି ରାଣୀ କାହାର ହୋଇଲେ କେଶ ପକାଇଣ[1] ଲୁହ[2]
ଆକୁଳ ଦେହ ॥୩୭॥

ଆସରେ ବଂଶକେତନ[3]    ମୋହୋର କୁଳ ନନ୍ଦନ[4]
ତୋତେ ନ ଦେଖିଲେ ନଷ୍ଟଏ କୁମର ଗୁଡ଼ିବ ମୋର ଜୀବନ
ସତ୍ୟ ବଚନ ॥୩୮॥

ବେଢ଼ କ ଧରିବେ କାପେ[5]    ତୋହୋର ଶୋକ ସନ୍ତାପେ
ଏମନ୍ତ ସମୟେ ସେ ବଂଶକେତନ ମିଳଣ[6] ମାତା ସମୀପେ
ସେହି ସ୍ୱରୂପେ[7] ॥୩୯॥[8]

କରେ ଧରିଅଛି ଖଡ଼ି[9]    ଖଡ଼ି ଧୂଳି ଅଙ୍ଗେ ପଡ଼ି
ଚଟଶାଳରେ[10] ମୁଂ ପାଠ ପଢ଼ୁଥିଲି ଶୁଭିଲି ତୁମ୍ଭର ରଡ଼ି
ଅଇଲି ଉଡ଼ି[11] ॥୪୦॥

ଜନ୍ମ ଶୋକ କରୁ ମାତ    ହୋଇଲି କି ଉତପାତ
ସ୍ୱପ୍ନ ପ୍ରାଏ ମଣି ଆଚମ୍ବିତ[12] ରାଣୀ ପୁଣ ଜ୍ଞାନ ହୋଏ ଜାତ[13]
ଧଇଲେ ସୁତ[14] ॥୪୧॥

କାଖେ ନେଇ ବସାଇଲେ    ହୃଦେ ଭିଡ଼ି ଚୁମ୍ବ ଦେଲେ
ପିତାର ଛାମୁକୁ ନଅଲେ ପୁତ୍ରକୁ ଅନ୍ନ ମାଂସ କେଣେ ଗଲେ
କଣ୍ଠ ଦେଖିଲେ ॥୪୨॥

---

୧ । କ. କେଶେ ଥନ ଥନ ଲୁହ
ଘ. କେଶ ପକାଇ ଣୀ ଲୁହ
୨ । ଗ. ଲୁଅ
୩ । ଖ ଗ ଘ. ବଂଶକେତନ
୪ । ଘ. ମୋତ କୁଳ ନନ୍ଦନ
୫ । ଘ. ଦେହ ଧରିବେ କାପେ
୬ । ଖ. ଏମନ୍ତ ସେ ବଂଶକେତନ ମିଳିଲେ
ଘ. ସମାନ୍ତ ବଂଶକେତନ ମିଳିଲ
୭ । ଖ ଘ. ସେ ସେହି ରୂପେ
୮ । 'ଗ' ପୋଥିରେ ୩୯ ପଦଟି ନାହିଁ
୯ । ଖ. କରେ ଧରିଛନ୍ତି ଖଡ଼ି
୧୦ । ଖ ଗ ଘ- ଚଟପାଲୀରେ
୧୧ । ଖ ଗ ଘ. ସେ ପାଦେ ପଡ଼ି
୧୨ । ଖ. ଚମ୍ପି ଭ୍ରମ
ଗ. ସ୍ୱର୍ଗ ପ୍ରାଏ ମଣି ଆଚମ୍ବିତ
ଘ. ସ୍ୱପ୍ନ ପ୍ରାଏ ମଣି ଚମ୍ପି ଭ୍ରମ ରାଣୀ
୧୩ । ଖ. ଯାତ
୧୪ । ଖ. ମାତ
ଘ. ଅଇଲେ ସୁତ

ବପ୍ରକୁ ଶୁଣିଲେ କର୍ଣ୍ଣ ଦେଖିଲେ ପଦ୍ମଲୋଚନ
ଖଣ୍ଡଜା ପ୍ରଭୁଙ୍କୁ ଘେନିଣ ଚକ୍ଷୁଜଳ ଚୁମ୍ବନ କଲେ' ବଦନ
ହରଷ ମନ ।।୪୩।।

ବହୁତ ସ୍ତୁତି' ସେ କଲେ ଶ୍ରୀକୃଷ୍ଣ ହରଷ ହେଲେ
ବଇକୁଣ୍ଠ ବରୁ ଆନ ଏ ତୁମ୍ଭଙ୍କୁ ସ୍ଥାନ ହୋଇବ' ବୋଇଲେ
ସେ ବର ଦେଲେ ।।୪୪।।

ତୋ ପୁତ୍ର ବୃଷକେତନ ଆମ୍ଭର ଧର୍ମ ନନ୍ଦନ
ଯୁଗେ ଯୁଗେ ସେହୁଁ ଅମର ହୋଇଣ ଥିବ ଆମ୍ଭ ସନ୍ନିଧାନ
ନିଜ ଭୁବନ' ।।୪୫।।

ଗରୁଡଙ୍କୁ ସୁମରିଲେ ବଇନତେୟ' ଆଇଲେ
କର୍ଣ୍ଣଙ୍କୁ ଛଆର ଆପଣେ ଶ୍ରୀହରି ଖଗେଶ୍ୱରେ ବିଜେ କଲେ
ଦ୍ୱାରକା ଗଲେ ।।୪୬।।

ଦୀନ ବିଶ୍ୱମ୍ଭର ଦାସ କରଇଛି ତୁମ୍ଭଙ୍କୁ' ଆଶ
ଏହି ପ୍ରକାରେ ପ୍ରଭୁ ମୋର ସଙ୍କଟ ବେଗେ କରିବେ ବିନାଶ
ହେବ ହରଷ' ।।୪୭।।

---

୧ । ଖ ଗ ଘ. ପଚାରିଲେ ଜାଣି'
୨ । ଗ ଘ. ରୁଚି
୩ । ଖ. ଆନସ୍ଥାନକାହିଁ ତୁମ୍ଭଙ୍କୁ ବୋଲି
ଗ. ଆନସ୍ଥାନନକ ତୁମ୍ଭଙ୍କୁ
ଘ. ଆଦ ଥାନ ନକ ତୁମ୍ଭଙ୍କୁ ବୋଲି
୪ । ଘ. ଏହୁ
୫ । କ ଗ. ପୋଥିରେ ୪୫ ପଦଟି ନାହିଁ
୬ । ଘ. ବଇନେୟସୁ
୭ । ଖ ଗ ଘ. ତାହାଙ୍କୁ
୮ । ଖ. କୃପା ପାଧିବାର ଏ ମୋର ସଙ୍କଟ
ହେଲେ କରିବେ ବିନାଶ ସେ ପିତବାସ
ଗ. ଏହି ପ୍ରକାରେଣ ସଙ୍କଟ ମୋହର
କ୍ଷମାକର ପିତବାସ
ହେ ପିତବାସ । ହେବ ହରଷ ।।
ଘ. କୃପାପାରାବାର ଏ ମୋର ସଙ୍କଟ
ହେଲେ କରିବା ବିନାଶ ହେ ପିତବାସ

## ସପ୍ତଦଶ ଛାନ୍ଦ

ରାଗ—ଶଙ୍କରାଭରଣ[1]

ହେମନ୍ତ ଋତୁ ଆସିଣ[2] ପ୍ରବେଶ ହୋଇଲା,
ଧନକୁ ନନ୍ଦନ କରି ନଶି ବଢ଼ାଇଲା
ସୁଞ୍ଜଜନେ ହେ, ରେଚକ[3] ତପନ,
ନଶାକର ପ୍ରିୟ ଆଉ ନୋହିଲେକ[4] ଜନ ॥୧॥
କର୍ପୂର[5] ଚନ୍ଦନରୁ ଆଦର ଛଡ଼ାଇଲା
ତଇଳ ତାମ୍ବୁଳ ଆଣି ପ୍ରୀତି[6] ବଢ଼ାଇଲା
ସୁଞ୍ଜଜନେ ହେ, ଉତ୍ତର ଅଞ୍ଚଳ[7]
ଅସହଣ ପବନ ପେଷିଲା[8] ମହୀତଳ ॥୨॥
ସଲିଳ ଅନଳ ପ୍ରାଏ ଚେରେଚ ହୋଇଲା
ବହୁତ ପୂଜା[9] ଅନଳ ଲୋକରେ ପାଇଲା
ସୁଞ୍ଜଜନେ ହେ, କମଳ ଭୁଟିଲା[10]
ବଧୂଲାର ରଙ୍ଗ ଦିନୁଂ ଦିନୁଂ ସେ ଫିଟିଲା[11] ॥୩॥
କେଉଁ ଜନ ଅବଗାହ କରେ ହସ୍ତ ନୀର
ବହୁତ ବସନେ ସର୍ବେ କଲେକ ଆଦର
ସୁଞ୍ଜଜନେ ହେ, କର୍ମସ୍ଥାନ ଜନ
ଜାନୁକରୁ[12] ହୃତାଶନେ କଷ୍ଟେ ନଏ ଦିନ[13] ॥୪॥

---

୧ । ଘ. ରଘୁନାଥ ଚଉତିଶା ବିଳାପ ବୃନ୍ଦାବନ

ଘ. ଉତ୍ତର ଅଚଳ

୨ । ଘ ଘ. ହେମନ୍ତରୁ ଆସି କରି

ଗ. ହେମନ୍ତ ଋତୁ ଆସି

୩ । ଖ. ରେଚେକ

୪ । ଖ. ପ୍ରୀୟୁ ହୋଇଲେକ

ଗ ନୋହିଲର

୫ । ଙ. ସୁବାସ

୬ । ଖ. ତାମ୍ବୋଲେ ନେଇ ପ୍ରୀତ

ଘ. ତାମ୍ବୋଲେ ନେଇ ଅପ୍ରୀତ

ଙ. ରେଚକ ତପନ, ହୃନ୍ଦର କୋଶଳ

ଘ. ସୁର୍ଯ୍ୟଂଜନେ ହେ, ରେଚକ ତପନ

ନୀଶାକର ପ୍ରୀୟ ନୋହିଲେ କମଳ

[ଅଧିକ ପାଠ]

୭ । ଗ. ଉତରକୁ ଚଳ

ଘ ଶୀତ

୮ । ଙ. ବନ୍ଧିଲା

ଗ. ପେଷିଲା

ଘ. ବସ୍ତିଲା

୯ । ଖ. ବହୁତ ରାଗ

ଗ. ବହୁତ ପୂଜା

୧୦ । ଗ. ଫୁଟୀଲା

୧୧ । ଙ. ୩ ପଦର ପାଠ ନାହିଁ

ଝ. ଫୁଟିଲା

ଗ. ଫୁଟୀଲା

୨ । ଘ. ଜାନୁଗ୍ରୁ

୧୩ । ଙ ଗ. ପୋଥିରେ ୪ର୍ଥ ପାଦଟିର ପାଠ ନାହିଁ

କହିଁ ଜନ[1] ମନ୍ଦରରେ ଭେଦ ନରେଧିଲ
ନଶାରସ ଉଡ଼ାଇ ବେ ମହାସୁଖୀ ହେଲ[2]
ସୁଜ୍ଞଜନେ ହେ, ଆନନ୍ଦେ ଗମିଲେ[3]
ଗଣ୍ଡୁକୀ ନଦୀ ତୀରରେ ପ୍ରବେଶ ହୋଇଲେ ॥୫॥[4]
ତହିଁ ସ୍ନାନ ସାରଣ[5] ହୋଇଲେ[6] ତୋଷମନ
ତହିଁକ ନକଟେ ଦେଖିଲେ[7] ଗନ୍ଧର୍ବଙ୍କ[8] ବନ
ସୁଜ୍ଞଜନେ ହେ[9] ପର୍ଣ୍ଣଶାଳା କଲେ[10]
ସକଳ ଋଷିଙ୍କି ସେନ ନିଷ୍ଟନ୍ତେ ରହିଲେ ॥୬॥
ସେ ସମଏ ଦୁର୍ଯ୍ୟୋଧନ ଋଷି ପରବେଶ
ପୁରଞ୍ଜନ[11] ପଣ୍ଡା ନାମ ତାହାର ପ୍ରକାଶ
ସୁଜ୍ଞଜନେ ହେ, କାହିଁ ଅଛନ୍ତି ପାଣ୍ଡବ[12]
ଏ ରୂପରେ ସତ୍ୟ ଆମ୍ଭ କେହୁ[13] ଆଣିଦେବ[14] ॥୭॥

---

୧ । କ. ଜନମ
୨ । ଘ. ବେନ ସାଗର ଉଡ଼ାଇ ମହାସୁଖ ହେଲ
୩ । ଖ ଗ. ଧର୍ମର ନନ୍ଦନ, ଦ୍ରୋପଦର ଅଙ୍ଗେ ଅଙ୍ଗ ଦେଇ ହରେ ଦନ
ଘ. ଧର୍ମ ନନ୍ଦନ, ଦ୍ରୁପଦର ଅଙ୍ଗେ ଅଙ୍ଗ ଦେଇ ହରେ ଦନ
୪ । କ. ଏ ରୂପେ ଦେଖି ପାଣ୍ଡବେ ଦ୍ରୋପଦ-ନନ୍ଦନ
ଆବର ଅଛନ୍ତି ସଙ୍ଗେ ସର୍ବ ମହାମୁନି
ବହୁ ହରଷେ, ଆନନ୍ଦେ ଗମିଲେ
ଗଣ୍ଡୁକୀ ନଦୀ ତୀରରେ ପ୍ରବେଶ ହୋଇଲେ
୫ । ଖ. କରଣ ସେ
ଗ. କରଣ
ଘ. ତହୁଂ ସ୍ନାନ ସାରଣ
୬ । ଖ. ପାଠ ନାହିଁ
ଗ ଘ. ସେହୁ
୭ । ଖ ଘ. ରହିଲେ
୮ । ଗ. ଗନ୍ଧର୍ବେ
୯ । ଗ. ପାଠ ନାହିଁ
ଘ. ତହିଁ ପାଣ୍ଡବେ
୧୦ । ଗ. ପନସାଳ କଲେ
ଙ. ପୂର୍ଣ୍ଣସାଳା କଲେ
୧୧ । ଖ. ପୁରିଲଞ୍ଜନ
ଗ ଘ. ପୁରଞ୍ଜନ
୧୨ । ଗ. କାହିଁ ଅଛନ୍ତି ଦେଖିବ
ଘ. କାହିଁ ପାଣ୍ଡବେ ଅଛନ୍ତି ଦେଖିବ
୧୩ । ଖ ଗ. ମୋତେ
୧୪ । ଘ. ଏ ରୂପରେ ସତ୍ୟ ଆମ୍ଭ ଆଣି ମୋତେ ଦେବ

ଦୁର୍ଯ୍ୟୋଧନ ଶକୁନିଙ୍କ[୧] ଏମନ୍ତ କହିଲେ
ପୁରଞ୍ଜନ[୨] ନନ୍ଦନଙ୍କୁ ବନକୁ ପେଷିଲେ
ସୁଜନଜନେ ହେ, ବନେ ଖୋଜନ୍ତି ବ୍ରାହ୍ମଣ[୩]
ଯେଉଁଣ[୪] ମିଳନ୍ତି ଧର୍ମନନ୍ଦନ ସ୍ଥାଣେଣ ॥୮॥
ଦେଖିଣ ଧର୍ମସୁତ ନମସ୍କାର କଲେ
ବସିବାକୁ ମୃଗଛାଲ ଖଣ୍ଡେ ଆଣି ଦେଲେ
ସୁଜନଜନେ ହେ,[୫] ଏ ସମଏ[୬] ଭୀମାସୁର
ଗରୁଡ଼େ ପ୍ରବେଶ ହେଲେ ଗଣ୍ଡୁକୀର ତୀରଁ[୭] ॥୯॥
ଦେଖିଲେ ଭୀମ ଗଣ୍ଡୁକୀର ତୀରେ ଖେଳୁଛନ୍ତି[୮]
ଶାଳଗ୍ରାମ ଶିଳା ଆଣି[୯] ବାଟି ଗଡ଼ାବନ୍ତି
ସୁଜନଜନେ ହେ[୧୦], ହରି[୧୧] ଆଲିଙ୍ଗନ କଲେ
ପ୍ରେମେ ଜୟ ହେ ଭୀମସେନ ବୋଲି ଘୋଷିଲେ ॥୧୦॥

---

୧ । ଗ, ତାହାଙ୍କୁ ସେ
ଘ, ସଜ୍ଜନ
ଘ, ଏମନ୍ତ ସେ ତାହାଙ୍କୁ
୨ । ଘ, ସୁଲୋଚନ
୩ । ଖ ଘ, ବନେ ଲୋଡ଼ଣ ଅଛନ୍ତି ବ୍ରାହ୍ମଣ
୪ । ଖ ଗ ଘ, ଯୋଡ଼ାଇ
୫ । 'ଗ' ପୋଥିରେ ପାଠ ନାହିଁ
୬ । କ, ଏହି ସମଏ ସାଳେ
ଗ, ଏହି ସମଏ ଆସି
ଘ, ଏହି ସମଏ ବାଯଏ
୭ । ଘ, ଗଣ୍ଡକ ତୀରର
୮ । ଗ, ତଟରେ ଖେଳନ୍ତି
ଘ, ତଟରେ ଅଛନ୍ତି
୯ । ଘ, ଯେତେ
୧୦ । ଖ ଗ ଘ, କୃଷ୍ଣ ତାହାଙ୍କୁ
୧୧ । ଗ, ହରି ତାହାଙ୍କୁ
'ଘ' ପୋଥିରେ ପାଠ ନାହିଁ

ଭୀମ ବୋଲେ ଶୁଣ ଦେବ ଏ ବର୍ତ୍ତୁଳ[1] ପଥର
ଠୁକିଲେ ଏଥିରୁ ସୁନା[2] ହୁଅଇ ବାହାର
କୃଷ୍ଣ କହନ୍ତି, ଏ[3] ବଜ୍ରକୀଟ[4] ପୋକ
ସହସ୍ରେ ବରଷେ ଏ କାଟଇ[5] ଶିଳା ଏକ ॥୧୧॥

ତହିଁରେ ମରନ୍ତେ ସେହୁ[6] ହୁଅଇ ସୁବର୍ଣ୍ଣ
ଦଶ ଅବତାର ଶିଳା ବସ୍ତୁର ସମାନ
କୃଷ୍ଣ କହନ୍ତି, ଜଳେ ପକାଇ ବହନ[7]
କଳିଯୁଗେ ଏହାଙ୍କୁ ପୂଜିବେ ନେଇ ଜନ[8] ॥୧୨॥

ଶାଳଗ୍ରାମ ଶିଳା ଆଣି ପାଣିରେ[9] ପକାଇ
ଯୁଧିଷ୍ଠିରଙ୍କି ଶ୍ରୀକୃଷ୍ଣ ଦର୍ଶନ[10] କଲେ ଯାଇ
ଧର୍ମସୁତ ସେ[11] ଆନନ୍ଦ ହୋଇଲେ
ଆଲିଙ୍ଗନ କରି ଆଣି ପାଶେ ବସାଇଲେ ॥୧୩॥

ଦିବସ ଅଷ୍ଟମ ଭାଗ ହୋଇଲାକ ବେଳ
ସକଳ ଋଷିଙ୍କି ଆଣି[13] ଦେଲେ ଫଳମୂଳ
ପୁରଞ୍ଜନଙ୍କୁ[14], ଏ ବିଧିରେ[15] ଦେଲେ
ଯୁଧିଷ୍ଠିରଙ୍କି ଋଷି ସେହୁ ବ୍ରାହ୍ମଣ ବୋଇଲେ[16] ॥୧୪॥

---

୧ । ଖ. ବର୍ତ୍ତୁଳ
ଗ. ବ୍ରତୁଳ
ଘ. ଭୀମ ବୋଇଲେ
ଶ୍ରୀଦେବ ବର୍ତ୍ତୁଳ ପଥର
୨ । ଗ. ଏଥୁଂ ସୁବର୍ଣ୍ଣ
ଘ. ସୁନା ଏଥିରୁଂ
୩ । ଖ. ପାଠ ନାହିଁ
୪ । ଗ. ବଜ୍ରକଟ
ଘ. ବର୍ଜକିଟ
୫ । ଘ. ସେ କାଟଇ
୬ । ଘ. ତହିଁ ସେ କିଟ ମରନ୍ତେ
୭ । ଗ. ଜଳେ ପକାଇ ତଥି ହେ ବହନ
ଘ. ଜଳେ ଯକାଅ ଏହାଙ୍କୁ ବହନ
୮ । ଖ. ବିପ୍ରଯନ
ଗ. ସର୍ବଜନ
ଘ. ପୁଜିବେ ବିପ୍ରଯନ
୯ । ଗ. ସେହୁ ପାଣିରେ
ଘ. ନେଇଂ ଜଳରେ
୧୦ । ଖ ଗ. ଦ୍ରସନ
ଘ. ଯୁଧେଷ୍ଠୀରଙ୍କି ଶ୍ରୀକୃଷ୍ଣ ଦ୍ରସନ
୧୧ । ଖ. ଦେଖି ଯୁଧିଷ୍ଠି
ଗ. ଦେଖି ଧର୍ମସୁତ
ଘ. ଦେଖି ଯୁଧେଷ୍ଠୀ
୧୨ । ଗ. ତାଙ୍କୁ
ଘ. କରି
୧୩ । ଖ. ନେଇ
ଘ. ପାଠ ନାହିଁ
୧୪ । ଖ. ପୁରଞ୍ଜନକୁ
ଗ ପୁଲୋଚନକୁ
ଘ. ପୁଲେଚନକୁ
୧୫ । ଗ ଘ. ଏହି ବିଧି
୧୬ । ଗ. ଋଷିଣ ସେ ବ୍ରାହ୍ମଣ କହିଲେ

ସେ ସମୟରେ ଆମ୍ଭଙ୍କୁ ଆମ୍ବ ଭୁଞ୍ଜାଇବ
ନୋହିଲେ ତୁମ୍ଭର ସତ୍ୟ ଭଗ୍ନ ନଷ୍ଟ ହେବ
ଆମ୍ଭେ କହିଲୁଂ, ଶୁଣ ଆହେ ଦେବ
ସତ୍ୟ ଭଗ୍ନ [1]ନୋହିବ ଆମ୍ଭଙ୍କୁ ଆମ୍ବ ଦେବ ॥୧୫॥
ଆମ୍ର ଫଳ ଆମ୍ଭେ ହେ କରୁ ସେ ଭୋଜନ
ଆମ୍ଭର ଏ କସ ହେବ ଫଳମୂଳ ମାନ
ଶୁଣି ଯୁଧିଷ୍ଠି; ପ୍ରକଟ ହୋଇଲେ
ଏ ବୃକ୍ଷରେ ଆମ୍ବ କାହିଁ ମିଳିବ ବୋଇଲେ ॥୧୬॥
ଶ୍ରୀକୃଷ୍ଣ ବୋଇଲେ ସତ୍ୟ କହିଲେ[1] ସକଳ
ସେଠାରେ[2] ବୃକ୍ଷ ହୋଇ ଫଳିବଟି ଫଳ
ଭସ୍ମ ହୋଇବ, ଯେବେ ମିଥ୍ୟା ଶୁଣି
ଆମ୍ବମଞ୍ଜି[3] କୃଷ୍ଣ କରେ ବ୍ୟାସ ଦେଲେ ଆଣି ॥୧୭॥
ଆପଣେ ଶ୍ରୀକୃଷ୍ଣ କରେ ଭୂମିରେ ପୋତିଲେ
ସେ ଆମ୍ବ ମଞ୍ଜିକ ବୃକ୍ଷ[4] ସତ୍ୟ ଉଗ୍ରିଲେ[4]
ଏହି[5] କାରଣେ, ମୁଁ[6] ହେଲି[7] ଅବତାର[7]
ପଞ୍ଚ ପାଣ୍ଡବେ ଯେ[8] ଆମ୍ବା ଅଟନ୍ତି ମୋହୋର[9] ॥୧୮॥
ପାଣ୍ଡବଙ୍କ ଅଭିମାନ ସହି ନ ପାରଇ
କଳିଗମେ ଅଛିବ[10] ମୁଁ ପାଣ୍ଡବଙ୍କ ପାଇଁ
ପଞ୍ଚ ପାଣ୍ଡବେ, ମୋହୋର ପଞ୍ଚପ୍ରାଣ[11]
ଏ ଯେବେ ସତ୍ୟ ବୃକ୍ଷ ଅଟଇ[12] ତତକ୍ଷଣ ॥୧୯॥

---

୧ । ଗ. 'ସତ୍ୟ' ପାଠଟି ନାହିଁ
୨ । ଖ ଗ ଘ. ହେଠାରେ
୩ । ଖ. ଆମ୍ବ
୪ । ଖ ଘ. ବଢନ ହୋଇଲେ
୫ । ଖ. ଏ କାରଣେ
୬ । ଗ. ମୋହି
୭ । ଘ. ମହି ନ ହୋଇ ହେଲି ଅବତାର
୮ । ଖ ଗ. ପାଣ୍ଡବେ ବିଶ୍ୱାସ
୯ । ଘ. ପାଣ୍ଡବେ ବିଶ୍ୱାସ ଅଟନ୍ତି ମୋହୋର
୧୦ । ଖ. ଅଭିମାନ
୧୧ । ଖ. ପଞ୍ଚ ପାଣ୍ଡବେ ମୋର ପଞ୍ଚପ୍ରାଣ
ଘ. ପଞ୍ଚ ପାଣ୍ଡବେ ମୋହୋର ପଞ୍ଚପ୍ରାଣ
୧୨ । ଖ ଗ. ଅଙ୍କୁର ହୁଅ
ଘ. ଏବେ ସତ୍ୟ ଅଙ୍କୁର ହୁଅ

ଆମ୍ବ[1] ମଞ୍ଜିରୁ ଅଙ୍କୁର ହୋଇଲା ବାହାର[2]
ଅତ୍ୟନ୍ତ କୋମଳ ଦଣେ[3] ଲୋହିତ ଆକାର
ଦେଖି ଯୁଧିଷ୍ଠି[4] କହନ୍ତ ଉତ୍ତର[5]
ଶ୍ରୀକୃଷ୍ଣ ବନ୍ଧୁ ଆମ୍ବର ନାହିଁ ପ୍ରତିକାର ॥୨୦॥
ଶରୀରେ ମୋହୋର ପ୍ରାଣ ଥିବା ପରିଯନ୍ତେ
ମିଥ୍ୟା ବଚନ ମୋର[6] ନ ଆସେ କଦାଚିତେ[7]
ମୋ ଦେହେ[8] କ୍ରୋଧ ହିଂସା ନାହିଁ
ଶତ୍ରୁ ମିତ୍ର ଏକଇ ମୁଂ ଆନ[9] ନ ଜାଣଇଁ ॥୨୧॥
ସତ୍ୟ ସତ୍ୟ ଏ ବଚନ ତୁଅ[10] ବର୍ତ୍ତମାନ
ଆମ୍ବ ଅଙ୍କୁର ପଲ୍ଲବ ହେବ ମାଳବର୍ଣ୍ଣ
ଭୀମସେନ, ସେ[11] ପୁଣ ସତ୍ୟ କହ
ଯୁଧିଷ୍ଠିଙ୍କ ଅଭିମାନ ସହି ନ ପାରଇ[13] ॥୨୨॥
ଭୋଜନ ଶୟନ[14] ରଣ[15] ଆଦ ମଲ୍ଲଯୁଦ୍ଧ
ଏଥି ଅଭୂତ[16] ସତ୍ୟ ଏ ବଚନ[17]
ଶତ୍ରୁ ଶରଣ, ପଶିଲେ[18] ମାରଇ
କଣ୍ଟକ ଉପ୍ରୋଧ ମୁଂ ସେ ରଣେ[19] ନ କରଇ ॥୨୩॥

---

୧ । ଖ. ଆମ୍ବ
୨ । ଘ. ଅଙ୍କୁର ହେଲା ବାହାର
୩ । ଅତ୍ୟନ୍ତ କମଳ ଦଣେ
୪ । ଗ. ଦେଖିଣ ଯୁଧିଷ୍ଠି ଯେ
ଘ. ଦେଖି କହନ୍ତି
୫ । ଘ. ଯୁଧିଷ୍ଠୀ ଉତର
୬ । ଖ ଘ. ମୋତେ
ଗ. ପାଠ ନାହିଁ
୭ । ଗ. କଦାଚିତେ
ଘ. ନୁଆରେ କଦାଚିତେ
୮ । ଖ ଘ. ଅଙ୍ଗରେ
୯ । ଖ ଘ. ମାୟା
୧୦ । ଘ. ବଚନ ଏ ତୁଅ
୧୧ । ଖ ଗ. ହେଲେ
ଘ. ହେଲା
୧୨ । ଘ. ପୁଣ
୧୩ । ଘ. ଅଭିମାନ ନ ପାରଇ ସହୁ
୧୪ । ଗ. ଆଦ (ଅଧିକ]
୧୫ । ଖ. ରସ
୧୬ । ଖ. ଅଖି ପୂତ
୧୭ । ଗ ଦେଖିରେ ଅତ ଅଦିପ୍ତି
ଘ. ଏଥିରେ ମୁଂ ଅତୀ ପୁଣି ଏ ଶତ୍ୟ ବଚନ
୧୮ । ଘ. ବୋଇଲେ
୧୯ । ଗ. କଣ୍ଟକେ ଓପ୍ରୋଧ ମୁଂ ସେ ରଣେ
ଗ. ଓପ୍ରୋଧ ରଣେ ମୁଖେ

ଦୁର୍ଯ୍ୟୋଧନ ଆଦି କରି ଶତେକ ସୋଦର
ତାହାଙ୍କୁ ରଣେ ମାରିବି ସତ୍ୟ ଏ ମୋହୋର
ଦୁଃଶାସନର[୧] ଭୁଜ ଉପାଡ଼ିବି
ତାର ରୁଧିରେ ଦ୍ରୌପଦୀ[୨] ସ୍ନାନ କରାଇବି ॥୨୩॥

ଏ ମୋହୋର ସତ୍ୟ ସତ୍ୟ ଶୁଣ ହେ ରସାଳ
ଶୁଣି ଭୀମ ବଚନ ହୋଇଲ ବଶାଳ[୩]
ଦେଖି ଅର୍ଜୁନ ସତ୍ୟ ଉଚ୍ଚରିଲେ
ଶ୍ରୀକୃଷ୍ଣ ଚରଣ ଚିନ୍ତି ବୋଲି ମୁଂ[୪] ବୋଇଲେ ॥୨୪॥

ଶରଣ ପଶିଲେ ଶତ୍ରୁ ନ ମାରଇ ରଣେ[୫]
ମୋହୋର ପ୍ରକୃତ ଅଟେ ଶରଣ ରକ୍ଷଣେ[୬]
ଯେ ଅବା ଅଭ୍ରବ ହୋଇବ ମୋହୋର[୭]
ପିତା ହେଲେ ତାହାକୁ ମାରିବି ସତ୍ୟ ମୋର[୮] ॥୨୫॥

ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ[୯] ଯେ ଅବା କହଇ
ପଶୁପତି ଅସ୍ତ୍ର ଶୋଣକୁ ଧିକ୍କାରଇ
ତାଙ୍କୁ ମାରିବି[୧୦] ହୋଇଲେ ସୋଦର
ମାରି ନ ପାରିଲେ ଦାହ ହୋଇବି କଳେବର[୧୧] ॥୨୬॥

---

୧ । ଗ. ଦୁଶାସନର
୨ । ଗ. ସେ ... ଦ୍ରୋପଦୀ
ଘ. ତାହାର ରୁଧିରେ ଦ୍ରୁପଦୀ ସ୍ନାନ କରାଇବି
୩ । ଖ. ଦୃପାଳ
ଘ. ହୋଇଲେ ଦୃପାଳ
୪ । ଙ. ବୋଲଣ
୫ । ଗ. ମୁଂ ... ମାରେ
ଘ. ରଣ
୬ । ଗ. ରକ୍ଷଣ
ଘ. ମୋର ପ୍ରକୃତ ଅଟଇ ସରଣ ରକ୍ଷଣ
୭ । ଖ. ଜେବା ଅଭ୍ରବ ମୋହରେ
ଘ. ଯେବା ଅଭ୍ରବ ହୋଇବ ମୋହୋର
୮ । ଖ. ମୁଁ ମାରଇ ସମରେ
ଗ. ସମରେ ମୁଂ ମାରଇ ସତ୍ୟ ସ୍ଥେ
ଘ. ମୁଂ ମାରଇ ଶମର
୯ । ଖ ଘ. ଯୁଧିଷ୍ଠି ହେଜା
୧୦ । ଖ. ତାହାକୁ ମୁଂ ମାରି
୧୧ । ଘ. ହୋଇବି କଳେବର

ଏ ମୋହୋର ସତ୍ୟ          ସତ୍ୟ ବଉଳ[୧] ହେ ଚ୍ୟୁତ
ବଉଳ ମଣ୍ଡିତ ହେଲ          ଦେଖନ୍ତୁ ଅଚ୍ୟୁତ[୨]
ଜୟସେନଙ୍କ ହୋଇଲେ କହ ସତ୍ୟ[୩]
ମିଥ୍ୟା କହିଲେଟି ଭସ୍ମ ହୋଇବଟି ଚ୍ୟୁତ ॥୨୮॥

ପଞ୍ଚାଳି ବୋଲନ୍ତି ସତ୍ୟ          ମୋର ଏ ବଚନ[୪]
ପଞ୍ଚପତି ମଧ୍ୟରେ          ଅର୍ଜ୍ଜୁନ ପ୍ରିୟତମ
ଦୁଃଶାସନ ସେ[୫] ମୋର କେଶ ଧରି
ସେହିଦିନୁ କେଶ ଅଛି ମୁକୁଳିତ କରି ॥୨୯॥

ଦୁଃଶାସନ ରୁଧିରେ[୬]          ବାନ୍ଧିବି ମୋର ବାଳ
ଏ ମୋହୋର ସତ୍ୟ          ସତ୍ୟ ଶୁଣ ଆମ୍ବଫଳ[୭]
ଚ୍ୟୁତ ବଉଳ[୮], ଆମ୍ବକଷି ହୋଏ[୯]
ନକୁଳ ସତ୍ୟ କହନ୍ତି[୧୦] ଏମନ୍ତ ସମଏ ॥୩୦॥

କର୍ପୂର ଚନ୍ଦନ ମୋର          ବହୁତ ଆଦର
ଅପୂର୍ବ ପଲଙ୍କ ଥିବ[୧୧]          ଚନ୍ଦ୍ରଶାଳା ପୁର
ସତ୍ୟ ସତ୍ୟ ଏ, ଆନ ନାହିଁ ମନ[୧୨]
ଏହା ଶୁଣି ଆମ୍ବଫଳ[୧୩] ପାକଳ ବଦନ ॥୩୧॥

ହେଖିକରି ସହଦେବ          ସତ୍ୟବାଣୀ କହି
ସକଳ ଜାଣଇଁ ମୁହିଁ          ଜାଣି ନ କହଇ[୧୪]
ମୋତେ ପୁଚ୍ଛିଲେ, ନ ପଡ଼େ ପ୍ରମାଦ
ମୋତେ ଷସ୍ୱରିଲେ ଲଭେ ସକଳ ସମ୍ପଦ ॥୩୨॥

---

୧ । ଖ ଗ. ବକୁଳ
୨ । ଗ. ଅଚ୍ୟୁତ
ଘ. ବକୁଳ ॰ ॰ ଅଚ୍ୟୁତ
୩ । ଘ. କହ ସତ
ଘ. ଜଙ୍ଗସେନ କଂ
୪ । ଘ. ବୋଇଲେ ମୋର ସତ୍ୟ ଏ ବଚନ
୫ । ଘ. ଦୁଶାସନ ସେ
୬ । ଖ. ରେଧିରେ
୭ । ଖ. ସୁଣି ଅମ୍ବ ଫଳ
୮ । ଗ ଘ. ବକୁଳ
୯ । ଖ. ଚ୍ୟୁତ ବକୁଳ ଆମ୍ବ, କଷି
ଘ. ଆମ୍ବ କଷି
୧୦ । ଘ; କହନ୍ତି ସତ୍ୟ
୧୧ । ଓଂ ପଲଙ୍କେ ଥିବ
୧୨ । ଘ. ଆନେ ନାହିଁ
୧୩ । ଘ. ଅମ୍ବ ଫଳ
୧୪ । ଘ. ଜାଣଇ ଜାଣି ନ କହଇ ମୁହିଂ

ସତ୍ୟ ଅସତ୍ୟ କଥାଣ୍ଟି ପୁଚ୍ଛିଲେ[୧] କହଇ
ପଚ୍ଛରଲ କଥା ମୁଣ୍ଟି[୨] ଗୋପ୍ୟ ନ କରଇ
ସତ୍ୟ ସତ୍ୟ ଯେ, ଏ ମୋହର ବାଣୀ[୩]
ଆମ୍ବ[୪] ଏବେ ପାଚୁ ବୋଲ ବୋଲେ[୫] ମନ୍ତ୍ରୀମଣି ॥୩୩॥
ସପତ ଗୋଟି ଆମ୍ବ ସେ ବୃକ୍ଷରେ[୬] ପାଚଲ
ସୁବର୍ଣ୍ଣ କାନ୍ତି ଧରଣ ବାସ[୭] ଚହଟିଲ
ବୃକ୍ଷୁ ଉଠିଣ, ସେ ଆମ୍ବ[୮] ତୋଳଲେ
ବ୍ରହ୍ମାଙ୍କ ନମନ୍ତେ ଆମ୍ବ[୯] ନାରଦଙ୍କୁ ଦେଲେ[୧୦] ॥୩୪॥
ଈଶ୍ବରଙ୍କୁ ଆମ୍ବ ଦେଲେ ପବନ ହସ୍ତରେ
ଏକ ଆମ୍ବ ପାଇଣ ସନ୍ତୋଷ[୧୧] ଚପିବରେ
ବେଦ ବ୍ୟାସଙ୍କୁ, ଦେଲେ ଆମ୍ବ ଗୋଟି[୧୨]
ଏକ ଆମ୍ବ ନେଇ ଦେଲେ ଆପଣେ ସୁଧିଷ୍ଠି[୧୩] ॥୩୫॥
ଏକ ଆମ୍ବ[୧୪] ଗୋପୀନାଥ ଆପଣେ ଭଖିଲେ
ପୁରଞ୍ଜନ[୧୫] ପଣ୍ଡାଙ୍କୁ ଏକଇ ଆମ୍ବ[୧୬] ଦେଲେ
ଯେବ ବ୍ରାହ୍ମଣ, କରଇ କଲ୍ୟାଣ
ମେଲାଣି ମାଗିଣ[୧୭] ଚଳ୍ଲ ଗଲ ଉଚକ୍ଷଣ ॥୩୬॥

---

୧ । ଗ. ବୁଝିଲେ
ଘ. କଥା ପୁଚ୍ଛିଲେ
୨ । ଘ. କଥାରେ ମୁଂ
୩ । ଘ. ପତ୍ୟ ଏ ମୋହୋର ଏ ବାଣି
୪ । ଖ. ଆମ୍ବ
୫ । ଖ. ପୁଚୁ କହେ
ଖ ଘ. କହେ
୬ । ଗ. ସେ ଆମ୍ବ ଡହିଁ
ଉ. ତହିଁରେ
ଘ. ସେ ଆମ୍ବ ତଞ୍ଚରେ
୭ । ଘ. ସୁବର୍ଣ୍ଣର କାନ୍ତୀ ଧର ବସି
୮ । ଘ. ଆମ୍ବ
୯ । ଖ ଉ. ଅମ୍ବେ
୧୦ । ଘ. ବ୍ରହ୍ମାଙ୍କ ନମିତେ ନାରଦଙ୍କୁ ଆମ୍ବେ
୧୧ । ଖ ଗ ଘ. ଏକଇ ଅମ୍ବେ ପାଇଲେ
ସଙ୍କ
୧୨ । ଖ ଗ ଘ: ଏକ ଗୋଟୀ
୧୩ । ଖ. ନୃପତ୍ତି
ଘ. ଦେଲେ ନେଇ ନୃପତ୍ତି
୧୪ । ଖ. ଅମ୍ବ
ଗ. ଆମ୍ବେ
ଘ. ଆମ୍ବେ ଗୋପୀନାଥେ
୧୫ । ଖ. ସୁଲୋଞ୍ଜନ
ଉ. ସୁଲୋଚନ
ଘ. ସୁନେତନ
୧୬ । ଖ ଆମ୍ବେ
ଉ. ଆମ୍ବେ
ଘ. ନେଇଣ ଆମ୍ବେ
୧୭ । ଘ. ହୋଇଣ

ଶ୍ରୀକୃଷ୍ଣ ବୋଇଲେ[୧] ସହଦେବ ମନ୍ତ୍ରୀବର
କାହୁଁ ଅଦଭୁତେ ଏ ଅଇଲ ବିପ୍ରବର
କେଉଁ ଦେଶରେ, ଅଟେ ତାର ବାସ
କେବଣ ଅର୍ଥରେ ଆସି ବନରେ ପ୍ରବେଶ ॥୩୭॥
ଆମ୍ଭ ସେନ ଚଳଇ ଏ ନ କର ଆହାର
ସହଦେବ ଜଣାନ୍ତି ଶୁଣିମା ପୀତାମ୍ବର
ଦୁର୍ଯ୍ୟୋଧନ ସେ, ଏହାଙ୍କୁ ପେଷିଲେ[୨]
ପୁରଞ୍ଜନ ବ୍ରାହ୍ମଣ ସେ[୩] ଏଥକୁ ଅଇଲେ ॥୩୮॥
ସତ୍ୟ ଆମ୍ଭ ନେଇ ଦେବେ ରାଜାର[୪] ହସ୍ତରେ
ସଙ୍କେତ ପାଇଣ ରାଜା[୫] ପେଷିବନ୍ତି ସ୍ୱର
ତହିଁ ଗୃପତରେ, ସେ କଥା ଜାଣିନ[୬]
ଲେଉଛି[୭] ବାର ବରଷ ବନେ ବୁଲାଇବ ॥୩୯॥
ତାହାଠାରୁ ଆମ୍ଭ ହରି ଆଣିମା[୮] ଶ୍ରୀବତ୍ସ[୯]
ଗଣ୍ଡକୀ ନଦୀର ତୀରେ[୧୦] ବ୍ରାହ୍ମଣ ରହିଛି
ଶୁଣି ଶ୍ରୀହରି, ମେଲାଣି ହୋଇଲେ
ବିପ୍ର ରୂପେ ପୁରଞ୍ଜନ ହସ୍ତରେ[୧୧] ମିଳିଲେ ॥୪୦॥

---

୧ । ଘ. ପୁଚ୍ଛିଲେ
୨ । ଘ. ଏହାଙ୍କୁ ପେଷୀଲ
୩ । ଖ. ପୁରଞ୍ଜନ ନନ୍ଦନ ସେ
ଗ. ପୁରଞ୍ଜନ ବ୍ରାହ୍ମଣ ସେ
ଘ. ପୁରତନ ନନ୍ଦନ ସେ ଅଇଲ
୪ । ଘ. ଏବେ ଦେବତା
୫ । ଗ. ସ୍ୱର
ଘ. ପାଇ ସ୍ୱଜନ
୬ । ଗ. ତହିଁ ଗୃପତ ବାରତା ଜାଣିବ
ଘ. ତହିଁ ଗୁପତ ହୋଇବୁଁ ଜାଣିବ
୭ । ଘ. ନେଉଛି
୮ । ଖ. ଅମ୍ଭ ହରି ନେବାକ
ଘ. ଆଣିମା
୯ । ଗ. ଶ୍ରୀବତ୍ସ
୧୦ । ଗ. ନଦୀ ତଟରେ
ଘ. ତୀରରେ ଏବେ
୧୧ । ଖ. ପୁରଞ୍ଜନ ପାଶରେ
ଗ. ପୁରଞ୍ଜନ ହସ୍ତରେ
ଘ. ପୁରଞ୍ଜନ ପାଶରେ

ସତ୍ୟ କର୍ମ[1] ସାଶବାକୁ ସେନ୍ତ ପୁରଞ୍ଜନ[2]
ଭୂମିରେ ରଖନ୍ତେ[3] ଫେଡ଼ି ଆପଣା ବସନ
ଆମ୍ବ ଗୋଟି ସେ, ପଡ଼ିଗଲା ତଳେ[4]
କପଟ ବ୍ରାହ୍ମଣ ଦେଖି ସେ ଆମ୍ବ[5] ଧଇଲେ ॥୪୧॥

ବଡ଼ ଆଶ୍ଚର୍ଯ୍ୟ[6] ପଣ୍ଡା ସ୍ୱେ ଆମ୍ବ[7] କାହୁଁ ପାଇ
ଏ ଋତୁରେ ଆମ୍ବ[8] ବୋଲି[9] ଦେଖା ଶୁଣା ନାହିଁ
ବସ୍ତ୍ର କହଇ ପାଣ୍ଡବେ ଯେ ଦେଲେ[10]
ସତ୍ୟ କରଣ ଏ ଆମ୍ବ ଫଳାଇଣ ଥିଲେ[11] ॥୪୨॥

ଶ୍ରୀକୃଷ୍ଣ ବୋଇଲେ[12] ମାୟା ଅଟଇ ଏ ଫଳ
ଆମ୍ବ କଥା ଶୁଣାନାହିଁ[13] ଦେଖିଲୁ ଏ ଡୋଳ[14]
ମଣ୍ଡୀଧରେ ହେ, କମଳ ଫୁଟିଲା[15]
ପଶ୍ଚିମ ଦିଗରେ ରବି ଉଦୟ ହୋଇଲା[16] ॥୪୩॥

ସୋଲ ଭେଳା ସେ ଜଳରେ[17] ରହିଲା ବୁଡ଼ିଣ
ଜନେ ପାରି ହେଉଛନ୍ତି ପାଷାଣ[18] ଚଢ଼ିଣ
ମିଥ୍ୟା ଶୁଣିଣ, ଆମ୍ବ[19] ଭସ୍ମ ହେଲା
ମୋର ଆମ୍ବ[20] କି କଲ ହେ ବସ୍ତ୍ର ପଚାରିଲା ॥୪୪॥

---

୧ । କ ଘ. ନୀତ୍ୟନ୍ଦୁ
୨ । ଖ. ପୁଲୋଛନ
ଗ. ପୁଲୋଚନ
ଘ. ସେନ୍ତୁ ପୁଲୋଚନ
୩ । ଖ. ରଖନ୍ତି
୪ । ଖ ଗ ଘ. ଆମ୍ବ ଗୋଟି ସେ ତଳରେ ପଡ଼ିଲେ
୫ । ଘ. ଆମ୍ବ
୬ । ଖ. ଆଶ୍ଚର୍ଯ୍ୟ
୭ । ଘ. ଆମ୍ବ
୮ । ଗ. ଆମ୍ବ
୯ । ଗ. ଭାଇ
୧୦ । ଖ ଗ ଘ. ପାଣ୍ଡବେ ଦଅନ୍ତି
୧୧ । ଖ. ସତ୍ୟ କହଣ ସେ ଆମ୍ବ ଫଳାଇ ଅଛନ୍ତି
ଘ. ସତ୍ୟ କହଣ ଏ ଆମ୍ବ ଫଳାଇ ଅଛନ୍ତି
୧୨ । ଗ. କହିଲେ
୧୩ । ଗ. ଶୁଣ ସ୍ୱେବେ
୧୪ । ଖ ଘ. ଆମ୍ବ କଥା ଶୁଣ ଯାହା ଦେଖିଅଛୁ ଡୋଳ
୧୫ । ଘ. ମସ୍ଥାଧରରେ କମଳ ଫୁଟିଲା
୧୬ । ଘ. ଚକ୍ଷୁଥିଲା ଲୋକଙ୍କୁ ସେ ନୋହିଲା ଗୋଚର
ଅନ୍ଧମାନେ ପଢ଼ୁଛନ୍ତି ପୁସ୍ତକ ଅକ୍ଷର
ବଧିରମାନେ ଶୁଣୁଛନ୍ତି କଥି (ଅଧିକ ପାଠ)
୧୭ । ଖଙ୍କର ବଢ଼ାଇଣ ଧଣନେଲା ସସି
ଘ. ଜଳରେ ରହି
୧୮ । ଖ. ଯାନମାନେ ଆତଯାତ ପଥର
ଗ. ଜନମାନେ ପାରିହୁନ୍ତି ପାଷାଣ
ଘ. ଜନମାନେ ପାରିହୁନ୍ତି ପଥର
୧୯ । ଘ ଆମ୍ବ
୨୦ । ଘ ଆମ୍ବ

ଶ୍ରୀକୃଷ୍ଣ ବୋଲନ୍ତି[1] ମାସ୍ତା          କଥା ଦେଖ[2] ମିଛ
ଏହୁ ରୂପେ ଅଣ୍ଡି ତୁମ୍ଭେ          ଦେଖୁଛ[3] ପ୍ରତ୍ୟକ୍ଷ
ଏତେ କହିଣ, ଗଲେ ଦାମୋଦର[4]
ଗରୁଡ଼ ପେଣ[5] ପ୍ରବେଶ ଦ୍ୱାରକା ପୁର ॥୮୫॥
ବିପ୍ର କେତେ ଜନେ          ହସ୍ତିନାରେ ଯାଇ ଦେଲେ[6]
ସକଳ ଚରିତ ସବୁ[7]          ବୃତ୍ତାନ୍ତ କହିଲେ
ପଞ୍ଚ ପାଣ୍ଡବେ, ଗଣ୍ଠୁକା ତୀରରେ
ଅଠାଶୀ ସହସ୍ର ଋଷି ଅଛନ୍ତି ସଙ୍ଗରେ ॥୮୬॥
ପଞ୍ଚ ପାଣ୍ଡବେ ଦ୍ରୌପଦୀ[8]          କୃଷ୍ଣ[9] ଆଦ୍ୟ କରି
ଆମ୍ର ମଞ୍ଜିକ ବୃନ୍ଦ ଣ[10]          ସତ୍ୟ ସେ ଉଚାରି
କଥା କରିସେ, ଅଛନ୍ତି ମନରେ
କୁମ୍ଭ ବଂଶ ବିନାଶ ସେ କରିବେ ସମରେ ॥୮୭॥
ସପତ ଗୋଷ୍ଠି ସେ ଆମ          ତତ୍କଂ ଉପୁଜିଲା
ଋଷି ଦେବତାଙ୍କୁ କୃଷ୍ଣ          ବାର୍ଣ୍ଣି ତାହା ଦେଲେ[11]
ଏକ ଆମ୍ରେକ, ଦେଲେ ମୋତେ ଆଣି
ଆମ୍ର ଆଣ ବୋଲି ରଜା ପ୍ରସାରିଲେ ପାଣି ॥୮୮॥

---

୧ । ଗ. କହନ୍ତି
୨ । ଗ. କେବେ
୩ । ଖ. ଗଣ ତୁମ୍ଭେ ଅଟ ଦେବ
ଗ ଘ. ଗଣ ତୁମ୍ଭେ ହୁଅନ୍ତ
୪ । ଘ. ଦାମ୍ବୋଦର
୫ । ଖ. ଚଢ଼ି
୬ । ଖ. ଆସି ହସ୍ତିନା ମିଳିଲେ
ଗ. ଜାଇଂ ହସ୍ତିନା ରହିଲେ
ଘ. ଯାଇ ହସ୍ତୀନା ମିଳିଲେ
୭ । ଗ. ଚରିତମାନ
୮ । ଘ. ଦ୍ରୁପଦୀ
୯ । ଘ. ପାଠ ନାହିଁ
୧୦ । ଘ. ବୃନ୍ଦି
୧୧ । ଘ. ଦେଲେ

ବ୍ରାହ୍ମଣ ବୋଇଲା ଆମ୍ଭ ମୋର¹ କରେ ଥିଲା
ଗଣ୍ଡୁଷ ଗୋରରେ ଏକ ବ୍ରାହ୍ମଣ ଦେଖିଲା²
ଆମ୍ଭ ଦେଖିଣ, ହୋଇଲା ଭଷତ
ମିଥ୍ୟା କହନ୍ତେଣ ଆମ୍ଭ ହେଲୁ ଉପ୍ତୁରିଛନ୍ତି³ ॥୪୯॥
ମୋ ଗୃହରେ ସ୍ନେହେ⁴ ମିଛ କହିଲୁ ପାମର⁵
ଲୋକ ପେଷି ଦୁର୍ଯ୍ୟୋଧନ⁶ କଲା ତାକୁ ଦୂର
କୃଷ୍ଣ ଚରଣେ, ଏ ମୋହୋର⁷ ଆଶ
କହଇ ଅଧମ ଦୀନ ବଣ୍ଡମ୍ବର⁸ ଦାସ ॥୫୦॥

୧ । ଘ. ମୋର ହସ୍ତେ
୨ । ଘ. ବ୍ରାହ୍ମଣ ବୋଇଲା
୩ । କ ଗ. ପୋଥରେ 'ଆନ୍ତି ଅଛି' ପାଠ
ପର୍ଯ୍ୟନ୍ତ ପାଠ ନାହିଁ
୪ । ଖ. ଏତେ
୫ । ଘ. ସତ କହିଲେ ଫଳନ୍ତି କି ଚୂତ
ଏତେ ମିଥ୍ୟା କଥା ଆଣି ଫଳାଇଛୁ ସତ
କେଣେ ଗଲେ କଦା ମଲେ ସେ ପଞ୍ଚ
ପାଣ୍ଡବେ
ସ୍ବର ମୁଖେ ବାରତାଭ ନ ପାଇଲୁ ଏବେ
ଏତେ ଖଣ୍ଡ ରୁ ଅନ୍ତରେ ଦୁର୍ମନ
ଶୁଣିକରି ମହାକ୍ରୋଧ କଲେ ଦୁର୍ଯୋଧନ
(ଅଧିକ ପାଠ)
୬ । ଘ. ଦୁର୍ଯୋଧନ
୭ । ଗ. ମୋ
୮ । ଘ. ବସମ୍ବର

## ଅଷ୍ଟାଦଶ ଛାନ୍ଦ

### ରାଗ—କଣାରଡ଼¹

ସୁରଥର ସେ ନନ୍ଦନ² ତପ କଲ³ ଅବଥନ
ଦୃଢ଼ ଆସନ ଦେଖି କରି ଈଶାନ ହୋଇଲେ ତାକୁ ପ୍ରସନ୍ନ⁴ ॥୧॥
⁵ସତ୍ୟରଥ ଆଗେ ରହି କୋଟି ସୂର୍ଯ୍ୟ ପ୍ରାଏ⁶ ଶୋଭି
ଆଜ୍ଞା ଦେଲେ ବେଗ⁷ ସତ୍ୟରଥ ମାଗ ଯେ ମନ ବାଞ୍ଛା ତା ଦେବା ॥୨॥

୧ । ଘ. ରାଗ-କେଦାର
୨ । ଖ ଘ. ତପେ ସତ୍ୟରଥ ହରବନ
ଗ. ଜତ୍ୟରଥ ହରବନ
୩ । ଙ. ତହିଁ
ଘ. ତପ କଲେ ତହିଁ ଅବଥନ
୪ । ଖ ଗ ଘ. ଦୃଢ଼ଆସନ ତାଙ୍କର
ଦେଖିକରି ଈଶ୍ୱର ହେଲେ ପ୍ରସନ
୫ । ଙ. ଆସି
୬ । ଗ. ଶୂର୍ଯ ପ୍ରାଏ
ଘ. ସୁର୍ଯ ପ୍ରାଏ ତେଜୁ
୭ । ଖ ଗ ଘ. ହେଠ

ଯଦ୍ୟରଥ[୧] ଦେଖି ଡର          ଉଠି କଲା[୨] ନମସ୍କାର
ପଞ୍ଚ ପାଣ୍ଡବଙ୍କୁ ସମରେ ଜିଣିମି[୩] ଦେବା ହେଉ ଏହି ବର ॥୩॥
ହର ବୋଇଲେ[୪] ଅର୍ଜୁନ          ମୁଂ ତାକୁ[୫] ନୋହେ ସମାନ
ତୁ ତାକୁ ଜିଣିବାକୁ ବର ଦେଲେ ବ୍ୟର୍ଥ ହେବ[୬] ବଚନ ॥୪॥
ସମରେ ଚୁଣ ପାଣ୍ଡବ          ହାରବେ ତୁମ୍ଭେ ଜିଣିବ[୭]
ଅର୍ଜୁନରେ ପ୍ରିୟ ହୋଇଥିଲେ ମିନା ତୁମ୍ଭର ପ୍ରାଣ ରକ୍ଷିବ ॥୫॥
ଲକ୍ଷେ ବଳ ଧନୁ ଦେଲେ[୮]          ଲକ୍ଷେ ଶର୍ମିଙ୍କି[୯] ଜଣ ବୋଇଲେ
ଶିର କାଟିଲେ ମୋର ଶିର ଲାଗିବ ସେ ଯଦ୍ୟରଥ[୧୦] ବୋଇଲେ ॥୬॥
ଶୁଣି[୧୧] କହିଲେ ତାଙ୍କ ଶଙ୍କର          ଜନ୍ମ ଛିଣ୍ଡିଲେ ଲାଗିବ ଶିର
ଭଦ୍ରାଙ୍କୁଳେ ତୁମ୍ଭ[୧୨] ପିତା ତପକରେ ଶୁଣ ତହିଁର ବିସ୍ତର ॥୭॥
ତୁ ଯେ ପିତା ପାଦେ ଦ୍ରୋହ କଲୁ          ବନେ ନୃପତି ତପ ଘେନିଲୁ
ନବଘଣ ହୋଇ ସ୍ୱରଥ ତପକରେ ଏତେ କଷ୍ଟ ତାକୁ ଦେଲୁ ॥୮॥
ତୋର ନ ଦେଖିବାକୁ[୧୩] ନେଇ ରୂପ          ତେଣୁ ନେତ୍ର ବୁଜି କରେ ତପ
ବ୍ୟାକୁଳେ ବୋଲଇ ଯଦ୍ୟରଥ ମୁଣ୍ଡ ଫୋଡ଼ ବୋଲି[୧୪] ଦେବ ଶାପ ॥୯॥
ତାର ଦେହରୁ ମୃତ୍ୟୁ ହେବ[୧୫] ତୋର          ଶୁଣି ଯଦ୍ୟରଥ ଯୋଡ଼େ କର
କେ ମୋତେ ମାରିବ ଜାଣିଥିଲେ ତାହା କହିବା ହେଉ ଶଙ୍କର ॥୧୦॥

---

୧ । ଘ. ଜେଜେଥ
୨ । ଘ. ବେଗେ:
୩ । ଖ. ମାଣବା
ଘ. ସମରେ ମାଗିବେ ବା ହେଉ
୪ । ଘ. ବୋଲନ୍ତି ହର
୫ । ଘ. ଗଣେ ମୁ ତାକୁ
୬ । ଖ. ମୋର
ଗ. ଦେବଙ୍କ ବ୍ୟର୍ଥ
ଘ. ବର ଦେଲା ଜନେ ଅଷ୍ଟ ମୋର ଜୀବନ
୭ । ଘ. ବର ଦେଲା ସେ ଗୁରୁ ପାଣ୍ଡବ
ଗଣେ ହାରବେ ତୁମ୍ଭେ ଜିଣିବ
୮ । ଘ. ତାଙ୍କ ଧନୁ ଦେଲେ
୯ । ଖ ଘ. ଜନାଙ୍କ
୧୦ । ଘ. ଲାଗିବ ଯଦ୍ୟରଥ
୧୧ । ଗ ଘ. ଶୁଣି
୧୨ । କ. ଲୁଣ୍ଠା କୁଳରେ ତୋ
୧୩ । ଘ. ଦେଖିବୁ
୧୪ । ଖ. 'ତୋ' [ଅଧିକ]
୧୫ । ଘ. ହେବ ମୃତ୍ୟୁ

ପିତାମହଙ୍କର ନିଜ ଶିର — ବିଷ୍ଣୁ ଦେବତା ଅଙ୍ଗ ରୁଧିରଂ[1]

ଅସୁର ଅଦ୍ଭୁତ ବାସବର ଆତ୍ମା ସ୍ୱରୂପଂଶେ ଯେଉଁ[2] ନର ॥୧୧॥

ରାତ୍ର ଦିବସ ନୋହିବ — ପାଦଗଣ୍ଡି[3] ହୋଇଥିବ

ମୋର ପଶୁପତେ ତୋ ଶିର ଛିଣ୍ଡାଇ ପବନେ ଉଡ଼ାଇ ଦେବ ॥୧୨॥

ପଡ଼ିବ ତୋ ପିତା କରେ — ପକାଇବ ସେ ଭୂମିରେ

ଭସ୍ମ ହୁଅ ବୋଲି ବୋଲନ୍ତେ ତୋ ମୁଣ୍ଡ ଜଳିବ ତାର ଆଗରେ[4] ॥୧୩॥

---

୧ । ଘ. ବିଷ୍ଣୁ ଦେବତାଙ୍କ ଅଙ୍ଗ

୨ । ଖ ଗ. ଯେଉଁ

୩ । ଘ. ରଣେ ପାଦଗଣ୍ଡ

୪ । ଖ ଘ. ଶିବ ବୋଲନ୍ତି ଶୁଣ ଗୋପନ — ତୋତେ ପ୍ରାଣେ ମାରିବ ଅର୍ଜୁନ

ଆଦ୍ୟ ଅବତାର ଯେମନ୍ତେ ହୋଇଲା ଶୁଣ ହୋଇ ସାବଧାନ

ବ୍ରହ୍ମା ଆସୁର ସଙ୍ଗେ ବିବାଦ — କ୍ରୋଧେ ତାର ଶୀର ଆମ୍ଭେ ଖେଦ

ସେ ରୁଧିରରୁ ପୁରୁଷେ ଜାତ ହୋଇ ଆମ୍ଭଙ୍କୁ ଆଣିଲା ଖେଦ

ବିଷ୍ଣୁ ପାଶେ ପଶିଲୁ ଶରଣ — ଦେଖି ଦୟା କଲେ ନାରାୟଣ

ଚକ୍ରକରେ ଧରି କୋପେଣ ସ୍ୱହାନ୍ତେ ପୁରୁଷ ରହେ ଦୂରେଣ

ବ୍ରହ୍ମା ମୁଣ୍ଡ ମୋ କରେ ଲାଗିଲା — ଯେତେ ହାଣିଲେ ସେ ନ ଛାଡ଼ିଲା

ଛିଣ୍ଡ ବିସ୍ତାରଣ ମୋ ମୁଖ ଅନାଇ ଦେବେ ବୋଲି ରଡ଼ି କଲା

ଚକ୍ରଧର କରେ ଚକ୍ରଧରି — ନିଜ ଦକ୍ଷିଣ କରେ ପ୍ରହାରି

ମୂଷଳ ଧାର ପ୍ରମାଣେରେ ସେ ରୁଧିର ବ୍ରହ୍ମା ମୁଣ୍ଡେ ନେଲେ ଭରି

ସହସ୍ର ବରଷ ଫାଟି ପଡ଼ିଲା — ତେବେ ମୋହର କର ଛାଡ଼ିଲେ

ବିଷ୍ଣୁ ରୁଧିର ମୋ ଦିଭୁଜ ପିତୁଳ ସେ ମୁଣ୍ଡେ ଜାଇ ଲାଗିଲା

୪ । ଖ ଘ· ଝମଣଃ

ବିଷ୍ଣୁ ଜୀବନ୍ୟାସ ତାକୁ କଲେ ପ୍ରସସ୍ତ ନାମ ସେ ତାହାକୁ ଦେଲେ

ବ୍ରହ୍ମାଠାରୁ ଜାତ ନାମ ଜା ପ୍ରଶସ୍ତ ମାର ବୋଲି ଆଜ୍ଞା ଦେଲେ

ସପ୍ତ ପ୍ରସସ୍ତ ବେନ ଶମର ଯଳ ସ୍ଥଳେ ସୃଷ୍ଟି ବେନ ବର

ଚଉଦ ଭୁବନ କମ୍ପମାନ ହୋଇ୍ଲ ରଣ ଲକ୍ଷେ ବରସର

ବ୍ରହ୍ମା ସକଳ ଦେବଙ୍କୁ ଘେନ ସ୍ତୁତି କଲେ ଦ୍ୱିଶରର ବେନ

ସପ୍ତ ପ୍ରସସ୍ତ ସମର କଲେ ଜନ ସମ୍ଭାଳବ ଏ ମେଦନ

ପୁଣି ବିଷ୍ଣୁ ସତ୍ୱରେ ଉଠିଲେ ବେନ ବରଙ୍କ ଭୁଜ ଧରିଲେ

ଦ୍ୱାପରେ ତୁମ୍ଭର ସମର ଦେଖିବା ଗ୍ରହତ ଯୁଦ୍ଧରେ ଥିଲେ

ବିଷ୍ଣୁ ଆଜ୍ଞା ଦେଲେ ସୁନାଶିର ପ୍ରସ୍ତବରକୁ ରଖ ଗହ୍ୱର

ସୂର୍ଯ୍ୟଙ୍କୁ ବୋଇଲେ ପ୍ରସସ୍ତ ବରକୁ ସମ୍ଭାଳ ରଖ ଗହ୍ୱର

ବେନ ବର ବେନ ଦେହ ଧର ନଯ ଶଙ୍କରେଣ ଗୋପ୍ୟ କର

ସୂର୍ଯ୍ୟ ଇନ୍ଦ୍ରଠାରୁ କର୍ଣ୍ଣ ଅରଜୁନ ଦ୍ୱାପରେଣ ଅବତର

ସୂର୍ଯ୍ୟଦେବ ଅଙ୍ଗ ଅବତାର ସୂର୍ଯ୍ୟ ଦେବଙ୍କ ଜଣେ ସମର

ଭାରତଯୁଦ୍ଧ ନିକଟେ ହୋଇବଟୀ ବାସବ ପୃଥିର ଘର ॥ଅଧିକ ପାଠ॥

ଏତେ ରୂପେ ମୃତ୍ୟୁ ଚୋର     ଶୁଣି ଯଦ୍ୟରଥ ଯୋଡ଼େ କର
କେ ମୋତେ ମାରବ ଜାଣିଥିବ ମୂର୍ତ୍ତି କହିବା ହେଉ ଶଙ୍କର ॥୧୩॥
ଶିବ ବୋଇଲେ[1] ଶୁଣ ଅର୍ଜ୍ଜୁନ     ତୋତେ କରିବେ ନଷ୍ଟେ ନିଧନ
ଋଷିଦେବ ଆତ୍ମା ଏକ[2] ସେ ହୋଇଛି ତାକୁ ନ କର ଦମନ ॥୧୪॥
କହି ଶିବ ଅନ୍ତର ହୋଇଲେ     ଯଦ୍ୟରଥ ଶୁଣି ତହୁଂ ଗଲେ
ଛଦ୍ମବେଶ[3] ଧରି ଆପଣା ଦେଶରେ ଯାଇଣ[4] ପ୍ରବେଶ ହେଲେ[5] ॥୧୬॥
ତାଙ୍କ ମନ୍ତ୍ରୀମାନେ ହେଲେ ଭେଟ[6]     ନିଆଇଲେ ନିଜ ରାଷ୍ଟ୍ର
କେତେଦିନ ଅନ୍ତେ ହସ୍ତିନାକୁ ଗଲେ ସଙ୍ଗରେ ବହୁତ ଥାଟ ॥୧୭॥
ଦେଖି ଶକତ ଭାଇ[9] ଦୁର୍ଯ୍ୟୋଧନ[10]     ବସାଇ ତାଙ୍କୁ[11] ଆସନ
ପରିହାସ କରି ଜଣେ ଜଣେ ତାଙ୍କୁ[12] କହୁଅଛନ୍ତି ବଚନ ॥୧୮॥
ରାଜା ଦୁର୍ଯ୍ୟୋଧନ[13] କରେ ହାସ     ଫିଟାଅ ଦେଖିବା[14] କେଶ
ପାଣ୍ଡବେ ବନେ ଶତଭାର[15] କଲେଟି କେମନ୍ତେ ହରିଲ କେଶ[16] ॥୧୯॥
ତାଙ୍କୁ ଦୁଃଶାସନ ବୋଲେ ପୁଣ[17]     ତହିଁ ଏ ନିର ଦେଲେ ପୋଛଣ[18]
ଏବେ ତୁମ୍ଭେ ନିର ରଖିବାରୁ ଆଜ୍ଞ ଅଛୁଣ କହଂ କାରଣ[19] ॥୨୦॥
କର୍ଣ୍ଣ ବୋଇଲେ[20] ମିଥ ଭୂପାଳ     ଟେକ ଦେଖ ତାଙ୍କର[21] କପାଳ
ଅକ୍ଷର ମାଳିକା ପଢ଼ିଲେ ଜାଣିମା ତାହାଙ୍କ କଥା ସକଳ[22] ॥୨୧॥[23]

---

୧ । ଖ ଗ. ବୋଲନ୍ତି
ଘ. ବୋଲନ୍ତି ସୁଣ ରାଜନ
୨ । ଏକ ଆତ୍ମା ସେ
୩ । ଖ ଗ ଘ. ଦବ୍ୟ ଭେକ
୪ । ଗ. ଜାଣ
୫ । ଘ. ପ୍ରବେଶ ଯାଇଁ ହୋଇଲେ
୬ । ଘ. ମାନେ ହେଲେ
୭ । ଖ. ନିହୁଂ ନ ଯାଇ ଆପଣା
ଗ. ନିଆଇ ଆପଣା
ଘ. ଚଢ଼ି ନିଅନ୍ତି ଆପଣା
୮ । ଖ ଗ ଘ. ଥାଟ
୯ । ଖ. ଭ୍ରାତି
୧୦ । ଗ. ଦୁର୍ଯୋଧନ
୧୧ । ଖ ଘ. ତାଙ୍କୁ ବସାଇ ଦବ୍ୟ
୧୨ । ଗ. ପାଠ ନାହିଁ
ଘ. ତହିଁ
୧୩ । ଗ. ଦୁର୍ଯୋଧନ
ଘ. ଦ୍ରୋଯୋଧନ
୧୪ । ଖ ଘ. ଦେଖି ଫିଟାଅ ତୁମ୍ଭର
୧୫ । ଖ ଗ. ପାତଭାର
୧୬ । ଖ ଗ. ବେଶ
ଘ. ପାଣ୍ଡବମାନେ ପାତଭାର କଲେଟି
କେମନ୍ତ ବସାଇ ବେଶ
୧୭ । ଖ ଗ. ବୋଲନ୍ତି
ଘ. ବୋଲନ୍ତି ସୁଣ ରାଜନ
୧୮ । ଘ. ତହିଁ ନାସ ଦେଲେକ
୧୯ । ଘ. ତୁମ୍ଭେ ଆଉ ନାସ ରଖିବାର ଅଛନା
୨୦ । ଖ ଘ. ବୋଲନ୍ତି
୨୧ । ଖ ଗ ଘ. ଦେଖିଲ ତାଙ୍କ
୨୨ । ଖ. ପଢ଼ିଲେ ଯାଣିମା ତାହାଙ୍କ କଥା ସକଳ
୨୩ । ଖ. 'କ' ପୋଥିର ୧୮ ପଦ 'ଖ' ପୋଥିରେ କ୍ରମଭଙ୍ଗ ହୋଇ ୩୪ ପଦରେ ଅଛି

କେ ଧଣଲ[1] ଆସି ଦାଡ଼ି[2] ଏହା ପାଣ୍ଡବେ ଥିଲେ ଭପାଡ଼
ଏବେ କଅଁଳକୁ ସୁନ୍ଦର ଦଶିନ୍ଥ ଆଗେ ପଡ଼ିଥିଲ ମାଡ଼ ॥୨୨॥
କେ ବୋଲେ[4] ଏ କଥା ଗୁଡ଼ ମାଣଛନ୍ତ କେତେ[5] ମାଡ଼
କେ ପୁଣି[6] କପନ୍ତ ପ୍ରାଣ ଗୁଡ଼ଳନ୍ତ ଝଳିଦେଲେ[7] ଖଞ୍ଜା ଦାଢ଼ ॥୨୩॥
ଶକୁନ ମନ୍ତ୍ରୀ ଶୁଣି ବୋଇଲେ କ ହେବ ଏହା[8] କହୁଲେ
ଭୀମ ଜାନୁ ତଳେ ଗଳ ଯାଇ କଣ ଆପଣା ପ୍ରାଣ ରଖିଲେ[9] ॥୨୪॥
ଶୁଣି ଯଦ୍ୟରଥ କହେ ସତ ଏ କଥା ମିଛ ତ ନୋହେ
ଏମନ୍ତେ ପାଣ୍ଡବେ କଲେ ସେ ପ୍ରଚଣ୍ଡେ[10] ଗୀବନ ମାଝକର ହେ ॥୨୫॥
ଯାଇ ଦଉ[11] ବନେ ତପ କଲ ମହାଦେବଙ୍କୁ ଭେଟିଲ[12]
ଯୁଧିଷ୍ଠି[13] ଭୀମ ନକୁଳ ସହଦେବ ମାରଣ ବର ପାଇଲ ॥୨୬॥
ଏକା ମାତ୍ରକ ବୀର ଅର୍ଜୁନ[14] ମୋରେ ନୋହୁବ ନଧନ[15]
ଚ୍ଛର ପାଣ୍ଡବଙ୍କୁ ମାରବ ଏମନ୍ତ[16] କହୁଅଛନ୍ତ ଈଶାନ ॥୨୭॥

---

୧ । ଘ. କେହୁ ଧାଇଲେକ
୨ । ଗଃ ବାଦଠ
୩ । ଭ ଘ. କେବା ବୋଲନ୍ତି ଏକ ବୃତ୍ତାନ୍ତ
ଭୀମ ଗୁପୋଡ଼େ ଭାଙ୍ଗିଲ ଦାନ୍ତ
କେତେ ଦୂର ଯାଏ ତଳେ ଘୋଷାରଲେ
କହ ତହିଁର ବୃତ୍ତାନ୍ତ [ଅଧିକ ପାଠ]
୪ । ଘ. କେହୁ ବୋଲନ୍ତି
୫ । ଗ. କେତେ
ଘ କେତେ କେତେ
୬ । ଘ ତୋଟି
ଗ. ତଣ୍ଟି
ଘ. ଗଣ୍ଟି
୭ । ଗ. ଭାଜଥିଲ
ଘ. ପ୍ରାସ ଗୁଡ଼ଳନ୍ତ ଭାଜଥିଲେ ଖଣ୍ଡୀ
୮ । ଗ. କସ ହୁଅଇ ତାହା
ଘ. ଶୁଣି ସକ୍ରୀନ ମନ୍ତ୍ରି °° କସ ହୋଏବ ଏହା
୯ । ଗ. ପାଥିଲେ
୧୦ । ଖ. ପ୍ରମାଣ
ଘ. କଲେ ଯେ ପ୍ରପଞ୍ଚ
୧୧ । ଗ. ହଉନା
୧୨ । ଘ. ମହାଦେବ ପ୍ରସନ ଦେଖିଲ
୧୩ । ଗ. ଯୁଧିଷ୍ଠିର
୧୪ । ଖ ଘ. ମୋର ହସ୍ତେ ନୋହିବ ମରଣ
୧୫ । ଗ. ଏକା ମାତ୍ର ଅର୍ଜୁନ
୧୬ । ଘ. ସମରେ

ଶୁଣି ଦୁର୍ଯୋଧନ[୧] ହେଲେ ରୋଷ ଭୀମା ଯେବେ ଯିବ[୨] ନାଶ
ଅର୍ଜୁନଙ୍କୁ ଆମ୍ଭେ କ୍ଷଣକେ ଜିଣିମା ନକୁଳନ୍ତୁ[୩] କଉଁ ଯଶ ॥୨୮॥
ପୁଣ ଗଉରବ ତାଙ୍କୁ କଲେ[୪] ନିଜ ପୁରେ ରଖାଇଲେ[୫]
ଶ୍ରୀକୃଷ୍ଣ ଚରଣ ପଙ୍କଜ ଯୁଗଳ ବିଶ୍ୱମ୍ଭର ଚିନ୍ତା କଲେ[୬] ॥୨୯॥

୧ । ଘ. ଦୁର୍ଯୋଧନ
୨ । ଖ. ତୋ କରେ ହୋଇଲେ
ଘ. ଭୀମା ତୋ କରେ ହେଲେ ବିନାଶ
୩ । ଖ. ନାପିବୁଂ ନ କଲ ରୁ
ଘ. ପିଣିମୁ ନକଲୁ ରୁ
୪ । ଘ. କର
୫ । ଖ. ସେନ୍ହେ ରଖାଇଲେ ତାଙ୍କ ପୁର
ଘ. ସେନ୍ହେ ରଖାଇଲେ ନିଜ ପୁର
୬ । ଖ. ଯୁଗଳ ମାରତେ ବିଶ୍ୱମ୍ଭର ଚିନ୍ତା କଲ
ଗ. ପୋଥିର ୨୫ ଓ ୨୬ ପଦର ପାଠ
ଲୋଟଅଛି
ଘ. ଯୁଗଳ ନରତେ ବିଶ୍ୱମ୍ଭର ଚିନ୍ତାକଲ

## ଊନବିଂଶ ଛାନ୍ଦ

### ରାଗ—ଦାସ କୋଇଲି[୮]

ହେମନ୍ତରେ[୯] ଶିଶିର ପ୍ରବେଶ ପଦ୍ମକୂଳଙ୍କୁ କଲା ବିନାଶ
ତପନରେ ପ୍ରତିପୂର୍ବନ୍ତ ନରେ[୧୦] କମ୍ପମାନ ଚନ୍ଦ୍ରଂ[୧୧] ନିଶି ଜାଡ଼ରେ[୧୨] ହେ
ବସନ ହୀନ ସେବଣ ନର ଅନଳ କୋଳେ ବସଇ[୧୩] ଶିଶିର[୧୪] ହେ ॥୧॥
ଧର୍ମ ସୁତ ଦ୍ରୌପଦୀଙ୍କି[୧୫] ଘେନ ବଞ୍ଚିଲେକ ଶିଶିର ରଜନୀ[୧୬]
ପ୍ରଜ ମଣ୍ଡଳ ଅନାଇଁ ହସି ଗତ୍ତୁ[୧୭] ହୋଇଲୁ ତାନ୍ତ୍ର ଶୁଭ୍ରକେଶିରେ
କୁଚର ଅଗ୍ର ହୋଇଲ[୧୮] କଳା ଶିଖର[୧୯] ମୋଟ ଲାଗଇ ଅବଳାରେ ॥୨॥

---

୮ । ଘ. ଦ୍ଵିମୋହନ କୋଇଲି ବୃତ୍ତେ
୯ । ଖ ଘ. ହେମନ୍ତେ
୧୦ । ଘ. ପ୍ରୀତିବନ୍ତ ନରେ
୧୧ । ଖ ଗ ଘ. ଚନ୍ଦ୍ର
୧୨ । ଘ. ନିଶି ଜାଡ଼ ହେ
୧୩ । ଙ. ବସନ ହୀନ
୧୪ । ଖ. ବସିଲେ
ଗ. ଅଙ୍ଗର ନଷ୍ଟ ଯୋଗୁଁ ନାହିଁ
୧୫ । ଘ. ବସ୍ତ୍ରେ ଘମିର ହେ
୧୬ । ଘ. ଦ୍ରୌପଦୀଙ୍କ
୧୭ । ଖ. ଯାମିନୀ
ଘ. ଏ ଶୀତର ଯାମିନୀ
୧୮ । ଖ. ଗର୍ଭ
ଘ. ଗର୍ଭଂ
୧୯ । ଖ ଗ. ଦଶୀଲ

ତହିଁ[1] ଶଣିଲ ଆସି ପାଣ୍ଡୁର[2]   କଟୀବସନ ଖସେ ତୋହୋର
ଅଳସ ଆଶ୍ରେ କଲ୍ପ କ୍ଷୀଅଙ୍ଗ[3]   ମଳନ ବଶଭ ଅଧର ରଙ୍ଗରେ
ମୋ ସଙ୍ଗ[4] ମଣୁ ବଷ ପରସ୍ପେ   ଶପ୍ନନ ଆଦର[5] ବହୁତ ହୋଏରେ[6] ॥୩॥

ସ୍ୱେଚ୍ଛେ ଆନନ୍ଦ କଥା ମୋହୋର   ମୋତେ ନ କହୁ ତ ସମାଦର[7]
କଉଂ ପଦାର୍ଥେ ତୋର ଶରଧା   କହ ଆଣି ଦେବ ପୁରୁ ତୋ ବାଧାରେ
କୁଶଳେ ହେଉ ପଞ୍ଚ ନନ୍ଦନ   ଆମ୍ଭ ପଞ୍ଚଭ୍ରାତ[8] ସ୍ୱରୂପ ଚିତ୍ତରେ ॥୪॥

ଶୁଣି ଦ୍ରୌପଦୀ ସଲ୍ଲଜ୍ଜ[10] ହୋଇ   ମନ୍ଦେ ହସିଣ[11] ଶିର ନୁଆଇଁ
ଧର୍ମ ନନ୍ଦନ ଧଇଲେ[12] କୋଳେ   ମୁଖେ ଚୁମ୍ବନ ଦେଲେ ସୁଖ ଭୋଳେ ହେ[13]
କହନ୍ତି ପୁଣ ପ୍ରିୟ ସଖୀକ[14]   କେତେ ମାସ ହେଲା ଆଜ ସରକ ସେ ॥୫॥

ଦ୍ରୌପଦୀ[15] କହନ୍ତେ କାର୍ତ୍ତିକରେ   ବ୍ରତମାସ ହୋଇଲ[16] ଲେଖାରେ
ଶୁଣି ଯୁଧିଷ୍ଠି ଆନନ୍ଦ ମନ   ଏହି ପ୍ରକାରେ ଗଲ୍ଲ କେତେଦନ ସେ
ମକର ଚତୁଂ ପ୍ରବେଶ ହେଲ[17]   ତନ୍ଦ୍ରଭଗା ତୀର୍ଥ[18] ସ୍ନାନ ପଡ଼ିଲ ସେ ॥୬॥

ଲକ୍ଷେ ନୃପତ ପ୍ରବେଶ[19] ହୋନ୍ତି   ମହା ଉତ୍ସବେ[20] ସ୍ନାନ କରନ୍ତି
ପାତାଳରୁ[21] ଅଷ୍ଟକୁଳ ନାଗେ   ମଧ୍ୟ ଭୁବନେ ସେ ପ୍ରବେଶ ବେଗେ
ବହୁତ ସଙ୍ଗରେ ନାଗବଳ   କେ ଶ୍ୱେତ[22] ପୀତ ଲୋହିତ ପିଙ୍ଗଳ ସେ ॥୭॥

---

୧ । ଘ. ପୃଛେର
୨ । ଖ. ତନୁ
୩ । ଗ. ଅକ୍ଷରେ ନଷ୍ଟ ହୋଗୁଂ ଲଇନଟି ନାହିଁ
 ଘ. ତନୁ ଦପୀଲ ପାଣ୍ଡୁର
୪ । ଗ. ଆତ୍ରୟୁ କଲ୍ପ ଅଙ୍ଗ
 ଘ. କଲ୍ପନା ଅଙ୍ଗ
୫ । ଘ. ମୋର ସଙ୍ଗ
୬ । ଖ ଗ ଘ. ଶପ୍ନେ ଆଦର
୭ । ଗ. ଅକ୍ଷର ନଷ୍ଟ ହୋଗୁଂ ନାହିଁ
୮ । ଖ ଘ. ଜାଣ
୯ । କ. ପୁତ୍ରଭ୍ରାତ
୧୦ । ଗ. ଦ୍ରୋପଦୀ ସଲଜ
 ଘ. ଦ୍ରୁପଦୀ
୧୧ । ଘ. ମନ୍ଦ ହସାଣ
୧୨ । ଖ ବସାଇ
 ଘ. ବସାଇଲେ
୧୩ । ଗ. ପାଦଟି ଅକ୍ଷର ନଷ୍ଟ ହୋଗୁଂ ନାହିଁ
୧୪ । ଖ. ପ୍ରାଣସଖି ନ
୧୫ । ଘ. ଦ୍ରୁପଦୀ
୧୬ । ଗ. ହେଲନ
୧୭ । ଗ. ଅକ୍ଷର ନଷ୍ଟ ହୋଗୁଂ ନାହିଁ
 ଘ. ମକର ଜନ୍ତୁଂ
୧୮ । ଖ ଗ ଘ. ତୀର୍ଥେ
୧୯ । ଖ ଘ. ତହିଁ ଆସନ୍ତି
୨୦ । ଖ. ଉତ୍ସବେ
୨୧ । ଖ. ପାତାଳୁ ଆସି
୨୨ । ଖ ଗ. କଜ୍ଜଳ
 ଘ. କେ ପୀତ କଜ୍ଜଳ ହେ

ନାନା ରୂପରେ[୧] ଅଛନ୍ତି ଫଣୀ[୨] ଫେର[୩] ଟେକ ଧାମନ୍ତି ଧରଣୀ
ଫୁତ୍କାର[୪] ନାଦ ମହାଘୋର ଲତା ବୃକ୍ଷମାନେ ହୁଅନ୍ତି ଚୂର ଯେ
ପଛରେ କୁନ୍ଥୁଥାନ୍ତି[୫] ଆସନ୍ତି ଫଣୀ ଗଣଙ୍କୁ କେ ଦୂରେ[୬] ଦେଖନ୍ତି ଯେ
ଦୁର୍ଯ୍ୟୋଧନ[୭] ବୋଲେ ଅନ୍ଧକୂଳ ବେଗରେ ମାରନ୍ତୁ[୮] ପାପିଷ୍ଠ ବଳ
ଶୁଣି ଦୁଃଶାସନ ଗଦା[୯] ଘେନ ଗୋଡ଼ାଇ ପିଟିଲା ସର୍ପ ସଇନ ଯେ
ପ୍ରହାରେ ଦଶ ବଂଶ ମରନ୍ତି ଅନ୍ଧକୂଳ ଦେଖି ପଳାଇଛନ୍ତି ଯେ
ବହୁ ସର୍ପ ସଇନ ମାଇଲା[୧୦] କେଣ୍ଟ ରକ୍ଷକ[୧୧] ତାଙ୍କୁ ନୋହିଲା
ଆର୍ତ୍ତ ହୋଇ ଡାକ ଦେଲେ ନାଗେ ବେଲ୍ଲଳସେନ ଉଗାଳିଲା[୧୨] ଆଗେ ଯେ
ଫେରିଣ ମହାକୋପ[୧୩] ହୋଇଣ ଭୁଜଦଣ୍ଡେ ପ୍ରହାର କଲେ ବେଇଣ[୧୪] ଯେ
ମୁଖୁ ରୁଧିର ଜାତ[୧୫] ହୋଇଲା ଦୁଃଶାସନ[୧୬] ମୋହରେ ପଡ଼ିଲା
ଶତେ ଭାଇ ଗଦାକୁ ଘେନିଣ[୧୭] ଧାମନ୍ତେ ଦେଖିଲା ବେଲ୍ଲଳସେନ[୧୮] ସେ
ବୃକ୍ଷେକ ଉପାଡ଼ି[୧୯] ଆଣିଲା ଦୁର୍ଯ୍ୟୋଧନ[୨୦] ଶିରେ ନେଇ ପିଟିଲା ଯେ॥୧୧

---

୧ । ଙ ଘ. ସ୍ୱରୂପେ
୨ । ଘ. ଫେଣି
୩ । ଖ. ଫେରି
୪ । ଙ ଗ ଘ. ଫୁଫୁକାର
୫ । ଗ ଘ. ଥାଠ
୬ । ଖ. ଫଣିବଳଙ୍କ ଦୂରନ୍ତୁ
ଗ. ଅଛର ନଷ୍ଟ ହୋଉଂ ନାହିଁ
ଘ. ଫଣିବଳଙ୍କୁ ଦୂରଙ୍କୁ
୭ । ଗ. ଦର୍ଯୋଧନ
ଘ. ଦୁର୍ଯୋଧନ
୮ । ଖ ଗ ଘ. ମାର ମରନ୍ତୁ
୯ । ଙ. ଭୋପ
୧୦ । ଗ. ପଞ ନଷ୍ଟ ଯୋଉଂ ନାହିଁ
୧୧ । ଘ. ରକ୍ଷେ
୧୨ । ଖ ଗ. ଯାହାଙ୍କନ
ଘ. ଯାହାଙ୍କଲେ
୧୩ । ଗ. ଫେରିଲେ ମାହାକୋପ
ଘ. ଫେରଲେ ମହାକୋଧ
୧୪ । ଖ. ବହନ
ଘ. ଭୁଜପୋଢ଼େ
୧୫ । ଖ. ମୁଖେ ରୋଧିର ଯାତ
ଗ. ପଞ ନଷ୍ଟ ଯୋଗଂ ନାହିଁ
ଘ. ମୁଖେ ରୁଧିର ଛାତ
୧୬ । ଘ. ଦୁସାସନ
୧୭ । ଖ. ବେଡ଼ୀ ଗଦା ତୋଳି
ଗ. ଶତେ ଭାଇ ବେଢ଼ୀ ଗଦା ତୋଳି
ଘ. ସତେ ଭାଇମାନେ ଗଦା ତୋଳି
୧୮ । ଖ ଗ ଘ. ଦେଖି ରଡ଼ୀ ଦେଲା ବଳ
ବେଲାଳ ହେ
୧୯ । ଖ ଗ ଘ. ଉପାଡ଼ିଣ
୨୦ । ଗ. ଦର୍ଯୋଧନ
ଘ. ଦୁର୍ଯୋଧନ

ବୃକ୍ଷ ଭାଙ୍ଗି ଗଣ୍ଡି[1] ହୋଇଲା ପାଇ    ଶତେ ଭାଇ ଗଦା ପିଟନ୍ତେ[2] ନେଇ
ଗଦାମାନ ହୋଇଲାକ[3] ଚୂର    କ୍ରୋଧେ ଗର୍ଜଇ ନାଗେଣୀ[4] କୁମାର ଯେ
ଧାଇଁଣ ପାଦ[5] ପ୍ରହାର କଲେ    ମୁଖେ ବୁପଡ଼ାକେ କ୍ଷାନ ହାରଲେ[6] ଯେ ॥୧୨॥
ରଣେ ପଡ଼ିଲେ ଶତେ[7] ସୋଦର    ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ବୀର[8]
ସପ୍ତରଥୀ ମିଶି[9] ଯୁଦ୍ଧ କଲେ    ନାଗଚ ଧର କୋପରେ ବାନ୍ଧିଲେ[10] ଯେ
ବେଲ୍ଲାଳସେନ ଅଙ୍ଗରେ ପଡ଼ି    ନାଗଚମାନ ଚଡ଼ୁଛନ୍ତି ଝଁଡ ଯେ ॥୧୩॥
ଭୀମ ସୁତ ଭଏ ନ କରଇ    ଗାଲ ଭୂଞ୍ଜି ବଜାଇ ନାଚଇ
ଦେହଗର ନ କାଟିଲ ଅଙ୍ଗେ[11]    ଭୀଷ୍ମେ ବସୁରନ୍ତି ଦ୍ରୋଣଙ୍କ ସଙ୍ଗେ ଯେ
ଅଜଗ ବପୁସ ଏ କୁମର    ଭୀମସେନ[12] ଠାଣି ହଣେ ସୁନ୍ଦର ଯେ ॥୧୪॥
ବଜ୍ର ସନ୍ୟ[13] ଆମ୍ଭର ମାଇଲା    କଣ୍ଡ ଛଡ଼ି ଏ ଜଣା ନ ଗଲା
କେବେ ନ ପାରବା ଆମ୍ଭେ ଜିଣି[14]    ଏମନ୍ତେ ନିନ୍ଦିଲା[15] କୁମର ମଣି ସେ
ରଥିକ ଧର ଛନେ କରୁଣ୍ଡ    ଏକାବେଳକେ ସପ୍ତରଥୀ ପଡ଼ ଯେ ॥୧୫॥

---

୧ । ଖ. ବାଡ଼ି ଗଣ୍ଡା
ଗ. ଭଜ ଗଣ୍ଡା
ଘ. ଦ୍ରାଜ ମୁଣ୍ଡା
୨ । ଗ. ପଦ ନଷ୍ଟ ଯୋଗୁଁ ଲାଇନଟି ନାହିଁ
ଘ. ପିଟେ
୩ । ଘ. ଗଦାମାନେ ହୋଇଲେକ
୪ । ଗ. ନାଗୁଣି
୫ । ଖ ଗ ଘ. ବେଗେ
୬ । ଗ. ପ୍ରାଣ ଗଲେ
ଘ. ବୁପୋଡ଼ୁକେ
୭ । ଖ ଗ. ଘତେ
୮ । ଗ. ପଦ ନଷ୍ଟ ଯୋଗୁ ଏ ଲାଇନଟି ନାହିଁ
ଘ. ଶଲ୍ୟ କର୍ଣ୍ଣ ବୀର
୯ । ଘ. ମିଳି ଯୁଦ୍ଧ
୧୦ । ଖ. ଧନୁ ଧରଣ ନାଗଚ ବାନ୍ଧିଲେ
ଗ. ବାନ୍ଧିଲେ
ଘ. ଧନୁଧର ନାଗଚ ବାନ୍ଧିଲେ ହେ
୧୧ । ଗ. ପଦ ନଷ୍ଟ ଯୋଗୁ ଏହି ଅଂଶଟି
୧୨ । ଘ. ଭୀମସେଣ
୧୩ । ଘ. ବଜ୍ରତ ସନ୍ୟ
୧୪ । ଖ ଗ ଘ. ନ ପାରିଲୁଁ ତ
୧୫ । ଖ. ପଦ ନଷ୍ଟ ଯୋଗୁ ନାହିଁ
ଘ. ଧାଇଁଲା

ଭୀଷ୍ମ ଦ୍ରୋଣ ଶଲ୍ୟ ଦୁର୍ଯ୍ୟୋଧନ[1] କର୍ଣ୍ଣ ଶକୁନି ସେ ଦୁଃଶାସନ[2]
ନାଗପାଶେ ଏହାଙ୍କୁ ବାନ୍ଧିଲା[3] ବେଲାଳସେନ ତାଙ୍କୁ ଘେନିଗଲା ଯେ[4]
ନନ୍ଦନେ ପଥେ ନକୁଳ[5] ଦେଖି ଯାଇଣ ଜଣାଇଲେ ଯୁଧିଷ୍ଠିରଙ୍କି ଯେ[6] ॥୧୬॥
ଯୁଧିଷ୍ଠିର ଆଜ୍ଞା ଦେଲେ ଭୀମଙ୍କୁ ଯାଇ ଛଡ଼ାଅ ଦୁର୍ଯ୍ୟୋଧନଙ୍କୁ
ଯାଅ ଯାଅ ହେ ବୀର ଅର୍ଜ୍ଜୁନ ଆପଣେ କହି ଉଠିଲେ ବଚନ ଯେ[7]
ଦ୍ରୌପଦୀ[8] ଆଦି ପଞ୍ଚ ପାଣ୍ଡବେ ବେଲ୍ଲାଳସେନକୁ ଭେଟିଲେ ଆଗେ ଯେ[9] ॥୧୭
ନଦୀ ତେଜିଣ ଭୀମସେନ ଗଲେ ପର୍ବତେକ ଉପାଡ଼ି ଘେନିଲେ
ତାଙ୍କୁ ବେଲାଳସେନ ଯେ ଦେଖି[11] ବୃକ୍ଷେ କଟାଇଲା ସାତରଥିଙ୍କି[12] ଯେ
ବୁଲାଇ ଗିରି ଭୀମ[13] ମାଇଲେ ବେଲାଳସେନ[14] ମସ୍ତକ ପାତିଲେ ଯେ ॥୧୮॥
ଗିରି ପଡ଼ି ହୋଇଲାକ ଚୂର ହସି ବୋଲେ ନାରେଣୀ[15] କୁମର
ଆଜ ଦେଖିବ ସମନପୁର ବଧାଏ ହୃଦରେ ନେଇ ପ୍ରହାର ଯେ
ମୋହରେ ପଡ଼େ ପବନସୁତ ଅର୍ଜ୍ଜୁନ ଦେଖି ଓଗାଳ[16] ଭୂରତ ଯେ ॥୧୯॥
ଦେବଶର[17] ବସାଇ ପ୍ରହାରେ ଶର ନ ଭେଦେ ତାର ଶରୀରେ[18]
ଧର୍ମନନ୍ଦନ ମିଳିଲେ ପୁଣ ଅର୍ଜ୍ଜୁନ କରଇ ଅସଂଖ୍ୟ ରଣ[19] ଯେ
ସେ ଭୀମ ପୁଣ ଚେତନା ପାଇ ବୃକ୍ଷ ଉପାଡ଼ିଣ ଅଙ୍ଗେ ପିଟଇ ଯେ[20] ॥୨୦॥

---

୧ । ଘ. ଦୁଯୋଧନ
୨ । ଘ. ଦୁଶାସନ
୩ । ଗ. ବାନ୍ଧିଲ
ଘ. କାଳଫାସେ ଏହାଙ୍କୁ ବାନ୍ଧିଲ
୪ । ଗ. ପଦ ନଷ୍ଟ ଯୋଗୁଁ ଏ ଅଂଶଟି ନାହିଁ
ଘ. ଘେନି ତାଙ୍କୁ ଗଲା ହେ
୫ । ଘ. ପଥେ ତାଙ୍କୁ ନକୁଳ
୬ । ଗ ଘ. ଦେବ ପୁର୍ଣ୍ଣିମାକ ସାବଧାନେ । ବଡ଼ ଅପୂର୍ବ ଦେଖିଲୁ ବନେ
ଏକ ଷଣ୍ଢ ବଧୁଛେ ଅଲପ । ଅନନ୍ତ ଅଧିକ ତାହାର କୋପରେ ହେ
ଶଲ୍ୟ ଶକୁନି କର୍ଣ୍ଣ ସେ ଦୁର୍ଯ୍ୟୋଧନ ଭୀଷ୍ମ ଦ୍ରୋଣଙ୍କ ସଙ୍ଗେ ଦୁଶାସନ ହେ
କାଳଫାସେ ବନ୍ଧନ କରନ୍ତୁ । ବଳେ ଧରି ଘେନି ଯାଉଅଛୁ
ଭୀମସେନ ଆନନ୍ଦ ହୋଇଲେ । ଦଇବ ଆମ୍ଭ ଶତ୍ରୁ ନାଶ କଲା ହେ
ଯୁଧିଷ୍ଠିର ବୋଲେ ଶୁଣ ସୋଦର । ଆମ୍ଭର ଭ୍ରାତକୁ ମାରିବ ପରରେ (ଅଧିକ ପାଠ)
୭ । ଘ. କରଧରି ବୋଲିଲେ
୮ । ଗ. ପଦ ନଷ୍ଟ ଯୋଗୁଁ ନାହିଁ
୯ । ଘ. ଦ୍ରୁପଦୀ
୧୦ । ଖ ଘ. ଏବେ
୧୧ । ଖ ଘ. ଦେଖିଣ
ଗ. ବେଲାଣସେନ ଦେଖିଣ
୧୨ । ଗ. ଖଟାଇଲେ ସପତ ଜଣ
ଗ. ପଦ ନଷ୍ଟ ଯୋଗୁଁ ନାହିଁ
ଘ. ବୃକ୍ଷରେ ବାନ୍ଧିଲ ସପତ ଯଣ ହେ
୧୩ । ଖ. ଭିମ ଗଦା
୧୪ । ଗ. ବେଲାଣସେନ
୧୫ । ଗ. ନାରୁଣି
୧୬ । ଖ ଗ ଘ. ଓଗାଳିଲ
୧୭ । ଗ. ଦେବଶର
୧୮ । ଘ. ଦେହରେ
୧୯ । ଘ. କରନ୍ତି ଅସଙ୍ଖ ରଣ ହେ
୨୦ । ଗ. ପଦ ନଷ୍ଟ ଯୋଗୁଁ ନାହିଁ
ଘ. ଉପାଡ଼ି ତା ଅଙ୍ଗେ

ଦୁର୍ଯ୍ୟୋଧନ[1] ବନ୍ଧନରେ ଥିଲେ    ସହଦେବ[2] ପାଶ କାଟିଦେଲେ
ସାତଜଣ ହୋଇଲେ ବାହାର    ଦେଖନ୍ତି ଭୀମ ଅର୍ଜୁନ କୁମର ହେ[3]
ଶକୁନି ବୋଇଲେ ଯିବା[4] ପଳାଇ    ଯଶ[5] ସ୍ଥାନରେ ରହି ନ ଯୋଗାଇ ଯେ ॥୨୧
ପାଣ୍ଡବେ ତାଙ୍କୁ ମାଇଲେ ଭଲ[6]    ମଲେ ପାଣ୍ଡବେ ଆମ୍ଭର ସଲ
ଆମ୍ଭେ ରହିଲେ ନାହିଁଟି ଯଶ[7]    ଯେବେ[8] ଦେଖିବଟି କରିବ ନାଶ ହେ[9]
ସକଳେ ଚଳି ଯିବା ପଳାଇ    ଭଗ୍ନବଳ ଯେହ୍ନେ ହସ୍ତିନା ହୋଇ[10] ଯେ
ଯାଇ କହିଲେ ଧୃତରାଷ୍ଟ୍ରଙ୍କୁ[11]    ଅନ୍ଧରାଜା କହେ କଉରବଙ୍କୁ[12] ॥୨୨॥
ଭଲ ମନ୍ଦ ବୁଝିତେ[13] ନଇଲ    ପାଣ୍ଡବଙ୍କୁ କମା ଯେହ୍ନେ ନଇଲ ଯେ
ଏତେକ ଉପକାର[14] ସେ କଲେ    ଭୟ କ ଥିଲା ତାଙ୍କ ପାଶେ ଥିଲେ ହେ॥୨୩॥
ତାଙ୍କୁ କହିଲେ ଶୁଣ ଶକୁନି    ଆମେ[15] ପଳାଇଲୁ ପ୍ରାଣଘେନି
ପାଣ୍ଡବଙ୍କୁ ସେ ସାର ମାରନ୍ତା    ଆମ୍ଭର ନକ ଜୀବନ[16] ରଖନ୍ତା ହେ
ପାଣ୍ଡବେ ସେହିମନ୍ତ କରନ୍ତେ[17]    ପୁଣି ଆଉ କେହି ତୋତେ ଦେଖନ୍ତେ[18] ହେ॥୨୪

---

୧ । ଘ. ଦୁର୍ଯୋଧନ
୨ । ଖ ଘ. ଫାଶ
୩ । ଖ ଘ. ଭୀମ ଅର୍ଜୁନ ସଙ୍ଗେ ତା ସମର
୪ । ଘ. ସକୁନୀ ବୋଲେ ଜିବା
୫ । ଘ କ. ଯୋଗ
୬ । ଘ. ପାଣ୍ଡବେ ମାଇଲେ ତାଙ୍କୁ ଭଲ
୭ । କ. ନାହିଁତ ଯୋଶ
୮ । ଗ. ଯେବା
୯ । ଗ. ଯେବା ଦେଖିବ ଯେ କରିବ ହାସ
ଘ. ଯେବା ଦେଖିବ ଯେ କରିବ ନାସ ହେ
୧୦ । ଏମନ୍ତ ଖଳୀ ପଳାଇ ଗଲେ
ଭଗ୍ନଦଣ୍ଡ ଯେହ୍ନେ ହସ୍ତିନା ଗଲେ ହେ
ଗ. ଭଗ୍ନବଳ ହୋଇ ହସ୍ତିନା ଜାଇ ହେ
ଘ. ଭଗ୍ନବଳ ଯେସା ହସ୍ତୀନା ହେଲେ ହେ
୧୧ । ଘ. ଧୃତାରାଷ୍ଟ୍ରକ୍ତି
୧୨ । ଘ. ଅନ୍ଧ ନୃପତୀ କହେ ତାହାଙ୍କୁ
୧୩ । ଖ. ନ ବୁଝି
ଗ. ବୁଝି
ଘ. ନ ବୁଝି ଅଇଲ
୧୪ । ଗ. ଉପଗାର
ଘ. ଏଡେ଼ ଉପକାର
୧୫ । ଖ. ଆମ୍ଭେ
ଘ: ପୁଣି କହିଲେ ଦାକ୍ତି ସକୁନୀ ଆମ୍ଭେ
୧୬ । ଖ ଘ. ଯେ ପ୍ରାଣ
୧୭ । ଖ. ପାଣ୍ଡବେ ସେହିମତ କରନ୍ତୀ
୧୮ । ଖ. ପୁଣ କାହିଁ ତୋତେ ଅଇ ଦେଖନ୍ତେ
ଘ. ପୁଣ ଆଉ କାହୁଂ

ଏଣେ ଭୀମ ଅର୍ଜ୍ଜୁନ ସମରେ — ବେଲ୍ଲଳସେନ ଧାଇଁ କୋପ କରେ[1]
ଭୀମସେନର କେଶ ଧଇଲା — ଅର୍ଜ୍ଜୁନ ଆଗରେ[2] ଯାଇ ମିଳିଲା ଯେ
ଅର୍ଜ୍ଜୁନ ବାଳ[3] ଧଇଲା ବଳେ — ବେନିଙ୍କରେ ବେନି ଉନ୍ନଲେ ହେଳେ ହେ[4] ॥୨୫॥
ଶୂନ୍ୟେ ଧଇ[5] ଯେନିଗଲା ଟେକ — ନ ଝୁରଇ କିଛି ଯୁଧିଷ୍ଠିରଙ୍କି
ତିନିଭାଇ କରନ୍ତେ[6] ରୋଦନ — ଦ୍ରୌପଦୀ[7] ଅଙ୍ଗରେ ନାହିଁ ନା ଜ୍ଞାନ ଯେ
ପାତାଳ ପୁରେ ବେଲ୍ଲଳସେନ — ପ୍ରବେଶ ଯାଇ ହୋଇଲା ବହନ[8] ଯେ ॥୨୬॥
ଭୀମ ଅର୍ଜ୍ଜୁନଙ୍କୁ ବସାଇଲା — କରେ ତୀକ୍ଷ୍ଣ ଖଡ଼ଗ ଯେନିଲା[9]
ଦୁହେଁ[10] ଇଷ୍ଟ ଦେବତା ସୁମର — ମାଇଣ ଖଡ଼ଗେ[11] ଛେଦିବି ଶିର ଯେ
ଅର୍ଜ୍ଜୁନ ଭୀମ କୃଷ୍ଣ ସୁମର — ଯେ ସଙ୍କଟ ହର କରିବେ ପାର ହେ ॥୨୭॥
ବେଲ୍ଲବଳ[12] ମିଳି ଏ ସମଏ — ଭୀମସେନଙ୍କୁ କଲିତ ଲଏ[13]
ପୁତ୍ରକୁ ବୋଲେ[14] ଉଚ୍ଚ କୁମର — କାହାକୁ[15] ମାରୁଛୁ ତୋର ପିଅରରେ
ଚରଣ ତଳେ ପଡ଼ ବହନ[16] — ପୁତ୍ରକୁ ଯେନଣ କଲା ଦ୍ରସନ[17] ଯେ ॥୨୮॥
ଉଠି ଯୋଡ଼ହାକ ବେନିକର — ସ୍ୱାମୀ ପୁତ୍ରର ଦୋଷ[18] ନ ଧର
ଯେତ୍ତୁ ଅଛନ୍ତି ଭୂମି[19] ସଙ୍ଗରେ — ଭୂମିର କସ ଅଛନ୍ତି ବେଶରେ ହେ
ଶୁଣିଣ କହେ ସେ ବୃକୋଦର[20] — ଏ ମୋହୋର ସାନ ଅର୍ଜ୍ଜୁନ ବୀର ଯେ ॥୨୯॥

---

୧ । ଗ. କୋପରେ
ଘ. ବଲ୍ଲବେଳାଳ ଧାଇଁ କୋପରେ
୨ । ଘ. ଛାମୁରେ
୩ । ଗ ଘ. ତାହାଙ୍କ କେଶ
୪ । ଚ ଘ. ତାଳେ
୫ । ଖ. ତାଙ୍କୁ
ଘ. ଶୂନ୍ୟେ ଯେନିଗଲା ତାଙ୍କୁ
୬ । ଘ. କରନ୍ତି
୭ । ଘ. ଦ୍ରୁପଦୀ
୮ । ଘ. ହୋଇଲେ ବହନ ହେ
୯ । ଘ. ଧଇଲା
୧୦ । ଘ, ବେନି
୧୧ । ଘ. ମାଇବି ଖଡ଼ଗ
୧୨ । ଗ. ବେଲାବାଳ
ଘ. ବେଲ୍ଲଳବାଲ
୧୩ । ଘ. କଲେ ତ ଲଏ
୧୪ । ଘ. ପୁତ୍ରକୁ ବୋଇଲେ
୧୫ । ଘ. ଯାହାକୁ
୧୬ । ଘ. ପଡ଼େ ବହନ.
୧୭ । ଗ. ଦର୍ଶନ
୧୮ । ଘ. ପୁତ୍ରଦୋଷ
୧୯ । ଖ ଘ ସ୍ୱାମି ଅଛନ୍ତି ଏଥେ
୨୦ । ବାତ ବାତ କୁମର
ଗ. ତୋଷ ବାତ କୁମର
ଘ ଶୁଣି କହେ ବାତ କୁମର

ଆମ୍ଭେ ତନପୁରେ ବଳଆର  ହେଲେ ଜଣିଲ ତୁମ୍ଭ କୁମର[1]
ଧନ୍ୟ ଭାଗ୍ୟ ମୋହୋର ଦଶିଲ[2]  ଆଜ ହାତରେ[3] ପ୍ରାଣବ ନୋହିଲ ଯେ
ବେଲ୍ଲକସେନ ଯେହ୍ୱା ଶୁଣଇଁ  ଭୀମ ଅର୍ଜୁନ ଚରଣେ ଲୋଟଇ ଯେ[4] ॥୩୦॥
ଜଣି ପ୍ରଭାତରେ[5] ବେନଜଣ  ନାଗବାଳୀ ପ୍ରବୋଧ କରଣ[6]
ପାତାଳରୁ ହୋଇଲେ ବାହାର[7]  ମିଳିଲେ ଧର୍ମନନ୍ଦନ ଛାମୁର ଯେ
ଦ୍ରୁସନ ଜଣ ଆନନ୍ଦ ହେଲେ  ଅର୍ଜୁନ ସବୁ ମଣାଇଁ କହିଲେ ଯେ ॥୩୧॥
ବିଷଲଡ଼ୁ ଦେଲେ[8] କଉରବେ  ଭୀମସେନ ଠାକୁରଙ୍କୁ ଯେବେ
ଯମୁନା ଜଳେ ପକାଇ[9] ଦେଲେ  ନାଗବାଳୀ[10] ତାଙ୍କୁ ଘେନିଣ ଗଲେ ଯେ
ବିବାହ କଲେ ନାଗ ରାଜନ  ଏହାଙ୍କ ପୁତ୍ର ସେ[11] ବେଲ୍ଲକସେନ ହେ ॥୩୨॥
ଆମ୍ଭ ଦୁହିଙ୍କି ସେ ଘେନଗଲ[12]  ତାର ଜନମା ଆସି ଚହ୍ନିଲ
ବହୁ ଗଉରବ କଲ ପୁଟରେ[13]  କେତେ ବିନସ୍ତ କହିଲ ଛାମୁରେ ଯେ
କାଲି ସେ ତାର ପୁରେ ରହିଲୁ  କେତେ କହି ତାକୁ[14] ମେଲାଣି ହେଲୁ ଯେ ॥୩୩॥
ଶୁଣି ଆନନ୍ଦ ଧର୍ମ ନୃପତି  ସବ ଭାଇ[15] ଦ୍ରୌପଦୀ ଦୋହିତ
ଅତି ଆନନ୍ଦରେ[16] ଚଳିଗଲେ  ଗହ୍ୱର ବନରେ ଯାଇ ମିଳିଲେ[17] ଯେ
ତାଙ୍କର ପାଦେ ମୋହୋର ଆଶ  କହଇ ଦୀନ ବିଶ୍ୱମ୍ଭର ଦାସ ଯେ ॥୩୪॥

---

୧ । ଘ. ତୁମ୍ଭର କୁମର
୨ । ଖ ଘ ମୋତ ପ୍ରକାଶିଲ
୩ । ଖ ଘ ହସ୍ତରେ
୪ । ବେନ ନପ୍ତାନୁ ବହୁତ ମାର, ତାର ଅଙ୍ଗ
କମ୍ପେ ଥରହର
କର ଯୋଡ଼ିଣ ପୁଣ ଜଣାଇଂ
ଅଜ୍ଞାନ କ୍ଷମା କରିବା ଗୋସାଇଁ ହେ
ନ ଯାଣି ଏତେ କର୍ମ ମୁଂ କଲି
ପିତା ଖୁଡ଼ୁ ତାଙ୍କ ଭେଟ ଧଇଲି
(ଅଧିକ ପାଠ)
୫ । ଖ ଗ ଘ. ପ୍ରଭାତରୁ
୬ । ଗ. ପ୍ରବୋଧି କହିଣ
ଘ. ପ୍ରବୋଧ କରିଣ
୭ । ଘ. ଏ ଧାଡ଼ିଟି ନାହିଁ
୮ । ଖ ଘ. ଦେଲ
୯ । ଘ. ଜପାଇ
୧୦ । ଖ. ବେଳାବାଳୀ
୧୧ । ଏ ତାଙ୍କ ପୁତ୍ର ବେଲକବଳୀ ଏହାଙ୍କୁ
୧୨ । ଘ ଘେନ ସେ ଗଲ
୧୩ । ଗ. ଉତ୍ସବ କଲକ
ଖ. ଉଛବ କଲେ ସେ
ଘ ଉଛବ କଲକ
୧୪ । ଗ ଆଜ ଆଳନ୍ତି
୧୫ । ଘ ଖର
୧୬ । ଖ ଗ ଘ ଆନନ୍ଦରେ ଚଳୁଂ
୧୭ । ଘ. ଗହ୍ୱର ବନେ ପ୍ରବେଶ ହେଲେ

## ବଂଶ ଛାନ୍ଦ

### ରାଗ—ଭାଗବତ ବୃତ୍ତେ

ସେ ପଞ୍ଚ ପାଣ୍ଡବ ଦ୍ରୌପଦୀ[୧] । ସଙ୍ଗତେ ଘେନ ସର୍ବପତି ॥୧॥
ଗଣ୍ଡକୀ ତୀରରେ ସେ[୨] ବନ । ମାର୍ଗରେ କରନ୍ତେ[୩] ଗମନ ॥୨॥
ଉତ୍ତର ମୁଖ ହୋଇ ଗଲେ । କଦମ୍ବ ବନରେ ମିଳଲେ ॥୩॥
ଦେଖିଲେ ସେ ବନ ନିର୍ମଳ । ଅଚ୍ଛନ୍ତ ଦିବ୍ୟଫଳ[୪] ମୂଳ ॥୪॥
ବସନ୍ତ[୫] ହୋଇଛି ପ୍ରବେଶ । ଚହଟେ ନାନାପୁଷ୍ପ[୬] ବାସ ॥୫॥
କହନ୍ତି ବିଶ୍ବାମିତ୍ର ଋଷି[୭] । ଶୁଣ ହେ ନୃପତି ଯୁଧିଷ୍ଠି[୮] ॥୬॥
ଶ୍ରୀରାମ ବନବାସ କଲେ । ସୀତା ଲକ୍ଷଣ[୯] ଘେନ ଭୁଲେ ॥୭॥
ରହିଲେ ପଞ୍ଚବଟୀ[୧୦] ବନ । ସୀତାଙ୍କୁ ନେଲା ଦଶାନନ ॥୮॥
ବନେ ଲୋଡ଼ିଲେ[୧୧] ଚଉପାଶେ । ସୀତାଙ୍କୁ ନ ଦେଖି ହରଷେ ॥୯॥
ପୁଣ ମିଳଲେ ଏଥେ ଆସି[୧୨] । ଏହି କଦମ୍ବ ମୂଳେ ବସି ॥୧୦॥
ଅକାଳ କୁସୁମ ଫୁଟିଲା । ବାସରେ ବନ ଚହଟିଲା ॥୧୧॥
ମିଳଲେ ଦେଖି ଅଳିକୁଳ । ଝଙ୍କାର ଧ୍ୱନିରେ ଚହଳ ॥୧୨॥

---

୧ । ଘ. ପାଣ୍ଡବେ ଦ୍ରୋପଦୀ
୨ । ଖ ଘ ତର ତେଳ
ଗ. ସେ
୩ । ଖ ଗ ଘ କରନ୍ତି
୪ । ଘ ଅଛନ୍ତି ଦିବ୍ୟ
୫ । ଖ କଦମ୍ବ
୬ । ଖ. ପୁଷ୍ପ
୭ । ଖ ଗ ଘ. ଜନ୍ତ
୮ । ଖ ଗ ଘ. ଯୁଧିଷ୍ଠି ନୃପତ
୯ । ଖ. ଲକ୍ଷ୍ମଣ
୧୦ । ଘ. ପଞ୍ଚବଟୀ ବନ
୧୧ । ଖ ଲୋଡ଼ନ୍ତେ
ଘ. ଲୋଡନ୍ତି

କଦମ୍ବ ପୁଷ୍ପ ଦେଖି ରାମ । ସୁମରି ମନେ ସୀତା ପ୍ରେମ[1] ।୧୩।
ଅନେକ ଏଥି ବିଳପିଲେ[2] । ଲକ୍ଷ୍ମଣ ପ୍ରବୋଧି[3] କହିଲେ[4] ।୧୪।
ଶ୍ରୀରାମ ବୋଇଲେ ଲକ୍ଷ୍ମଣ[5] । ଶୀତଳ ଜଳ ବେଗେ ଆଣ ।୧୫।
ଲକ୍ଷ୍ମଣ ଜଳ ନ ପାଇଲେ । ନାରାଚେ ପୃଥ୍ୱୀ[6] ଖଣ୍ଡିଲେ ।୧୬।
ପାତାଳୁଂ ଗଙ୍ଗା ଜାତ ହେଲେ[7] । ଦେଖି ଶ୍ରୀରାମ ତୋଷ ହେଲେ[8] ।୧୭।
ଲକ୍ଷ୍ମଣ ତୀର୍ଥନାମ[9] ଦେଲେ । ଆପଣେ ଉଠି ସ୍ନାନ କଲେ ।୧୮।
ଭୁଞ୍ଜିଲେ ନାନା[10] ଫଳ ମୂଳ । ଶରୀର[11] ହୋଇଲା ଶୀତଳ ।୧୯।
କଦମ୍ବ ବୃକ୍ଷକୁ ସ୍ପର୍ଶିଲେ । ସେ ରଘୁନନ୍ଦନ ବୋଇଲେ[12] ।୨୦।
ଏହି ପ୍ରକାରେ ପୁଷ୍ପ ଧରି । ରହିଅଛି ଏ ମର୍ତ୍ତ୍ୟପୁରୀ[13] ।୨୧।
ଆଜଠୁଂ[14] କଦମ୍ବ ବନ ନାମ । ଏମନ୍ତ ବୋଇଲେ[15] ଶ୍ରୀରାମ ।୨୨।
ମୁଁ ଜାଣିଅଛି ଏ ସ୍ଥାନର । ଦେଖ ଏ କୁସୁମ ବିସ୍ତାର ।୨୩।
ଲକ୍ଷ୍ମଣ[16] ତୀର୍ଥେ ସ୍ନାନ କର । ପତିତପାବନୀ[17] ଏ ନୀର ।୨୪।
ପାଣ୍ଡବେ ଦ୍ରୌପଦୀ[18] ଘେନିଣ । ତକ୍ଷଣେ ସେ ଜଳେ ପଶିଣ[19] ।୨୫।
ସ୍ନାନ[20] କରିଣ ଶୁଚିବନ୍ତ । ଘେନି ସକଳ ତପୋବନ୍ତ[21] ।୨୬।
ଯୁଧିଷ୍ଠି କହନ୍ତି[22] ବଚନ । ଏଥି ରହିବ ମୋର ମନ ।୨୭।
କୃଷ୍ଣା ସେ ନ ପାରେ ଦ୍ରୌପଦୀ[23] । ଏବେ[24] ହୋଇଛି ଅଶକତି[25] ।୨୮।

---

୧। ଖ ଘ. ସୁମରି କରି ସିତା ନାମ
ଗ. ନାମ
୨। କ. ବିଳୋପିଲେ
ଗ ଘ. ବିଳାପିଲେ
୩। ଖ ଘ. ଲକ୍ଷ୍ମଣ ପ୍ରବୋଧି
୪। ଗ. ବହୁତ ପ୍ରବୋଧିଲେ
୫। ଖ ଲକ୍ଷ୍ମଣ
୬। ଖ. ପୃଥ୍ୱୀ
୭। ଗ. ହେଲେ ଗଙ୍ଗା ଜାତ
ଘ. ହେଲେ ଯାତ
୮। ଖ ଗ ଘ. ଆନନ୍ଦ ରଘୁନାଥ
୯। ଗ. ଲକ୍ଷଣ ନାମେ ତୀର୍ଥ
୧୦। ଖ ଗ ଘ: ଦ୍ରବ୍ୟ
୧୧। ଘ. ସୁନ୍ଦର
୧୨। ଗ ଘ. ସେ ସିତାପତି ଆଗ୍ୟାଂ ଦେଲେ
୧୩। ଖ ରହି ଅଛଏ ମୃତ୍ୟୁ ପୁରି
ଗ. ମର୍ତ୍ତ୍ୟପୁରି
୧୪। ଗ. ଆଜୁଂ
୧୫। ଗ. ଏମନ୍ତେ କହନ୍ତି
୧୬। ଖ ଘ. ଲକ୍ଷ୍ମଣ
ଘ ଲକ୍ଷଣ
୧୭। ଘ. ପତିତପାବନ
୧୮। ଗ. ଦ୍ରୋପଦ
ଘ. ଦ୍ରୁପଦୀ
୧୯। ଗ. ତହିଁ କଲେ ସ୍ନାନ
୨୦। ଖ ସ୍ନାନ
୨୧। ଖ ଗ ଘ ତପୋବନ୍ତ
୨୨। ଖ ବୋଲନ୍ତି
୨୩। ଖ ଗ ଘ. ଦ୍ରୋପଦୀ
୨୪। ଗ. ଏବେ
ଘ. ଏବ
୨୫। ଖ ଘ. ଆସକତି

ଏଥି ହୋଇବ ଏଣୁ[୧] ପାର । ଆନନ୍ଦ ହେବ ମୁନିବର ।୨୯।
ତହିଁରେ ପର୍ଣ୍ଣଶାଳା[୨] କଲେ । ପାଣ୍ଡବେ ହର୍ଷ ମନେ ରହିଲେ ।୩୦।
ଭୋଜନ କରି ଫଳମୂଳ । ସନ୍ତୋଷ ହୁଅନ୍ତି ସକଳ ।୩୧।
କେତେ ସମୟ ତହିଁ ଗଲା । ଦ୍ରୌପଦୀ ଗର୍ଭ ପ୍ରସବିଲା[୩] ।୩୨।
ହୋଇଲେ ପାଞ୍ଚଗୋଟି ସୁତ । ସେ ପଞ୍ଚ ପାଣ୍ଡବ ସାକ୍ଷାତ[୪] ।୩୩।
ପାଣ୍ଡବେ ପୁତ୍ରଙ୍କୁ ସମ୍ଭାଳି । ପାଳନ କରନ୍ତି ପଞ୍ଚାଳୀ[୫] ।୩୪।
ଯେମନ୍ତେ[୬] ଉଠିଆର ଯାନ୍ତେ[୭] । ସେ ପୁତ୍ରେ ବର୍ଦ୍ଧିତ ହୁଅନ୍ତେ[୮] ।୩୫।
ଏମନ୍ତେ କେତେଦିନ ଗଲେ[୯] । ବ୍ୟାସେ ପୁତ୍ରଙ୍କୁ ନାମ ଦେଲେ ।୩୬।
ଯୁଧିଷ୍ଠି ଦେବଙ୍କ ନନ୍ଦନ । ଏହାର ନାମ ଧର୍ମସେନ[୧୦] ।୩୭।
ବୃକୋଦରର ଯେ ନନ୍ଦନ । ତାହାର[୧୧] ନାମ ସୁରସେନ ।୩୮।
ବାସବ କୁମର ନନ୍ଦନ । ତାହାର[୧୨] ନାମ ବୀରସେନ ।୩୯।
ନକୁଳ କୁମାର ନନ୍ଦନ । ତାହାର ନାମ ଚନ୍ଦ୍ରସେନ[୧୩] ।୪୦।
ମନ୍ତ୍ରୀର ଯେ ଅବା ନନ୍ଦନ[୧୪] । ତାହାର[୧୫] ନାମ ଜୟସେନ ।୪୧।
ପାଞ୍ଚାଳୀ ଜନମା ଯାହାର[୧୬] । ବୋଲନ୍ତି ପଞ୍ଚାଳ କୁମର ।୪୨।
ଏମନ୍ତେ କେତେଦିନ ଗଲେ[୧୭] । ଦ୍ରୁପଦ ପ୍ରବେଶ ହୋଇଲେ[୧୮] ।୪୩।
କହିଲେ ତାଙ୍କୁ ବ୍ୟାସ ଯତି । ତେଣୁ[୧୯] ସେ ଅଇଲେ ନୃପତି ।୪୪।

---

୧ । ଗ ଘ. ହେତୁ
୨ । ଘ. ଶୋଭିଲେ ପୂର୍ଣ୍ଣଶାଳା କରିଲେ
୩ । ଘ. ଦ୍ରୌପଦୀ ଗର୍ଭ ପ୍ରସୂତିଲା
୪ । ଖ ଗ ଘ. ସହାତ
୫ । ଘ. ଉତ୍ତେ କରନ୍ତି ପାଞ୍ଚାଳୀ
୬ । ଖ ଘ. ଏଣୁତେ
୭ । ଖ. ଜାନ୍ତି
ଘ. ଯାନ୍ତି
୮ । ଖ. ବର୍ଦ୍ଧନ ହୁଅନ୍ତି
ଗ. ବର୍ଦ୍ଧିତେ ହୁଅନ୍ତି
ଘ. ବର୍ଦ୍ଧନ ହୁଅନ୍ତି
୯ । ଖ ଘ. ଏକ ସଂଗତେ ଦିନ ଗଲେ
୧୦ । ଖ. ଜୟସେନ
୧୧ । ଖ. ଏହାର
ଘ. ବୃକୋଦର କର ନନ୍ଦନ ଏହାର
୧୨ । ଖ ଘ. ଏହାର
୧୩ । ଖ ଘ. ଏହାର ନାମ ଇନ୍ଦ୍ରସେନ
୧୪ । ଖ ଘ. ଏ ସହଦେବର ନନ୍ଦନ
୧୫ । ଖ ଘ. ଏହାର
୧୬ । ଗ ଘ ଘ. ତାଙ୍କର
୧୭ । ଘ. ଦିନ ଗଲା
୧୮ । ଘ. ହୋଇଲେ
୧୯ । ଖ. ଏଣୁ

ପାଣ୍ଡବେ ନମସ୍କାର କଲେ । ଦ୍ରୋପଦ ନାଥଙ୍କ ଦେଖିଲେ ।୪୫।
ଅନେକ କରନ୍ତି ଉତ୍ସବ[1] । ଆନନ୍ଦେ ସେ ପଞ୍ଚ ପାଣ୍ଡବ ।୪୬।
ପଞ୍ଚାଳ କୁମାରଙ୍କୁ ସଙ୍ଗେ[2] । ସେବାନ୍ତି ସେ ଦ୍ରୁପଦ ରଙ୍ଗେ[3] ।୪୭।
ମିଳିଲେ ଆପଣା ଭୁବନେ[4] । ପୁତ୍ରଙ୍କୁ ପାଳନ୍ତି ସ-ତନେ[5] ।୪୮।[6]
ଶ୍ରୀକୃଷ୍ଣ ପଦ[7] କରି ଆସ । କହଇ ବିଶ୍ୱମ୍ଭର[8] ଦାସ ।୪୯।

୧ । ଗ ଘ. ଉତ୍ସବ
୨ । ଖ ଘ. କୁମାରଙ୍କ ବୃନ୍ଦେ
୩ । ଘ ଘ. ଦ୍ରୋପଦ ରଙ୍ଗେ
୪ । ଖ ଘ. ଭୁବନ
୫ । ଖ ଘ. କରନ୍ତି ଯତନ
୬ । 'କ' ପୋଥିର ୪୮ ପଦ ପରେ 'ଖ' ପୋଥିରେ
ଘ: ମୁନିଙ୍କ ମଙ୍ଗଳ ଗମିଷ୍ଟଣେ
ପାଣ୍ଡବେ ପୁତ୍ରେ ରହି ବନେ [ଅଧିକ ପାଠ]
୭ । ଖ. ପାଦ
୮ । ଘ. ବିଶ୍ୱମ୍ଭର

## ଏକତିଂଶ ଛା

### ରାଗ—ସିନ୍ଧୁଡ଼ା

ବରୁଣ ଭାରିଜା ମାଳାବତୀ କୋଳେ ଦୁହିତାଏ ହେଲେ ଜାତ[1]
ବୃହସ୍ପତି[2] ଗ୍ରହ କୋଠି[3] ବୁଝି କହୁଛନ୍ତି ବରୁଣ ଅଗ୍ରତେ ହେ
ଶୁଣ ହେ ଜଳପତି, ସୁତାଲାଗି ଭୁଟିବ ବିଭୂତ ହେ
ପାଣି ଗ୍ରହଣ ନୋହୁ ତା ପତି ହେ
ଶିର ଛେଦ ହୋଇବ[4] ତଡ଼ନ୍ତ ହେ ॥୧॥
ବରୁଣ ବୋଇଲେ ତେବେ ଦୁହିତାଙ୍କୁ[5] ପକାଇ ଦିଅ କାନନେ
ଶୁଣି ମାଳାବତୀ ଦୁହିତାକୁ ଘେନି ପଶିଲା ଏକାନ୍ତେ[6] ବନେ ସେ
କରୁଅଛି[7] ରୋଦନ, ବିଜେ କଲେ ପାର୍ବତୀ ଈଶାନ ସେ
ଯାଇ ମିଳିଲେ ତା ସନ୍ନିଧାନ[8] ସେ
ମାଳାବତୀ କରନ୍ତି[9] ରୋଦନ ସେ

---

୧ । ଖ: ଯାତ
ଗ. ଦୁହିତା ଏକଇ ଜାତ
ଘ. ଦୋଷୀ ଯାଏ ହେଲ
୨ । କ. ବୃହସ୍ପତ
ଖ ବୃହସ୍ପତଜ
ଘ. ବୃହସ୍‌ପତି
୩ । ଖ. କୋଷ୍ଠି
ଗ. କୁଠ
୪ । ଖ- ଛେଦନ ତସ୍ତ
୫ । ଖ ଗ. ଦୋହିତାକୁ
୬ । ଖ ଗହନ
ଘ. ପଶିଲେ ଏକାନ୍ତ
୭ । ଘ. କରୁଛନ୍ତି
୮ । ଖ ଗ. ସମାଧାନ
୯ । କ ଖ ଘ. ରୁଦନ

ବରଣମାଳା ଦେଇକରି ବରୁଣ କରି ତାହାଙ୍କୁ[1] ବଚନ
ଦେଖିକରି କୃଷ୍ଣ ଆନନ୍ଦ ହୋଇଲେ ବେଗେ ହକାରି ପ୍ରଦ୍ୟୁମ୍ନ[2] ସେ
ତୁମ୍ଭେ ସକଳ ଭ୍ରାତ, ଚଳ ବରୁଣ ପୁରେ ତୁରିତ ସେ
ମାଳେନ୍ଦୀ ନାମେ ତାର ଦୋହିତ[3] ସେ
ଆନନ୍ଦା ନନ୍ଦ ବିବାହ[4] ମତ ସେ ॥୭॥

ଏତେ ଆଜ୍ଞା ଦେଇ[5] ଆନନ୍ଦାନନ୍ଦକୁ ବରବେଶ କରାଇଲେ[6]
ଲକ୍ଷେ ଷାଠିଏ ସହସ୍ରେ ଅଣୀ ସୁତ[7] ବରଯାତ୍ରୀ[8] ଘେନି ଗଲେ ସେ
ଆଗେ ବର ବିମାନ, ବାଜୁଅଛି[9] ନାନା ବାଦ୍ୟମାନ ସେ
ରଥ[10] ଗଜ ଅଶ୍ୱ ବହୁ ସୈନ୍ୟ ସେ
ମହା ଉତ୍ସବ[11] ଆନନ୍ଦ ମନ ସେ ॥୮॥

ବର ଘେନାଇଁ ବରୁଣ ନିଜପୁରେ ପ୍ରବେଶ ଯାଇ[12] ହୋଇଲେ
କନ୍ୟାକୁ ସୁବେଶ କରାଇ ସତ୍ୱରେ ନଗ୍ରରେ ଉତ୍ସବ[13] କଲେ ସେ
ସିଦ୍ଧକାର କରଣ, ରତ୍ନବେଦୀରେ ବସି ବରୁଣେ[14] ସେ
ଘେନ ପୁରୋହିତ[15] ବିପ୍ରଗଣେ ସେ
ମାଝ ଅଛନ୍ତି[16] ପାଣି ଗ୍ରହଣେ ସେ ॥୯॥

---

୧ । ଖ. ବରିଲେ ତାଙ୍କୁ
ଗ. ଘେନଣ ସେ ବରୁଣ ଯାନନ୍ଦ ହୋଇ
ଘ. ବରଣ କରିଲେ ତାଙ୍କୁ ବହନ
୨ । ଗ. ଯାନନ୍ଦ ହୋଇଣ ହକାରିଲେ
ପରଦ୍ୟୁମ୍ନ
ଘ. ହୋଇଣ ପାସେ ହକାରି ପଦ୍ନ
୩ । ଗ. ଦୁହିତ
ଘ. ନାମ ତାର ଦୁହିତ ହେ
୪ । ଖ ଗ ଘ. ବିବାହ
୫ । ଖ. କହିଣ
ଗ. ଏତେକ କହିଣ
୬ । ଗ. ତହିଁ କଲେ
ଘ. ପୂଣ କଲେ
୭ । ଖ ସହସ୍ର ଅଣ୍ଣି ନନ୍ଦନ
ଗ ନନ୍ଦନ
ଘ. ଷାଠିଏ ସହସ୍ର ଅଶୀଏ ନନ୍ଦନ
୮ । ଖ. ବରବେଶ
୯ । ଗ. ବଜାଇଲେ
୧୦ । ଖ ଗ ଘ. ରଥ
୧୧ । ଗ ଘ. ମହୋତ୍ସବ
୧୨ । ଗ ଆସି
୧୩ । ଖ. ଉତ୍ସବ
ଗ. ପ୍ରବେଶ
୧୪ । କ. ବରଣ
୧୫ । ଘ. ବରୁଣ
୧୬ । ଗ ଘେନ ପୁରୋହିତ ବିପ୍ରଗଣେ ହେ
ଘ. ବିପ୍ରଗଣ ହେ
୧୭ । ଖ. ଅଛନ୍ତି
ଘ. ଅଛନ୍ତି

ନାରଦ ମୁନି ବସୁରନ୍ତି ମନରେ ଦେଖିବା ସେ କଉତୁକ[୧]
ବାଳକାନ୍ତ[୨] କନ୍ୟା ଈଶ୍ୱର ବରଲେ ଜାଣିନାହିଁ ସେ କାର୍ତ୍ତିକ ସେ[୩]
ଆମ୍ଭେ କହିବା ଯାଇ, ତୁମ୍ଭ କନ୍ୟା ଯାଏ ବଣ୍ଡ ହୋଇ ହେ

ଶୁଣି[୪] କରି ସେ ଆସିବ ଧାଇଁ ହେ
ସୁଖୀ ହୋଇବା କଳି ଲଗାଇ ହେ[୫] ॥୧୦॥

ଆଜ ଅକଥନ ସମର ହୋଇବ ଦୁଇକୁଳ ହେବେ ନାଶ
ଏମନ୍ତ ବସୁଧ କରଣ ମନରେ ପରବେଶ କଇଳାସ[୬] ସେ
କାର୍ତ୍ତିକକୁ କହନ୍ତି, କୃଷ୍ଣ କୁମରେ ଆସି ଅଛନ୍ତି ସେ

ତୁମ୍ଭ ବନ୍ୟାକୁ ବଳେ ନଅନ୍ତି ସେ
ପୂର୍ବେ ଈଶ୍ୱର ବରିଅଛନ୍ତି ସେ ॥୧୧॥

ଶୁଣି   କାର୍ତ୍ତିକ ଶିବଗଣ ସେନାଣ ନନ୍ଦଗଣ ଅଧିପତି[୭]
ବରୁଣ ଭୁବନେ ଅତି କୋପମନେ ପ୍ରବେଶ ହେଲେ ତଡ଼ିତ ସେ
କରେ ଖଡ଼ଗ ଧରି, କାର୍ତ୍ତିକେଶ୍ୱର କ୍ରୋଧରେ କରି ସେ

ଆନନ୍ଦାନନ୍ଦ ଶିର ଉଚାରି[୮] ସେ
ବରୁଣଙ୍କୁ କହନ୍ତି ହିଁ ନ ଡ଼ରି ସେ ॥୧୨॥

---

୧ । କ. ତାହା ନାରଦ ଜାଣି ତକ୍ଷଣ ସେ
ମନେ ଅତି ଆନନ୍ଦ ହୋଇଣ ସେ
ସୁଖି ହେବା ଦ୍ୱନ୍ଦ ଲଗାଏଣ ସେ
(ଅଧିକ ପାଠ)

୨ । ଘ. ବାଳକାଳେ

୩ । କ. ନାରଦମୁନି—କାର୍ତ୍ତିକ ସେ' ପାଠ ନାହିଁ

୪ । ଘ. ଆଜ

୫ । ଘ. ଏତେ ବସୁରଣ ମୁନି ଯାଇ ସେ

୬ । ଗ. କପିଳାସ

୭ । ଖ ଗ ଘ. ନନ୍ଦ ଆଦ ଗଣପତି

୮ । ଖ. ପଚୋଧ
ଗ. ପଚୋଧ

୯ । ଘ. ଧାଉଁଛି ନାହିଁ

ବରୁଣଙ୍କୁ ଗଣପତି ଧରିକରି[1] କରୁଥିଲେ ଧରଣୀ ସେ
ଜଳପତି ଜ୍ଞାନ ଚେତନ ପିଣ୍ଡରୁ ଶୋଇଲେ[2] ମଗ୍ନଚଳରେ ସେ
ଦେଖି ପ୍ରଦ୍ୟୁମ୍ନ[3] ବୀର, ସଙ୍ଗେ ସବୁ ସହୋଦର[4] ସେ
ଜଲେ ଅସଂଖ୍ୟ ଛନ୍ତି ସମର ହେ
ତାହା ସହିତ କାର୍ତ୍ତିକେଶ୍ୱର ସେ ॥୧୩॥

ବ୍ରହ୍ମଶର[5] ଯେତେ[6] ନମେଷ ମାତ୍ରକେ[7] ସବୁର ପ୍ରାଣ ହରିଲେ[8]
ଦେଖିଣ ନାରଦ ଦ୍ୱାରକା[9] ମିଳିଣ ରାମକୃଷ୍ଣଙ୍କୁ କହିଲେ ସେ
ଦେବ ସବୁକୁମର, ରଣେ ମାଇଲେ କାର୍ତ୍ତିକେଶ୍ୱର ହେ
ବୋନଖଣ୍ଡ ହୋଇଅଛନ୍ତି ବୀର[10] ସେ
କନ୍ୟା ଯେନଯାନ୍ତି ନଜ ପୁର ସେ ॥୧୪॥

ଶୁଣି ରାମକୃଷ୍ଣ ସାତବଂଶ ସନ୍ୟ ଘେନିଣ ସେ[11] ସଙ୍ଗତରେ
ମହାକ୍ରୋଧ ହୋଇ କାର୍ତ୍ତିକେଶ୍ୱରଙ୍କୁ ବେଢ଼ିଲେ ଆସି ସତ୍ୱରେ[12] ସେ
ଶଙ୍କରଷଣ ଧାଇଁ, ହଳ ମୂଷଳ କରେ ବୁଲାଇ ସେ
ଶିବଗଣ ମାରନ୍ତି ଗୋଡ଼ାଇ ସେ
ମହାମତ୍ତ[13] ବିଶ୍ୱମୂର୍ତ୍ତି[14] ହୋଇ ସେ ॥୧୫॥

---

୧ । ପ. କରେ ଧରି
୨ । ପ. ଚେତନେ ପିଣ୍ଡରୁ ସୋଇଲେ
୩ । ଖ. ପଦ୍ୟୁନ
ପ. ପଦ୍ୟୁନ
୪ । ଗ ଘ ପ. ଘେନିଣ ସବୁ ସୋଦର
୫ । ଘ. ବ୍ରହ୍ମସନ
ପ. ବ୍ରହ୍ମସ୍ୱର
୬ । ଖ ପ. ଯେସି
୭ । ପ. ନମୀଷ ମାତ୍ରକେ
୮ । ଖ. ତେଜଲେ
ପ ହାଣଲେ
୯ । ପ. ଦେଖି ନାରଦ ଦ୍ୱାରକା
୧୦ । ଖ ପ. ହୋଇଛନ୍ତି ବୀର ହେ
୧୧ । ଖ ସେନାକରି
ପ. ସେନାଗଲେ
୧୨ । ଗ. ବହୁତ ସମର କଲେ ସେ
ପ. ଅତ ସତ୍ୱରେ
୧୩ । ଗ. ମହାମତ
୧୪ । ଖ ବିଶ୍ୱମୂର୍ତ୍ତି

ଗଣେଶ ଦେଖିଣ ଓଗାଳିଲେ ଆସି ମୂଷଳେ[1] ଘମେ ପିଟିଲେ
ସେହିକ୍ଷଣି ହଳ ପ୍ରହାର କରନ୍ତେ ଗଣେଶ ମଥା ଲୋଟିଲେ ସେ[2]
ଦେଖି କାର୍ତ୍ତିକେଶ୍ୱର, କୃଷ୍ଣ ସଙ୍ଗେ କରନ୍ତି[3] ସମର ଯେ
କୋପ କଲେ ଦେଖି ପୀତାମ୍ବର ସେ
ପେଷିଲେକ ନାରାୟଣ ଶର[4] ସେ ॥୧୬॥
କାର୍ତ୍ତିକ ହୃଦରେ ପଶିଣ ବେଗରେ ବାହାର ହୋଇଲା ଶର[5]
ଗର୍ଜନ କରିଣ ପ୍ରାଣ ହାରି ତଳେ ପଡ଼ିଲେ କାର୍ତ୍ତିକେଶ୍ୱର ସେ
ଯେତେ ସାରଥି ଥିଲେ, ବଳରାମ ସମସ୍ତ ମାରିଲେ ସେ
କନ୍ୟା ଛଡ଼ାଇ ତହୁଁ ଆଣିଲେ[6] ସେ
ଦେଖି ନାରଦ ତହୁଁ ଚଳିଲେ[7] ସେ ॥୧୭
ପାତାଳ ପୁରରେ ବ୍ରହ୍ମଜ୍ଞାନ ସାଧୁ ଅଛନ୍ତି ସେ ତ୍ରିପୁରାରି[8]
ମୃଗସେନ ଜୟସେନ ବେନି ଦୈତ୍ୟ ତାଙ୍କୁ ଛନ୍ତି ଅନୁସରି ସେ[9]
ପରବେଶ ନାରଦ, ଉଠ ଶିବ ସରିଲା ସମ୍ପଦ ସେ
ରାମକୃଷ୍ଣ କଲେ ଚୋରେ[10] ବାଦ ସେ
କାର୍ତ୍ତିକଙ୍କୁ କଲେ ଶରଭେଦ[11] ସେ ॥୧୮॥

---

୧। ଗ. ଦେଖି ଓଗାଳିଲେ ଦେଖିଣ
ଘ. ଓଗାଳନ୍ତି ଆସି ମୁସଳ
୨। ଗ. ସେହିକ୍ଷଣି ହଳ ବୁଲାଇ ପିଟିଲେ
ଗଣେଶ ଗ୍ୟାଂନ ହାରିଲେ
୩। ଗ. କଲେକ
୪। ଖ ନାରାୟଣାସର
ଘ. ନାରାୟଣା ସର
୫। ଖ ସର
୬। ଗ. ସେନା ଅପିଲେ
ଘ. ସେନାଲେ
୭। ଖ ଘ. ତହିଁରୁ ଗଲେ
୮। ଖ ଘ. ପାତାଳପୁରେ ଈଶ୍ୱର
ବ୍ରହ୍ମଜ୍ଞାନ ସାଧୁଛନ୍ତି ତପ କରି
୯। ଖ ଘ ସେବା କରି
୧୦। ଖ ଚୋରେ
ଘ. ଚୋରେ କଲେ
୧୧। ଖ ଘ. ଶିରଛେଦ

ବରୁଣ ନନ୍ଦନ[1] ବାଳକାକୁ ତୁମ୍ଭେ[2] କାର୍ତ୍ତିକ କଲ ହରଣ
ରାମଙ୍କ ପୁତ୍ର ବିବାହ ହେଉଥିଲା କାର୍ତ୍ତିକେ ଏହା ଜାଣିଣ[3] ସେ
କୃଷ୍ଣ ପୁତ୍ରକୁ ମାରି, କନ୍ୟା ଆଣିଥିଲେ ନିଜ ପୁରୀ ସେ

ମିଳିଲେ ରାମ ସାରଙ୍ଗଧାରୀ ସେ
କନ୍ୟା ନେଲେ କାର୍ତ୍ତିକ ନିବାରି ସେ[4] ॥୧୯॥

ଶୁଣି ମହାଦେବ ମହାକ୍ରୋଧ ହୋଇ ବେନ ଦୈତ୍ୟଙ୍କୁ ପୁଚ୍ଛିଲେ
କିସ କାର୍ଯ୍ୟେ ତୁମ୍ଭେ ତପ କରୁଅଛ କହ ବୋଲିଣ ବୋଇଲେ[5] ସେ
ଶୁଣି ବେନ ଅସୁର, ଶିରେ ଯୋଡ଼ିଲେକ ବେନି[6] କର ସେ

ଜଣାଇଲେ ଶୁଣିମା ଶଙ୍କର ସେ
ଏହି କାରଣେ ତପ ଆମ୍ଭର ସେ ॥୨୦॥

ରାମକୃଷ୍ଣ ଆମ୍ଭ ବଂଶ ନାଶ କଲେ ଜିଣିମୁ ତାହାଙ୍କୁ[7] ରଣେ
କ୍ରୋଧେ ଏହି[8] ବର ଦେଇଣ ଈଶ୍ୱର ଯେବଲେ ତାଙ୍କୁ[9] ଗହଣେ ସେ
ବୃଷଭେ ବିଜେ କଲେ, ଦେଖି ନାରଦ ଆଗରେ ଗଲେ ସେ

ମହାଦେବ ଭୁବରେ ମିଳିଲେ ସେ
ରାମକୃଷ୍ଣଙ୍କୁ ସେ ଓଗାଳିଲେ ସେ ॥୨୧॥[10]

---

୧। ଖ. କୁମାରୀ
୨। ଘ. ବାଳକାକୁ ତୁମ୍ଭେ
୩। ଖ ଘ. ଶୁଣିଣ
୪। ଖ ସେହିଭଳେ ପୁତ୍ର ମାରି ହେ
୫। ଖ ଘ. ବୋଲି ଆଜ୍ଞା ଦେଲେ
୬। ଘ. ଯୋଡ଼ିକ ବେନି
୭। ଘ. ମାରିବୁ ତାହାକୁ
୮। ଖ ଘ. ଶୁଣି ସେହି
୯। ଘ. ଘେନି ତାଙ୍କୁ
୧୦। ଖ. "ରାମକୃଷ୍ଣଙ୍କୁ ସେ ଓଗାଳିଲେ ସେ"
[ଅଧିକ ପାଠ]

ଦେଖି ରାମକୃଷ୍ଣ ସନ୍ୟ ପନ୍ଥ କରି କରନ୍ତି ଅସଂଖ୍ୟ ରଣ[1]
ମହାଦେବ କ୍ରୋଧ କରିଣ କୃଷ୍ଣଙ୍କୁ[2] ପ୍ରହାରୁ ଅଛନ୍ତି ବାଣ ସେ
ପଦ୍ମଲୋଚନ ହରି, ତାଙ୍କ ଶର[3] ଦୂରହୁଁ[4] ନିବାରି ସେ

ବିନ୍ଧ ଛନ୍ତି ତୀକ୍ଷ୍ଣ ଶର[5] ଧରି ସେ
ଜଣା ନ ଗଲା[6] ହବା ଶବ୍ଦ ସେ[7] ॥୨୨॥

ଦେବ ଶରରେ ପ୍ରହରି କରନ୍ତି ଭୟେ କମ୍ପଇ[8] ଧରଣୀ
ମହାଘୋର ନାଦ କରିଣ ସମର କରୁଛନ୍ତି[9] ହଳପାଣି ସେ
ବେନି ଅସ୍ତ୍ର ସାରି, ଧନୁ ଧରି କରନ୍ତି ସମର ସେ

ହେଲେ ନିବାରନ୍ତି ନାନାସ୍ତ୍ର ସେ
ବେଳୁଂ ବେଳ କୋପ[10] ମହାଘୋର ସେ ॥୨୩॥

ନାରଦ ଦେଖିଣ ନୃତ୍ୟ କରୁଛନ୍ତି ଲଗୁ ଲଗୁ ବୋଲି ଡାକ
ଅଶୀ ସହସ୍ର କଳି ଧୋକେଇ କାଖେ ସେ ମୁନି ଅଛନ୍ତି ଜାକ ହେ
କଳି ପ୍ରିୟ ସେ ହନ୍ତି, କଳି ଦେଖି ଉଲ୍ଲସଇ ଗୁଣ ସେ

କଳି ଲଗାଇ ଅଛନ୍ତି ମାତି ସେ[11]
ତାଙ୍କୁ ବିଶ୍ବମ୍ଭର ମାଗେ ଭକ୍ତି ସେ[12] ॥୨୪॥

---

୧ । ଘ କରନ୍ତେ ଅସଂଖ୍ୟ
୨ । ଘ. କରିଣ ଶ୍ରୀକୃଷ୍ଣ
୩ । ଗ. ସର
୪ । ଗ. ଦୂରରୁ
୫ । ଗ ଘ. ଦେବଶର
୬ । ଗ. ଜିଣା
୭ । ଘ 'ଧାଙ୍ଗଟି' ନାହିଁ
୮ । ଖ ଶରେଶରେ ପ୍ରହାରର କରିବାରେ କମ୍ପୁ ଅଛଇ
ଗ. ଦେବଶରରେ ପ୍ରହାର କରନ୍ତି କମ୍ପୁ ଅଛଇ
ଘ. ଶରେ ଶରେ ପ୍ରହାର ଶର କରିବାରେ କମ୍ପୁ ଅଛନ୍ତି
୯ । ଘ. କରୁ ଅଛନ୍ତି
୧୦ । ଖ ଘ. ଯୁଦ୍ଧ
୧୧ । ଗ ଘ. 'ପାଠ' ନାହିଁ
୧୨ । ଖ. ପୋଥିରେ '୨୪' ପଦଟି ନାହିଁ

## ଦ୍ୱାବିଂଶ ଛାନ୍ଦ

ରାଗ—ଶ୍ରେଖୀ

ହରିହର କଲେ ରଣ　　　　କାହାରି ନୋହିଲା ଜଣ[1]
ଧନୁଶର ପକାଇଣ କୋପେ ଈଶ୍ୱର

କୃଷ୍ଣକୁ ଧଇଲେ ରୁଢ଼　　　　ଜାଣି ହର ଧନୁ[2] ଗୁଢ଼
ଭିଡ଼ାଭିଡ଼ ହୋଇଲେ ମାଲଙ୍କ[3] ଆକାର[4]
ପୃଥ୍ୱୀଦେବୀ ଆକୁଳ ହେଲେ[5]
ବେଦଜନ ପଢ଼ିଲେ ମରିବ ବୋଇଲେ[6] ॥୧॥

ଶୁଣି ହର ଅନାଇଲେ　　　　ବୃଷଭ ପାଶେ ମିଳିଲେ
ପୃଷ୍ଠେ ବିଜେ କଲେ[7] ଯାଇ ସେ ହରିହର

ଚଢ଼ି ପରେ ଜଡ଼ାଜଡ଼　　　　ଭିଡ଼ାଭିଡ଼ ଗଡ଼ାଗଡ଼
ପଡ଼ାପଡ଼ ଧରାଧରି[8] ଘୋର ସମର
ବେଦ ଦେବଙ୍କର ସମର[9]
କେ ଅବା ଲେଖି ପାରିବ ସଙ୍ଖ[10] କାହାର ॥୨॥

---

୧ । ଘ. ନୋହିଲେକ ହାରି ଜଣ
୨ । ଗ. ହେଲେ
୩ । ଖ ଘ. ମଲ୍ଲଙ୍କ
୪ । ଗ. ଉଚ୍ଚାଂଶେ
୫ । ଘ. ହେଲେକ
୬ । ଘ. ବୋଇଲେ
୭ । ଖ ଗ. ପୃଷ୍ଠ ବିସ୍ତାରିଲେ
　ଘ. ପୃଷ୍ଠ ବିସ୍ତାରିଲେ ଚଢ଼ି
୮ । ଗ. ଭିଡ଼ାଭିଡ଼ି ଧରାଧରି ପଡ଼ାପଡ଼ି ମାରାମାରି ସିହରଡ଼ି
　ଘ. ଧଡ଼ଧଡ଼ି ଭିଡ଼ାଭିଡ଼ୀ ଚଢ଼ାଚଢ଼ୀ ଗଡ଼ାଗଡ଼ୀ ମାରାମାରି ସିଂହରଡ଼ୀ
୯ । ପ୍ରହାର
　ଘ. ସେ ବେଦ ଦେବଙ୍କ ପ୍ରହାର
୧୦ । ଗ ସଙ୍ଖ୍ୟା

ଦେଖି ଗରୁଡ଼ ଧାଇଁଲେ ଦୂରକୁ ଗୋଡ଼ାଇ ନେଲେ[1]
ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ[2] ନିଜ କନ୍ଧେ ବସାଇ
ଜୟୁସେନ ଦୈତ୍ୟ ସାର କନ୍ଧେ ଲଭି ଧନୁଶର[3]
କରେ ଧରି କୃଷ୍ଣ ଆଗେ[4] ଉଗାଳେ ଯାଇ[5]
କୃଷ୍ଣ ତାଙ୍କୁ କଲେ ସମର[6]
ଯାଦବ ବଂଶକୁ[7] ମାରୁଛନ୍ତି ଶଙ୍କର[8] ।୩।

ମୃଗସେନ ସଙ୍ଗେ ରାମ ଯୁଝନ୍ତି ଘୋର ତମ
ଲଙ୍ଗଳ ବୁଲାଇ[9] କରି କୋପେ ଧାଇଁଲେ
ପିଟିଲେ[10] ଅସୁର ଶିରେ ମୃଗସେନ ଧରି[11] କରେ
ରାମ କରରୁ ହଳ ଛଡ଼ାଇ ନେଲେ[12]
ସେହି ହଳ କୋପେ[13] ବୁଲାଇ
ବଳରାମଙ୍କର ଶିରେ[14] ପ୍ରହାରେ ନେଇ ।୪।

ମୋହେ ପଡ଼ିଲେକ ରାମ ଦେଖି ଦୈତ୍ୟ[15] ଅତି ତମ
ହଳ ବୁଲାଇଣ ଚନ୍ଦ୍ରଂ କୋପେ ଧାଇଁଲା
ପିଟିଲା କୃଷ୍ଣ ଉପରେ ମୋହେ ଗଲେ ଅବନୀରେ
ଦେଖିକରି ଜୟୁସେନ ଆନନ୍ଦ ହେଲା
ଶିବ ଯନ୍ତ୍ରଂ[16] ବଳ ମାଇଲେ
ମାଳେନ୍ଦୀ[17] କନ୍ୟାକୁ ଚନ୍ଦ୍ରଂ ଛଡ଼ାଇ ନେଲେ ।୫।

---

୧ । ଖ ଗ ଘ. ଦୂରକୁ ଘୃଷାଇ ଦେଲେ
୨ । ଖ ଗ ଘ. ଶ୍ରୀକୃଷ୍ଣଙ୍କୁ ତୋଳି
୩ । ଗ ଘ. କରେ ଧରି ଧନୁଶର
୪ । ଖ ଗ ଘ. ଶ୍ରୀକୃଷ୍ଣ ଚନ୍ଦ୍ର କୁ ଦେଖି
୫ । ଗ. ଉଭାଳିଲେ ସେ
ଘ. ଉଗାଳିଲେ ଯାଇ
୬ । ଘ. କୃଷ୍ଣଙ୍କ କରନ୍ତି ସମର
୭ । ଗ. ଗଣଙ୍କୁ
ଘ. ଯାଦବଙ୍କୁ
୮ । ଖ. ଶଙ୍କର
୯ । ଘ. ଲଙ୍ଗଳ ବୁଲାଇ
୧୦ । ଖ ଘ. ପିଟନ୍ତେ
୧୧ । ଖ ଘ ଧରେ
୧୨ । ଘ. ରାମ କରୁ ହଳ ଛଡ଼ାଇ ନେଲାଗଲେ
୧୩ । ଖ ଘ. କୋପରେ
୧୪ । ଘ. ବଳରାମଙ୍କ ଶିରରେ
୧୫ । ଖ. ତମ
ଘ. କରି
୧୬ । ଗ. ଯଦ
୧୭ । ଗ. ନଳନ୍ଦବୁ

ତା ଦେଖି ନାରଦ ଗଲେ                    କଦମ୍ବ ବନେ ମିଳିଲେ
ପାଣ୍ଡବଙ୍କୁ କହିଲେ ସକଳ ଚରିତ
ଭୀମ ଅର୍ଜୁନ ନକୁଳ                    ସଙ୍ଗେ ଘେନ[1] ଧର୍ମରାଜ
ଅତ୍ୟନ୍ତ କୋପରେ ସେ ଧାଇଁଲେ ତୁରିତ[2]
ସେ ନାରଦ କଢ଼ାଇ ନେଲେ
ପାଣ୍ଡବେ ଶଙ୍କର ଆଗେ ଯାଇ ମିଳିଲେ[3] ॥୬॥
ଭୀମସେନ ମୃଗସେନ[4]                    ନକୁଳକୁ ଜୟସେନ[5]
ଶଙ୍କର ସଙ୍ଗେ ଅର୍ଜୁନ କଲେ ସମର
ଭୀମକୁ ସେ ମୃଗସେନ                    ମାଡ଼ି ବସିଲା ବଦନ
ଶତସିଂହଙ୍କୁ[6] ସୁମରି ପାଣ୍ଡବ ବୀର[7]
ଅସୁରକୁ[8] ବଳେ ଧଇଲେ
ଗଧାଏ ମସ୍ତକେ ତାର[9] ପ୍ରହାର କଲେ ॥୭॥
ମୃଗସେନ ମୁଣ୍ଡ ଚୂର[10]                    ପ୍ରାଣ ଛାଡ଼ିଲା ତାହାର[11]
ବେନପାଦ[12] ଧରି ବୁଲାଇଲେ ପାବେନ
କରି ଅତି କୋପମନ                    ପିଟିଲେ ସେ ଜୟସେନ
କ୍ଷଣେ ଘୂମାଇଁ ଅସୁର ପଡ଼େ ଅବନୀ
ଗୋଇଠାଏ ହୃଦେ ମାଇଲେ[13]
ରକତ ଉଦ୍‌ଗାର[14] ଜୟସେନହିଁ ମଲେ ॥୮॥

---

୧ । ଗ. ସଙ୍ଗେ ଘେନି
୨ । ଘ. ତୁରିତେ
୩ । ଙ. ପାଣ୍ଡବେ ସମରେ ଶିବଙ୍କୁ ଓଗାଳିଲେ
ଖ. ପାଣ୍ଡବେ ସମରେ ସିବଙ୍କୁ ଓଗାଳିଲେ
ଘ. ପାଣ୍ଡବେ ସମର ଓଗାଳିଲେ
୪ । ଗ. କମ୍ବୁସେନ
୫ । ଗ. ମୃଗସେନ
୬ । ଙ. ଶତସିଂହଙ୍କୁ
ଘ. ଦେବଙ୍କୁ
୭ । ଖ ଗ. ବାତ କୁମର
ଘ. ସୁମରଣି ବାତ କୁମର
୮ । ଖ ଗ ଘ. ବୃକୋଦର
୯ । ଘ. ତାର ମସ୍ତକେ
୧୦ । ଖ ଘ. ଚୂର୍ଣ୍ଣ
୧୧ । ଖ ଘ. ତାର ପାଦ
୧୨ । ଗ. ହୃଦେ ମାଧିଲେ
୧୩ । ଘ. ଭିମପାଦେ ପ୍ରହାର କଲେ
୧୪ । ଙ. ରକ୍ତ ଉଦ୍‌ଗାରଣ

ଦେଖି ବାସବ ନନ୍ଦନ  କଲେ ଅତି କୋପମନ
ମନ ଭେଦ ନାରାଚ[1] ଧନୁରେ ବସାଇ
ଆଜ୍ଞା ଦେଲେ ଯାଅ ଶର[2]  ଈଶ୍ୱରଙ୍କୁ[3] ବେଗେ ମାର
ଭେଦକୁ ଅଙ୍ଗେ ଶ୍ରେମଙ୍କ ନାଶେତେ ହୋଇ
ଶୁଣି ଶର ହରଷ ଚଢେ[4]
କଦମ୍ବ କୁସୁମ ପ୍ରାଏ ଭେଦ ଭୁଷରେ[5] ॥୯॥
ଧନୁ ଛୁଞ୍ଚଣ ଈଶ୍ୱର  ମୋହେ ପଡ଼ି ଅବନୀର
ନାରଦ ଦେଖିଣ କଇଳାସକୁ[6] ଗଲେ
ପାର୍ବତୀ ଆଗେ କହିଲେ  ଶୁଣି ଦେବୀ କୋପ କଲେ
ଦୁର୍ଗା ରୂପେ ସିଂହରେ ସେ[7] ବିଜୟେ କଲେ
ସହସ୍ରେକ ଭୁଜ ତାଙ୍କର
ପଞ୍ଚଶତ ଧନୁଶର ଧଇଲା କର[8] ॥୧୦॥
ସଙ୍ଗେ କୋଟିଏ[9] କଙ୍କାଳୀ  ଲକ୍ଷେ ସେନଲେ[10] ବେତାଳୀ
ଭଇରବୀ ବରାହ୍ମୀ[11] ଅସଂଖ୍ୟ ସଇନ
ପାଣ୍ଡବଙ୍କୁ ଓଗାଳିଲେ  ଦେବୀଏ ଗର୍ଜନ କଲେ
ଗଦାଧର ତାଙ୍କୁ ମାରୁଛନ୍ତି ପାବେନ[12]
ଧନୁଶରେ ଧରି ଅର୍ଜୁନ
ଦୁର୍ଗା ସମୀପେ[13] ପ୍ରବେଶ ହେଲେ ବହନ ॥୧୧॥

---

୧। ଘ. ଦେହ ନାରାଚ
୨। ଗ. ଶର
୩। ଖ. ଶଙ୍କରଙ୍କୁ
୪। ଗ. ହଶରେ
ଘ. ଶୁଣି ଶର ହର ଶରେର
୫। ଖ. ଦେଦଲୁ ସିରେ
ଗ ଘ. ଦେହଧନୁ ଫେରେ
୬। ଖ. କଇଲସକୁ
ଗ. କଇଲାସକୁ
୭। ଙ. ସିଂହ ପୃଷ୍ଠେ
ଗ. ସିଂହ ପରେ
ଘ. ଦୁର୍ଗା ରୂପେ ସିଂହ ପୃଷ୍ଠେ
୮। ଗ. ପଞ୍ଚଶତ ଧନୁ ଧରି ଅନ୍ତରୁ କରେ
୯। ଖ ଗ ଘ. କୋଟିଏ
୧୦। ଖ ଗ ଘ. ଲକ୍ଷେକ ସେନା
୧୧। ଗ. [illegible]
ଘ. [illegible]
୧୨। ଖ ଗ ପାବନ
୧୩। ଘ. ଦୁର୍ଗା ସମୀପେ

ପାର୍ଥ ଦେଖି କୋପମନ ପେଷନ୍ତେ ଶର ବହନ
ରହ ରହ ବୋଲଣ ପାର୍ବତୀ ଡାକଲେ

ଶିଷ୍ୟ-ପୁତ୍ର ହୋଇ କର କର୍ମା ନାଗଚ ପ୍ରହାର
ଉଦ୍ୟାନର କଲ୍ୟାଣ[1] ଭୁ ଦୁଅ ବୋଇଲେ
ଶୁଣି ପାର୍ଥ ଧନୁ ଛାଡ଼ିଲେ
ପାର୍ବତୀଙ୍କ ପାଦେ ଯାଇ ପ୍ରସନ କଲେ ॥୧୨॥

ଦୁର୍ଗା ସିଂହରୁ ଉତରି[2] [3]ଅର୍ଜୁନକୁ କୋଳେ ଧରି[3]
ଶାନ୍ତ ମୂର୍ତ୍ତି[4] ହୋଇଲେ ସେ ଦେବୀ ସର୍ବାଣୀ

ଶ୍ରୀମ ସମସ୍ତ[5] ରହିଲେ[6] ଦେବୀ ଏ ଅନ୍ତର ହେଲେ
ଅର୍ଜୁନକୁ ସ୍ବୟଂ ଦେବୀ ବଚନ[7] ଭଣି
ଦେଖ ଦଶଦର ସମର[8]
ମୋତେ ପଢ଼ିଛନ୍ତି ରାମ ଆଦି କୁମର[9] ॥୧୩॥

ବ୍ରହ୍ମାଙ୍କୁ କରନ୍ତୁ[10] ଧ୍ୟାନ ଆସନ୍ତୁ ଚତୁରାନନ
ଶୁଣି ବଧାତାକୁ ଲପ୍ୟେ କଲେ ଅର୍ଜୁନ[11]

ବ୍ରହ୍ମା ଦେବ ପୁରନ୍ଦର[12] ଯମ ପବନ କୁବେର
ଅନନ୍ତ[13] ସଙ୍ଗରେ ସର୍ବେ ଆସି ବହନ[14]
ଦେଖି କର ସ୍ତୁତି ପାଣ୍ଡବେ
ବ୍ରହ୍ମାଙ୍କୁ ପ୍ରସନ କଲେ ଆନନ୍ଦ ଭାବେ ॥୧୪॥

---

୧ । ଖ. କରଣ
୨ । ଘ. ଦୁର୍ଗା ସୀଂହରୁ ଉତୁରି
୩ । ଗ. କୋଳୀ ଧରି
୪ । ଖ. ଶାନ୍ତ ମୂର୍ତ୍ତି
ଗ. ଶାନ୍ତ ମୂର୍ତ୍ତ
ଘ. ଶାନ୍ତୀ ମୂର୍ତ୍ତି
୫ । ଖ ଗ ଘ. ସମରେ
୬ । ଗ. କହିଲେ
୭ । ଖ ଗ ଘ. ବୁଦ୍ଧିକର ପାର୍ବତୀ
୮ । ଘ ସମରେ
୯ । ଘ. କୁମରେ
୧୦ । ଖ. କରନ୍ତୁ
୧୧ । ଖ ଘ. ପାର୍ଥିବ
୧୨ । ଖ ପୁରନ୍ଦର
୧୩ । ଖ. ଅନଳ
୧୪ । ଖ ଘ. ଅଚ୍ଛନ୍ତି ଦେବ

ଯୋଡ଼କର କର ବେନ                                    ଜଣାଇଲେ ଫାଲଗୁନ
ହରହର[1] ବେନକୁଳ ଅଛନ୍ତି ପଡ଼ି
କ୍ଷେ ଦେବ ତୁମ୍ଭ ପ୍ରସନ୍ନ                                    ଏହାଙ୍କୁ କର ଚେତନ[2]
କେବଳ ମାତ୍ରକ ବେନ ଅସୁର ଗୁଡ଼ି
ଶୁଣି ବ୍ରହ୍ମା ସମସ୍ତୁ ସେନ
ଛିନ୍ନ ପିଣ୍ଡମାନ ଏକ କରନ୍ତି ବେନ[3] ॥୧୫॥
ହୃଦୟ ଶର[4] କାଢ଼ନ୍ତି                                    ପ୍ରାଣ[5] ମୁଖରୁ ଫୂଙ୍କନ୍ତି
ଜଡ଼ିତ ଅଉଷଧି[6] କରନ୍ତି ଲେପନ
ଇନ୍ଦ୍ର ସୁଧା ବୃଷ୍ଟି କଲେ                                    ଉଠ ବ୍ରହ୍ମା ଡାକ ଦେଲେ[7]
ଅଶାବେ ଜୀବନ ନେଇ[8] ଦେଲେ ଶମନ
ଗନ୍ଧର୍ବେ ଦୁନ୍ଦୁଭି ବାଇଲେ[9]
ସମସ୍ତେ ହେ ଏକାବେଳେ ଉଠି ବସିଲେ[10] ॥୧୬॥
ଆନନ୍ଦାନନ୍ଦ କୁମର                                    ପ୍ରଦ୍ୟୁମ୍ନ ସର୍ବ[11] ସୋଦର
ବରୁଣ ଆଦ କଶଣ ସର୍ବ[12] ସଇନ
ଗଣେଶ କାର୍ତ୍ତିକେଶ୍ୱର[13]                                    ଶିବଗଣଙ୍କ ଆବର
ଦ୍ୱାରକା ସଇନମାନେ ଜୀବନ ସେନ[14]
ରାମକୃଷ୍ଣ ହର ଉଠିଲେ
ଦେଖିଣ ସମସ୍ତେ ମନେ ଆନନ୍ଦ ହେଲେ[15] ॥୧୭॥

---

୧ । ଗ କାରଣ
୨ । 'ଗ' ପୋଥିରେ ଏହି ପାଠ ନାହିଁ
୩ । ଘ. ଏ କରନ୍ତି ବେନ
୪ । ଗ. ସର
୫ । ଖ ଗ. ପ୍ରଣ
ଘ. ପ୍ରଣ ମୁଖରେ
୬ । ଖ. ମହୌଷଧି
ଗ. ମୌଷଧି ସେ
ଘ. ମହଉଧି
୭ । ଗ. ବ୍ରହ୍ମା ଉଠେ ଡାକ ଦ୍ୟନ୍ତି
୮ । ଘ. ଜୀବନ୍ତ ନେଇ
୯ । ଗ. ବାଇଲେ
ଘ ପିତୃଗ ବାସବ ସିଞ୍ଚିଲେ
୧୦ । ଗ. ବହନ
ଘ. ସମସ୍ତେ ଏକାବେଳେକେ ଉଠୀ ବସିଲେ
ଖ. ଗଣେଶ କାର୍ତ୍ତିକେଶ୍ୱର ଶିବଗଣ ହିଁ
ଆବର
ଦ୍ୱାରକାର ସଇନମାନେ ଜୀବନ ସେନା
(ଅଧିକ ପାଠ)
୧୧ । ଖ. ପ୍ରଦମ୍ନ
ଘ. ପଦ୍ମନ ସର୍ବ
୧୨ । ଘ. ଭଣ ସର୍ବ
୧୩ । ଘ. ଗଣ କାର୍ତ୍ତିକେଶ୍ୱର
୧୪ । ଗ. ଜୀବନ ପାଇଁ
ଘ. ଆବର୍ ସେନ
୧୫ । ଖ ଘ. ଦେଖିକଣ ସକଲେ ଆନନ୍ଦ
ହୋଇଲେ
ଗ. ଦେଖିକଣ ସକଲେ ଆନନ୍ଦ ହୋଇଲେ

ବ୍ରହ୍ମା ଦେଖି ଥରଥର[1] କହନ୍ତି ତାଙ୍କୁ ଉତ୍ତର
କାହିଁ ପାଇଁ ତୁମ୍ଭ ବେନି[2] ସମର ହେଲ[3]

କହନ୍ତି ସେ ତ୍ରିଲୋଚନ ଶୁଣ ହେ ଚତୁରାନନ
ବରୁଣ ଦେବତା ଏତେ ଅନର୍ଥ[4] କଲା
ଜାଣଇ ନା ତାହାର[5] ନାଶ
ବାଳକାଙ୍କୁ କନ୍ୟା ଆମ୍ଭେ ଥିଲୁ ନା କରି[6] ॥୧୮॥

ଶ୍ରୀକୃଷ୍ଣ ବୋଇଲେ ଧାତା ଶୁଣ ଆମ୍ଭର ବାରତା
ବରୁଣ ଘର ଆଣିଲେ ଆନନ୍ଦାନନ୍ଦ

କାର୍ତ୍ତିକ କୋପେ ଅଇଲେ ଆମ୍ଭ ପୁଅଙ୍କୁ ମାଇଲେ
ତାହା ପ୍ରକାରରୁ ଏବେ ହୋଇଲା[7] ଦ୍ୱନ୍ଦ
ବ୍ରହ୍ମା ବୋଲେ ଶୁଣ ଈଶ୍ୱର
ସର୍ବେ ମେଳ ହୋଇ[8] ଚାଲ ବରୁଣ ପୁର ॥୧୯॥

ଆନନ୍ଦାନନ୍ଦ କୁମର ସଙ୍ଗତେ କାର୍ତ୍ତିକେଶ୍ୱର
ବରବେଶ କରି ଅଶ୍ୱ କରିବା ନେଇ

କନ୍ୟା ଧରି ପୁଷ୍ପମାଳା ଦେବନ୍ତି ଯାହାର ଗଳା
ତାହାକୁ ବଶ କରିବା ସୁମେଳ[9] ହୋଇ
ସନମତ ସକଳ କଲେ
ବରୁଣ ଭୁବନେ ଯାଇ[10] ପ୍ରବେଶ ହେଲେ ॥୨୦॥

---

୧। ଘ. ବ୍ରହ୍ମା ସ୍ୱୟଂ ଥର
୨। ଖ ଘ. ବେନି ଦେବ
୩। ଗ. କଲ ସମର
୪। ଘ. ଏ ଅନର୍ଥ
୫। ଘ ଜାଣନ୍ତି ତାହାର
୬। କ. କରି
ଗ ଘ. ଥିଲୁ ସେ କରି
୭। ଗ ତାହା ପ୍ରକାରରୁ ଏବେ ହୋଇଲା
ଘ. ହୋଇଲା ଅନର୍ଥ
୮। ଗ ଘ. ସକଳେ ସୁମନେ
ଙ. ସକଳ ସୁମେଳେ
୯। ଖ ଘ. ସମେଳ
୧୦। ଖ ଘ. ସର୍ବେ

 କେଉଁ କୁମରଙ୍କୁ ବର      କେଶ କରଣ ସୁନ୍ଦର

କୁସୁମ ମାଳା କନ୍ୟାର ହସ୍ତରେ ଦେଲେ

କହନ୍ତିରେ ଶ୍ରୀମାଧବ      ଏ କେଉଁ ଅଟନ୍ତି ବର

ତୋ ଇଚ୍ଛା ଯାହାଙ୍କୁ ହେବ ବର ବୋଇଲେ

ଶୁଣି କନ୍ୟା ତାଙ୍କୁ ଚାହିଁଲେ

ଷଡ଼ ମସ୍ତକ ତାଙ୍କର କଣ୍ଠେ ଦେଖିଲେ[୧] ॥୨୧॥

ବଳରାମଙ୍କ ନନ୍ଦନ      ସାକ୍ଷାତ କିଏ ମଦନ

ତାଙ୍କ କଣ୍ଠେ ପୁଷ୍ପମାଳା[୨] ଦେଲା ତରୁଣୀ[୩]

ଶ୍ରୀକୃଷ୍ଣ ଆନନ୍ଦ ହେଲେ      କରୁଣ ତାହାଙ୍କୁ ନେଲେ

ରତ୍ନବେଦୀରେ ତାହାଙ୍କୁ ବସାଇ ଆଣି[୪]

ବ୍ରହ୍ମା ଶିବ ସକଳେ ଦେବେ

ବଶ କରାଇଲେ ତାଙ୍କୁ ବଡ଼ ଉତ୍ସବେ[୫] ॥୨୨॥

ବରୁଣ ସନ୍ତୋଷ ହେଲେ[୬]      ବହୁ ସଜ୍ଜଭୂଜ ଦେଲେ

ବରୁଣ ପୁରେ[୭] ସକଳେ କଲେ ଭୋଜନ[୮]

ରାମକୃଷ୍ଣ କନ୍ୟା ବର      ଯେଉଁଣ ଦ୍ୱାରକା ପୁର

ପରବେଶ ହୋଇଲେ ସେ ଆନନ୍ଦ ମନ

କଇଳାସେ ଈଶ୍ୱର ଗଲେ

ପାଣ୍ଡବେ କଦମ୍ବ ବନେ ପ୍ରବେଶ ହେଲେ ॥୨୩॥

---

୧। ଖ ଘ. ବ୍ରହ୍ମା କହନ୍ତି ସୁନ୍ଦରୀ କେଉଁଜଣ ଏକ ବର ପ୍ରଇଚ୍ଛା ହୋଇବ ଯାକୁ ବୋଲି ବୋଇଲେ
ପୁଣି କନ୍ୟା ତାଙ୍କୁ ଚାହିଁଲେ
ବାଳକର ଛଶିର କାର୍ତ୍ତିକ ଦେଖିଲେ

ଗ. କହନ୍ତି ପୁଣ ସୁନ୍ଦରୀ କେମା ଜଣେ ଯେତେକ କର ସ୍ୱଇଚ୍ଛା ଯାହାଙ୍କୁ ତୋର ବୋଇଲେ
ପୁଣି କନ୍ୟା ତାଙ୍କୁ ଚାହିଁଲେ, ବାଳକର ଛଶିର କାର୍ତ୍ତିକ ଦେଖିଲେ

ଘ. ବାଳକର ଛଅଶିର କାର୍ତ୍ତିକଙ୍କୁ ଦେଖିଲେ

୨। ଗ. ପୁଷ୍ପମାଳା

ଘ. ଦିଏ ତରୁଣୀ

୩। ଖ. ସୁନ୍ଦରୀ

୪। ଘ. ବସାନ୍ତି ଆଣି

୫। ଗ. ଉତ୍ସବେ

ଘ. ବଶ କରନ୍ତି ତାଙ୍କୁ

୬। ଖ ଘ. ତୋଷ ହୋଇଲେ

୭। କ. ପୁର

୮। ଘ. କଲେ ଭୋଜନ

ଦେଖେ ଗଲେ ସୁର ପୁର    ଜଣ୍ଡକ ସେ[9] ବରୁଣର
ବ୍ରହ୍ମା ଯଶବନ୍ତୀ[10] ପୁରେ ହେଲେ ପ୍ରବେଶ
ଶୁଣିମା ହେ ସାଧୁଜନ    ଦୟାନିଧି ଭଗବାନ
ତାଙ୍କ ମାୟାରୁ ବଳନ୍ତ କହିଁ ପୁରୁଷ
ତାହାଙ୍କର[11] ବେନି ଚରଣ
ଦୀନ ବିଶ୍ୱମ୍ଭର ଚକ୍ଷି ପଶେ[12] ଶରଣ ॥୨୭॥

୯ । ଚ. ଜବଦେ ସେ
୧୦ । ଖ ଗ ଘ. ଯଶୋବନ୍ତୀ
୧୧ । ଘ. ତାହାଙ୍କ
୧୨ । ଖ ଘ ମାଗେ

## ତ୍ରୟୋବିଂଶ ଛାନ୍ଦ

ରାଗ—ଆହାରି[1]

ପଞ୍ଚ ପାଣ୍ଡବେ ଦ୍ରୌପଦୀ ଆଦି ସର୍ବେ[2] ସକଳ ଋଷିଗଣ ଭୁଲେ[3]
କଦମ୍ବ ବନ ତେଜି କରି ସତ୍ୱରେ ପଶ୍ଚିମ ମୁଖେ[4] ଚଳିଗଲେ
ଏମନ୍ତେ, ବହୁତ ଦିନ ଗଲେ[5] କଟି
ମଳୟ ବନରେ ପ୍ରବେଶ ହୋଇଲେ ଭୂଭାରତରେ ଯେ ଧର୍ମମଣି[6] ॥୧॥
ବିଶ୍ୱାମିତ୍ର ମହାମୁନି[7] କହୁଛନ୍ତି ଶୁଣିବା ହେ ଧର୍ମନନ୍ଦନ
ପୂର୍ବେ ଏ ବନରେ ବେହାର କଲେଟି ଅଞ୍ଜନାକୁ ଘେନି ପବନ[8]
ସର୍ବଦା, ମଳୟ ଏଥିରେ ବହଇ
ସକଳ ବୃକ୍ଷ ହୋଇଛନ୍ତି ଚନ୍ଦନ ମଳୟ ପବନ[9] ବୋଲାଇ ॥୨॥

---

୧ । ଘ. ରାଗ କଲ୍ୟାଣ ଆହାରି
୨ । ଖ. ଦକ୍ଷିଣରେ
ଗ. ଦ୍ରୌପଦୀ ସହିତରେ
ଘ. ଦ୍ରୁପଦୀ ଘେନି ଚଳିଲେ
୩ । ଘ. ସକଳ ମୁନି ଚଳିଲେ
୪ । ଖ. ଦିଗେ
୫ । ଘ. ଦିନ ଗଲେ
୬ । ଗ. ଭୂଭାରତେ ଧର୍ମ ରୂପମଣି
ଘ. ଭୂଭାରତେ ଧର୍ମ ଧୁରମଣି
୭ । ଘ. ବିଶ୍ୱାମିତ୍ର ମହାଋଷି
୮ । ଘ. ପୂର୍ବେ ବନରେ ଅଞ୍ଜନାକୁ ଘେନିଣ
ବେହାର କଲେଟି ପବନ
୯ । ଗ ଘ. ହୋଇଛନ୍ତି ଚନ୍ଦନ ମଳୟ ବନ ଏ

ଅବସନ୍ତରେ ବସନ୍ତ ଯେଉଁ ବନ ଅଛନ୍ତି ଦ୍ରବ୍ୟ ଦୂ ଫଳ
ସରିତା ନାମେ ନଦୀ ଏକ ବହୁଛନ୍ତି[1] ସେ ଜଳ ଅତ୍ୟନ୍ତ ନିର୍ମଳ
ଏଥିରେ ରହିବା ଆମ୍ଭେ ସ୍ନାନ କରି
ଶୁଣି ଧର୍ମସୁତ ଆନନ୍ଦ ହୋଇଲେ ରଚିଲେ[2] ପର୍ଣ୍ଣଶାଳା ସୁଖୀ ॥୩॥
ତହିଁରେ ପାଣ୍ଡବେ ନିଷ୍ଠି ନ୍ତେ ରହିଲେ ସକଳ ତପୀଗଣ ସେବି
ଦ୍ରବ୍ୟ ଫଳ ମୂଳ ଆହାର କରିଣ ବଞ୍ଚନ୍ତି ଦିବସ ରଜନୀ[3]
ଏ ରୂପେ କେତେ ସମୟ ତହିଁ ଗଲା
ଦିନେକ ନକୁଳ କୁମାର ଏକାନ୍ତେ ଅରଣ୍ୟ ଭ୍ରମିବାକୁ ଗଲା ॥୪॥
ଧର୍ମନନ୍ଦନ ଆଜ୍ଞାରେ ଗଣ୍ଡା ଜୀବ ଲୋଡ଼ଇ ବନ[4] ଲତା ଗିରି
ବଂଶମାନେ ଯାଇ[5] ପ୍ରବେଶ[6] ହୋଇଲା ଗଣ୍ଡା ଖୋଜଇ ଅନୁସରି[7]
ନକୁଳ, ଦେଖିଲେ ରେବାସୁର ଦୈତ୍ୟ
ବୋଲଇ ମାନବ ମୋ ମୁଖେ ପଡ଼ିଲୁ କ୍ଷୁଧାରେ ମୁଁ ବଡ଼ ଆରତି[8] ॥୫॥
ଯେତେ କହି ରେବାସୁର ଉଠି କରି ନକୁଳର କର ଧଇଲା[9]
ଯେମନ୍ତ ଦେଖି ଅସୁରକୁ ନକୁଳ କୁମାର ଯେ ରୂପେ[10] କହିଲା
ହେ ବୀର, ଧର୍ମନନ୍ଦନ ଛନ୍ତି ପେଷି
ତାହାଙ୍କ ଆଜ୍ଞାରେ ଗଣ୍ଡାଜୀବ ମୁହିଁ ଲୋଡ଼ୁଛି ଅରଣ୍ୟରେ ପଶି ॥୬॥

---

୧ । ଗ. ନଦୀଏ ବହୁଅଛି
ଘ. ନଦୀ ଏଥି
୨ । ଖ ରଚିଲେ
ଘ. ଆନନ୍ଦ ହୋଇଣ ରଚିଲେ ପୂର୍ଣ୍ଣସାଲା
୩ । ଗ. ରଜନୀ
ଘ ମୂଳ ଭୋଜନ କରିଣ ବଞ୍ଚିଲେ
୪ । ଘ. ଲୋଡ଼ନ୍ତି ବନ
୫ । ଖ. ରେବା ନଦୀତୀରେ
ଗ. ବଂଶମାଳରେ
୬ । ଗ. ପରବେଶ
୭ । ଘ. ରେବାନଦୀ ତୀରେ ପ୍ରବେଶ ହୋଇଲେ
ଲୋଡ଼ନ୍ତି ଗଣ୍ଡା ଅନୁସରି
୮ । ଦ: ମୁଁ ବଡ଼ କ୍ଷୁଧାରେ ଆରତ
୯ । ଖ ଏତେ ବୋଲିକରି ରେବାସୁର ଉଠି
ନକୁଳଙ୍କ କେଶ ଧଇଲା
ଗ. ଏତେ କହି ଉଠି ରେବାସୁର ଦୈତ୍ୟ
ନକୁଳର କର ଧଇଲା
ଘ. ନକୁଳଙ୍କ କର
୧୦ । ଖ ଗ. ଦେଖିଣ ଅଶ୍ୱିନୀ କୁମାର
ତାହାକୁ
ଘ. ଏମନ୍ତ ବଚନ ଅଶ୍ୱିନୀ କୁମାର ବୋଲଇ
ତାହାକୁ

ତାହାଙ୍କୁ କହଣ ଭୂମ୍ଭ ପାଶେ ମୁହିଁ ଆସିବି[1] 'ଶନିବାର ଦୈତ୍ୟ
ନକୁଳ ତହୁଂ ଏମନ୍ତ ଶୁଣିକରି ଛାଡ଼ିଲା ରେବାସୁର ଦୈତ୍ୟ
ବୋଲଇ[2] ବନ୍ଦନ ଆସିବୁଟି ସାର
ଦୈତ୍ୟ କଳକୁ ଭୂମ୍ଭଙ୍କୁ ଛାଡ଼ି ଅଛୁଁ[3] ଖୁଧାରେ ଆକୁଳ ଶରୀର ॥୭॥

ଏମନ୍ତ କହନ୍ତି ରେବାସୁର ଦୈତ୍ୟ ଗଣ୍ଡା ଗୋଟିଏ[4] ଆଣିଦେଲେ
ସେ ଗଣ୍ଡାକୁ ଦେଖି ଅଶ୍ୱିନୀ କୁମାର[5] ଅତ୍ୟନ୍ତ ହରଷ ହୋଇଲେ
ନକୁଳ, ବାହୁଡ଼ିଣ ତହୁଂ ଅଇଲେ
ଯୁଧିଷ୍ଠିର ଦେବଙ୍କୁ ପ୍ରସନ୍ନ କରିଣ ସକଳ ବୃତ୍ତାନ୍ତ କହିଲେ ॥୮॥

ଦୈତ୍ୟ କହଇ ଅସୁରକୁ ଅଇଲି[6] ଯାଉଛୁ ଏବେ ତାର ପାଶ
ରଖିଲେ ରଖୁ ମାଇଲେ ମୋତେ ମାରୁ ଶୁଣି ବିରସ ଧର୍ମସୁତ[7]
ବୋଲନ୍ତି, ମାରୁତି ଯାଅ ତୋର ସଙ୍ଗେ[8]
ଅସୁର ଯେବେ କଟାଳିବ ଭୂମ୍ଭଙ୍କୁ[9] ତାକୁ ମାରିବ ରଣ ରଙ୍ଗେ ॥୯॥

ଶୁଣି ଭୀମସେନ ନକୁଳକୁ ଘେନି ତୁରିତେ ତହୁଂ ଚଳିଗଲେ
ବଂଶମାନେ ଯାଇ[10] ରେବାସୁର ଦୈତ୍ୟ ଆଶ୍ରମ ନିକଟେ ମିଳିଲେ[11]
ବୋଲନ୍ତି, ମାରୁତି[12] ଯାଅ[13] ତାର ପାଶ
ଜଗତର ଭୂତ୍ୟ ମୋତେ ଡାକଦେବୁ ଯେବେ କଟାଳିବ ରାକ୍ଷସ[14] ॥୧୦॥

---

୧ । ଙ ଘ, କହ ଭୂମ୍ଭ ପାଶେ ଅସିବି ଏ ମୋର
୨ । ଘ, ବୋଧେଁ
୩ । ଘ, ଛାଡ଼ି ଅଛି ଦେଖ ମୋର
୪ । ଘ, ଗୋଟିଏ
୫ । ଘ, ଅଦ୍ଭୁତ ନନ୍ଦନ
୬ । ଙ ଅଣିଛୁ
ଘ ଆସିଛୁ
୭ । ଖ ଧର୍ମଶିଶ
ଘ, ଧର୍ମଶିଶ
୮ । ଘ, ଭୂମ୍ଭ ସଙ୍ଗେ
୯ । ଘ, ଭୂମ୍ଭଙ୍କୁ କଟାଳିବ
୧୦ । ଙ ରେବାନଦୀ ତୀରେ
୧୧ । ଗ, ପ୍ରବେଶ ହୋଇଲେ ରେବାସୁର ଦୈତ୍ୟ ଆଶ୍ରମେ
୧୨ । ଖ ଘ, ମାରୁତି ବୋଲନ୍ତି
୧୩ । ଙ ନାହିଁ
୧୪ । ଖ, ଭୟ କରି ଡାକେ ଦେବୁ ଯେବେ ତୋତେ କଟାଳିବ ଯୁଦ୍ଧ ରାକ୍ଷସ

ଶୁଣି ନକୁଳ ସତ୍ୱରେ ଚଳିଗଲେ[1] ପ୍ରବେଶ ରେବାସୁର ପାଶେ[2]
ନକୁଳ ସତ୍ୟ ଦେଖିକରି ଅସୁରଁ କୋଳେ ଧଇଲା ସେ ହରଷେ[3]
ଅସୁର, ଅନେକ ଭୂଷଣ ମଣ୍ଡିଲା
ତୁ ମୋର ନନ୍ଦନ ବୋଲିଣ ଆନନ୍ଦେ ଉଣ୍ଡ ବଦନେ[4] ଚୁମ୍ବ ଦେଲା ॥୧୧॥

ତୋ ସତ୍ୟ ବୁଝିଲା ଯାଅ ତୋର ବାସ ଶୁଣି ନକୁଳ ଲେଉଟିଲେ
ଶୁଣି[5] ଭୀମସେନ ଆନନ୍ଦ ହୋଇଣ ନକୁଳଙ୍କୁ ଘେନ ଅଇଲେ[6]
ଯୁଧିଷ୍ଠି, ଚରଣେ କରନ୍ତି ଦ୍ୱସନ
ରେବାସୁର କଥା ଶୁଣିଣ ଆନନ୍ଦ ହୋଇଲେ ଧର୍ମଙ୍କ ନନ୍ଦନ ॥୧୨॥

ଏମନ୍ତେ କେତେମାସ ରହି ପାଣ୍ଡବେ ସେବନ ତେଜି ଚଳିଗଲେ
ଅତ୍ୟନ୍ତ ସୁନ୍ଦର ଦିବ୍ୟ ତରୁବର ପତିବ୍ରତା ବନେ ମିଳିଲେ
ଦେଖନ୍ତି, ବିବିଧ ବର୍ଣ୍ଣେ ତରୁ ଜାତି
ଜାମ୍ବୁ ଜମ୍ବିଲ କଦଳୀ ଟଭ ପାଶଣ ପଡ଼ୁଛନ୍ତି ଝଡ଼ି ॥୧୩॥

ଅତ୍ୟନ୍ତ ନିର୍ମଳ ଦେଖିଣ ସେବନ[7] ଯୁଧିଷ୍ଠି ଦେବ ହେଲେ ତୋଷ
ଋଷିଙ୍କ ଗୃହଁ ପରୁଷନ୍ତି ଏ ବନ କୁସୁମେ ଅତ୍ୟନ୍ତ ସୁବାସ
ମଳୟ ପବନ ସୁଧୀରେ ବହଇ
ଦିବ୍ୟ ଫଳମାନେ ପଡ଼ୁଛନ୍ତି[10] ତଳ ଏ ମୋର ମନକୁ ମୋହଇ ॥୧୪॥

---

୧ । ପ. ଚଳିଗଲେ
୨ । ଭ. ଶୁଣି ନକୁଳ ପରବେସ ହୋଇଲେ ପ୍ରବେସ ରେବାସୁର ଦୈତ୍ୟ
୩ । ଦେଖିକରି ଦାନବ
୪ । ଖ ପ. ସ୍ନେହବସେ
୫ । ଭ. ପାଠ ନାହିଁ
୬ । ଖ ପ. ଦେଖି
୭ । ଖ ଗ ପ. ନକୁଳ ସେନ ଚଳିଗଲେ
୮ । ଗ ଫଳେ
୯ । ପ. ସେ ବନ ଦେଖିଣ
୧୦ । ପ. ଫଳମାନ ପଡ଼ିଛନ୍ତି

ପତିବ୍ରତା ବନ କେହ୍ନେ ନୋଲ଼ଇଲା ଶୁଣିଣ ଲଗୁ ମୋର ମନ[୧]
ମାର୍କଣ୍ଡ ଋଷି କହିଣ ବୋଲନ୍ତି ଶୁଣ ହେ ଯୁଧିଷ୍ଠି ରାଜନ[୨]
ପୂର୍ବେ ସେ, ଅଶ୍ୱପତି ନାମେ ନୃପତି
ଅତ୍ୟନ୍ତ ସୁନ୍ଦରୀ ସାବିତ୍ରୀ ନାମରେ ଅଟଇ ତାହାର ଦୋହିତା[୩] ॥୧୫॥

ଦ୍ୟୁମତ୍ସେନ ପୁତ୍ର[୪] ସତ୍ୟବନ୍ତକୁ ସେ ସାବିତ୍ରୀ ହୋଇଲେକ[୫] ବଶ
ରତି କାମ ପ୍ରାଏ ସେ ବେନି ସୁନ୍ଦର କହିବା କହିବା ତାଙ୍କ ଶୋଭ
ରାଜନ, ସେ ଦ୍ୟୁମତ୍ସେନ[୬] ନୃପବର[୭]
ଧର୍ମବନ୍ତ ତାର ବେନି ନେତ୍ର ଅନ୍ଧ ସୁପ୍ରଭା ନାମେ ରାଣୀ ତାର[୮] ॥୧୬॥

ସେ ରାଣୀ ଚକ୍ଷୁ ବେଦନା ବଶୁଂ ପୁଣ ତାହାର ନେତ୍ର ଗଲା
ବିବାଦ କରିଣ ଏକଇ ରାଜନ ତାର ରାଜ୍ୟ ବଳେ ହରିଲା[୯]
ରାଜନ, ରାଜ୍ୟ ଛାଡ଼ିଣ ଦ୍ୟୁମ୍ନସେନ[୧୩]
ପତ୍ନୀ ପୁତ୍ରବଧୂ ପରିଜନ ଘେନି ପ୍ରବେଶ ହେଲା ସେହି ବନ[୧୪] ॥୧୭॥

କ୍ରମେ ସକଳେ ସଙ୍ଗରୁ[୧୨] ପଳାଇଲେ ରହିଲେ ମାତ୍ର ଗୃହ ପ୍ରାଣୀ
ସାବିତ୍ରୀ ସତ୍ୟବନ୍ତଙ୍କୁ ସଙ୍ଗେ ଘେନି ରହିଲେ ସେ ଅନ୍ଧ ଅନ୍ଧୁଣୀ
ରାଜନ, ସେ ସତ୍ୟବନ୍ତ ନୃପସୁତ[୧୦]
ବନରୁ ଫଳମୂଳ ଜଳ ଆଣିଣ ତୋଷନ୍ତି ପିତା ମାତା ଚିତ୍ତ[୧୧] ॥୧୮॥

ସାବିତ୍ରୀ କର ଧରି ପଥ କଢ଼ାଇ ସାନ ନିତ୍ୟକର୍ମ କରାନ୍ତି
ଏ ରୂପେ ସାବିତ୍ରୀ ସତ୍ୟବନ୍ତ ଘେନି ଅନ୍ଧ ଅନ୍ଧୁଣୀକି ପାଳନ୍ତି
ରାଜନ, କେତେ ସମୟ ବହିଗଲା
ହେନେକ ସାବିତ୍ରୀ ଶାଶୁ ଶ୍ୱଶୁରଙ୍କ ଚରଣେ ବଡ଼ ଭକ୍ତି କଲା[୧୫] ॥୧୯॥

---

୧ । ପ. ଏଥି
୨ । ପ. ଧର୍ମ ନୃପବର
୩ । ପ. ଦୁହିତା
୪ । ଦ୍ୟୁମ୍ନସେନ
୫ । ପ. ହୋଇଲେ
୬ । ଖ. ଦ୍ୟୁମ୍ନସେନ
୭ । ପ. ନୃପବର
୮ । ପ. ବର
୯ । ପ. ଘେନିଲା
୧୦ । ପ. ସେହି ସତ୍ୟବନ୍ତ ନୃପସୁତ
୧୧ । ପ. ବନରୁ ଫଳ ମୂଳ ଆଣି ତୋଷନ୍ତି ପିତା ମାତା ଚିତ୍ତ
୧୨ । ପ. ଜନ୍ମେ ସଙ୍ଗକୁ ପଳଲେ
୧୩ । ପ. ରାଣୀ ଘେନିଣ ଦ୍ୟୁମତ୍ସେନ
୧୪ । ପ. ପତ୍ନୀ ପୁତ୍ରବଧୂ ପରିଜନ ଘେନି ପ୍ରବେଶ ହୋଏ ଏହି ବନ
୧୫ । ପ. ପୋଥିରେ ୧୯ ପଦଟି ନାହିଁ

ଚରଣେ ପଡ଼ି କର ଯୋଡ଼ି ଜଣାନ୍ତି ଶୁଣିମା ହେଉ ସାବଧାନେ
ଶୁଣିଣ ଆଜ୍ଞା ଦେଲେ ଫଳମୂଳ ଆଣିମାକୁ ପୁତ୍ରଙ୍କ ସଙ୍ଗେ ଯିବ ବନେ
ଶୁଣିଣ, ଶାଶୁ ଶ୍ୱଶୁର ଆଜ୍ଞା ଦେଲେ
ସତ୍ୟବନ୍ତଙ୍କର ସଙ୍ଗରେ[୧] ସାବିତ୍ରୀ ସେହିନ ବନେ ଭ୍ରମିଗଲେ ॥୨୦॥

ଏମନ୍ତେ ବନେ ଫଳମୂଳ ଖେଉନ୍ତେ ମଧ୍ୟସ୍ଥାନରେ ଡନକର[୨]
ସତ୍ୟବନ୍ତ କହେ ଶୁଣିମା ସାବିତ୍ରୀ ବ୍ୟାକୁଳ ହୋଏ ମୋ ଶରୀର
ନୟନେ, ନିଦ୍ରା ଆସିଣ ଉପଗତ
ତୁମ୍ଭେ ସେ ମୋର ପାଶରେ ଜଗି ବସ ମୋ ତନୁ ଅନ୍ତ[୩] ଅସକତ ॥୨୧॥

ସାବିତ୍ରୀ କୋମଳ ପତ୍ର ଶେଯ୍ୟା କରି ଅଞ୍ଚଳ ଶେଷ ତହିଁ[୪] ପାଡ଼ି
ସାବିତ୍ରୀ ଜାନୁରେ ସୀମସ୍ଥାନ ଦେଇ ସତ୍ୟବନ୍ତ ତହିଁ ପଡ଼ନ୍ତି
ସାବିତ୍ରୀ, କରେଣ ତା ତନୁ ଆଶ୍ୱାସେ
ସତ୍ୟବନ୍ତ ତହିଁ ମହାନିଦ୍ରା ଗଲେ ଚେତନା ନାହିଁ ଅଙ୍ଗ[୫] ଦେଶେ ॥୨୨॥

କାଳ ବିକାଳ ଯମଦୂତ ବେନି ସେ ମିଳିଲେ ସାବିତ୍ରୀ ପାଶେଣ
ବୋଲନ୍ତି ସତୀ ଅଲଗା ହୁଅ ତୁମ୍ଭେ[୬] ନେବୁ ଏ[୭] ସତ୍ୟବନ୍ତ ପ୍ରାଣ
ତାହାର ଆୟୁଷ ହୋଇଲାକ ଶେଷ
ଆମ୍ଭେ ଯମଦୂତ ନେବୁ ତାର ପ୍ରାଣ ବନ୍ଧନ କରି କାଳପାଶ ॥୨୩॥

---

୧ । ପ. ସଙ୍ଗତେ
୨ । ପ. ବନକର
୩ । ଟ. ଥାଟି
୪ । ଟ. ସେ ପ୍ରଶ
୫ । ଘ. ଅଙ୍ଗ
୬ । ପ. ଭ୍ରତ
୭ । ଶ. ସେ

ସାବିତ୍ରୀ ବୋଲନ୍ତି ଆଗ ମୋତେ ନେଇ ଯାଉନ୍ତୁ ସେ ନେବେ[୧] ତାଙ୍କ ପ୍ରାଣ
ଯମଦୂତ କହେ ବହୁତ ଆୟୁଷ ନେ ହରିପାରେ ତୁମ୍ଭ ପ୍ରାଣ
ତୁମ୍ଭର, କୋଳରେ ଶୋଇଛନ୍ତି ପତି
ତୁମ୍ଭର ତେଜେ ଆମ୍ଭେ ଭୟ କରୁଛୁଂ[୨] ତୁମ୍ଭେ ସେ ଅଟ ମହାସତୀ ॥୨୪॥

ସାବିତ୍ରୀ ବୋଇଲେ ବଥବା ହୋଇବ ନା ଏହାଙ୍କୁ ଛାଡ଼ି
ଏମନ୍ତ ଶୁଣି ଦୂତମାନେ ଯମଙ୍କୁ କହିଲେକ ଯାଇ[୩] ବାହୁଡ଼ି
ରାଜନ, ସତ୍ୟବନ୍ତଙ୍କୁ ଆଣି ଗଲୁ
ସାବିତ୍ରୀ କୋଳେ ନିଜ ପତି ରଖିଲେ ତା'ତେଜ ପଶି ନ ପାରିଲୁ ॥୨୫॥

ଶୁଣି ଯମ କ୍ରୋଧେ ମନ୍ତ୍ରି ଆରୋହି ଘେନିଣ କାଳଦଣ୍ଡ କରେ[୪]
ମୃତ୍ୟୁ ଦେବତାଙ୍କୁ ସଙ୍ଗରେ ଘେନିଣ ପ୍ରବେଶ ସାବିତ୍ରୀ ପାଶରେ[୫]
ରାଜନ, ଯମ କହନ୍ତି ଶୁଣ ସତୀ
ବଳାତ୍କାର କରି କେମନ୍ତେ ରଖିଛ ଆୟୁଷ କ୍ଷୟ ତୁମ୍ଭ ପତି ॥୨୬॥

ଏମନ୍ତ କହିଣ ମୃତ୍ୟୁଙ୍କୁ ପେଷିଣ ସତ୍ୟବନ୍ତର ପ୍ରାଣ ଧରି
କାଳ ପାଶରେ ବନ୍ଧନ କରି ତାଙ୍କୁ ସତ୍ୱରେ ଜଲୁପତି ଫେରି
ସାବିତ୍ରୀ, ମୃତଶବକୁ ତଳେ ଥୋଇ
ମହାତେଜବନ୍ତ ରୂପେଣ ସୁନ୍ଦରୀ[୬] ଯମଙ୍କ ପଛରେ ଗୋଡ଼ାଇ ॥୨୭॥

ତାହା ଦେଖି ଯମ ଆଶ୍ଚର୍ଯ୍ୟ ହୋଇଣ ବୋଲନ୍ତି ମହାସତୀ ଶୁଣ
ସ୍ତ୍ରୀ ଦେହ ଘେନି[୭] ଆକାଶ ମାର୍ଗରେ ଆସୁଛ କେବଣ କାରଣ
ସାବିତ୍ରୀ, ବୋଲନ୍ତି ଶୁଣ ଜନ୍ତୁରାଏ
ପତିବ୍ରତା ମୁଂ ପତିକ ତେଯ୍ୟାକରି କେମନ୍ତେ ରହିବି ଏକାଏ ॥୨୮॥

---

୧ । ପ. ନେମ
୨ । ପ. ଭୟ ପାଉଛୁଂ
୩ । ପ. କହିଲେ ଯାଇଁଣ ଜମଙ୍କୁ
୪ । ପ. ଖଡ୍ଗ
୫ । ପ. ଆଗରେ
୬ । ରୂପ ମହାସତୀ
୭ । ପ. ଘେନି

ଯେଉଁଠାଏ ନେବ ମୋ ପ୍ରାଣପତିଙ୍କି ସେଠାକୁ ବୋଲି ଆମ୍ଭେ ଯିବୁ
ତୁମ୍ଭେ ସ୍ୱୟଂ ଧର୍ମ ଈଶ୍ୱର ମନରେ ଏଥିପାଇଁ କସ କରିବୁ
ଶମନ, କହନ୍ତି ତାହାଙ୍କୁ ଉତ୍ତର
ପ୍ରସନ୍ନ ହୋଇଲୁଂ ସତ୍ୟବନ୍ତ ଛାଡ଼ି ଆମ୍ଭଙ୍କୁ ସ୍ୱସ୍ତି ମାଗ ବର[1] ॥୨୯॥

ସାବିତ୍ରୀ ବୋଇଲେ ଆପଣ ଯେବେ ସେ ହୋଇବା[2] ମୋଠାରେ ପ୍ରସନ୍ନ
ଏଛି ବର ଦେବା ହେଉ ଆମ୍ଭ ଶାଶୁ ଶ୍ୱଶୁର ଲଭିବେ ନୟନ
ଶମନ, ବୋଲନ୍ତି ଅସ୍ତୁ ଏଛି ବର
ସନ୍ତୋଷେ ମହାସତୀ ଏବେ ଲେଉଟ ଆମ୍ଭେ ଯାଉଛୁ ନିଜ ପୁର ॥୩୦॥

କହି ଜଳୁପତି ଗମନ କରନ୍ତେ ସାବିତ୍ରୀ ପଛରେ ଗୋଡ଼ାନ୍ତି
ରାଜ୍ଞ ଯମରାଜା[3] କମ୍ପା ମହାସ୍ୱସ୍ତି ଗମନ କରୁଛ ବୋଲନ୍ତି
ସାବିତ୍ରୀ, ବୋଲନ୍ତି ଶୁଣ ନରୁପତି[4]
ବିବାଦ ରାଜା କାଲି ଛାଡ଼ି ଯିବ ସେ ଶ୍ୱଶୁର ହୋଇବେ ନୃପତି[5] ॥୩୧॥[6]

ଏବେ ଆପଣ ଦୁଃଖ ପାଇ ନ ଆସ କହନ୍ତି ଶମନ ଚଳନ୍ତି
ଖଣ୍ଡେ ଦୂରେ ଯାଇ ଫେରି ଅନାଇଲେ ପଛରେ ସାବିତ୍ରୀ ଅଛନ୍ତି[7]
ଶମନ, ବୋଲନ୍ତି ରହ ରହ ସ୍ୱସ୍ତି
ଶାଶୁ ଶ୍ୱଶୁରଙ୍କ ପାଶେ ଏବେ ଯାଅ କମ୍ପାଇଁ ଶୂନ୍ୟେ କର[8] ଗତି ॥୩୨॥

ସାବିତ୍ରୀ ବୋଇଲେ ବରେକ ମାଗିବି ପ୍ରସନ୍ନେ ଦେଲେ ଯିବି ଫେରି
ଯମରାଜା ବୋଲେ ମାଗ ମହାସ୍ୱସ୍ତି ଯେ ମନରେ ବାଞ୍ଛା ତୁମ୍ଭରି
କେବଳ, ଛାଡ଼ିଣ ସତ୍ୟବନ୍ତ ପ୍ରାଣ
ସାବିତ୍ରୀ ବୋଇଲେ ଶତେ ପୁତ୍ର ଦେବ ମୋରେ ବର ଦେଲେ ଜାଣ ॥୩୩॥

---

୧ । 'ଘ' ପୋଥିରେ '୨୯' ପଦଟି ନାହିଁ
୨ । ଘ ସମନ
୩ । ଙ. ମୋ:ହାରାଜା
୪ । ଘ. ଶ୍ରୀମା ସେବେଦେବ
୫ । ଘ. ଆଜ୍ଞାର ଜନ୍ମ ନଥାଏ ମୁଂ ମାଗିଲି ଅବଶ୍ୟ ବର ଦେବା ହେବ
୬ । ଘ. ଯମରାଜା କହେ ସତ୍ୟବନ୍ତ ପ୍ରାଣ ଛାଡ଼ିଣ ମୋତେ ମାଗ ଆନ
ସାବିତ୍ରୀ ବୋଇଲେ ନିଜ ଦେଶେ ମୋର ସସୁର ହୋଇବେ ରାଜନ
ଶମନ, ବୋଲନ୍ତି ଶୁଣ ମହାସ୍ୱସ୍ତି
ବିବାଦ ରାଜା କାଲି ଛାଡ଼ିଯିବ ସେ ସସୁର ହୋଇବେ ନୃପତି
୭ । ଘ. ସାବିତ୍ରୀ ପଛେ ଲାଗିଛନ୍ତି
୮ । ଘ. ପାଦ

ଯମ ବୋଇଲେ ଶତେ ପୁତ୍ର ହୋଇବେ[1] ସୁନ୍ଦର ସୁରବନ୍ତ ଗୁଣେ[2]
ଏବେ ଫେରଣ ଯିବାକୁ ମହାସ୍ୱସ୍ତୀ କ କାର୍ଯ୍ୟ ଅଛି ଆଉ ଏଣେ
ସୁଜନ, କହିଣ ଯମ ଚଳିଗଲେ
ତାଙ୍କ ପଛରେ ସାବିତ୍ରୀ ଗୋଡ଼ାଇଛୁ ଦେଖିଣ ଜମ୍ଭୁପତି ବୋଲେ ।୮୪।

କମାଇଁ ଜଞ୍ଜାଳ କର ମହାସ୍ୱସ୍ତୀ ସନ୍ତୋଷ ଭଜ ଏବେ ରହ
ସାବିତ୍ରୀ ବୋଇଲେ ଦେବତାମାନେ ସେ କେତେହେଁ ମିଥ୍ୟା ତୁମ୍ଭେ କହ
ବଚନେ, ବୋଲୁଛ ତୁମ୍ଭେ[3] ମୋହାସ୍ୱସ୍ତୀ
ମୋତେ[4] ବର ଦେଲେ ଶତେ ପୁତ୍ର ହେବ କମାଇଁ ନେଉଅଛ ପତି[5] ।୮୫।

ଶୁଣି ସ୍ତମ୍ଭୀଭୂତ ହେଲେ[6] ଜମ୍ଭୁପତି ପ୍ରସଙ୍ଗ କରନ୍ତି ଅନେକ
ଧନ୍ୟ ପତିବ୍ରତ ଧନ୍ୟ ତୁମ୍ଭ ସତ୍ୟ ଧନ୍ୟ ତୁମ୍ଭ ମାତା ଜନେକ
ସାବିତ୍ରୀ, ମୁଁ ଧନ୍ୟ ତୁମ୍ଭଙ୍କୁ ଦେଖିଲି
ଯେତେ ଲୋକ ଏହୁ ପ୍ରସଙ୍ଗ ଶୁଣିବେ ତାଙ୍କର ଦୋଷ ଉପେଖିଲି ।୮୬।

ଆଜ ଯେ ଜ୍ୟେଷ୍ଠ ଅମାବାସ୍ୟା ଦିବସ ଦୁଧା ନାମେ[7] ଅଟେ ନକ୍ଷତ୍ର
ମେଷ ଚନ୍ଦ୍ରକୁ ଷାଠିଏ ଦଣ୍ଡ ଭୋଗ ମଙ୍ଗଳବାର ଏ ପବିତ୍ର
ସାବିତ୍ରୀ, ତୁମ୍ଭର ଆମ୍ଭର ଚରିତ
ପଣ୍ଡିତ ଜନମାନେ ଏହା ଲେଖିଣ ଜଗତେ କରିବେ ବିଖ୍ୟାତ ।୮୭।

ଏମନ୍ତ ବର ଦେଇଣ ସତ୍ୟବନ୍ତ[8] ଜୀବନ ଆଣି ସମର୍ପିଲେ
ଶାଶୂ ଶ୍ୱଶୁର ଲୋଚନ ରାଜ୍ୟକର ଶତେକ ପୁତ୍ର ହେଉ ବୋଲେ
ପୁତ୍ରଙ୍କୁ, ରାଜ୍ୟେ କର ଅଭିଷେକ[9]
ପତି ପତ୍ନୀ ବେନି ଏକ ସଙ୍ଗେ ପୁଣ ବସିବ ଆସି ସୁରଲୋକ ।୮୮।

---

୧ । ଘ. ହୋଇ ସେ
୨ । ଖ. ପଣେ
୩ । ଘ. ମୋତେ
୪ । ଖ. ମୋର
୫ । ଘ. ନେଉଛ ମୋ ପତି
୬ । ଘ. ଜମ୍ଭୁପତି ସ୍ତମ୍ଭିଭୂତ ହୋଏ
୭ । ଘ. ଦୁଧାନେ
୮ । ଘ. ସତ୍ୟବନ୍ତ
୯ । ଖ. ଅଭିଷେକ

ସାବିତ୍ରୀ ଓଷା ଜଗତେ ଯେ କରିବେ ତୁମ୍ଭର ଏ ପ୍ରସଙ୍ଗ ଶୁଣି
ଧୂପ ଦୀପ ନଇବେଦ୍ୟ ଦେଇକରି ଅତ୍ୟନ୍ତ ଆନନ୍ଦେ ତରୁଣୀ
ସେ ନାରୀ, ଲଭିବ ପତିବ୍ରତା ଫଳ
ନିଜ ପତି ସେନ ଆନନ୍ଦ ହୋଇଣ ଭୁଞ୍ଜିବ ଅମର ମଣ୍ଡଳ ॥୩୯॥

ସନ୍ତୋଷେ ଯମ ନିଜପୁରେ ଚଳିଲେ ସାବିତ୍ରୀ ବାହୁଡ଼ି ଅଇଲେ
ନିଜ ପତି ପ୍ରାଣ ସତ୍ୟବାନ୍ତ ପିଣ୍ଡେ ସଇରେଣ ଆଣି[୧] ଗୁଞ୍ଜିଲେ
ଚେତନା, ପାଇଣ ସତ୍ୟବନ୍ତ ଉଠି
ହାଇ ମାରିଣ ଅଙ୍ଗ ମୋଡ଼ି ବସିଲେ କରେଣ[୨] ଦଳ ସେନ ଦୃଷ୍ଟି ॥୪୦॥

ସାବିତ୍ରୀଙ୍କି କହେ ବଡ଼ି[୩] ନିଦ୍ରା ଗଲି କମ୍ପାଇଁ ନ ଚେତାଇଲ ମୋତେ
ସପନେ ଦେଖିଲି ଯମ ନେଉଥିଲା ପ୍ରସନ୍ନେ ଆଣିଦେଲା ମୋତେ
ସାବିତ୍ରୀ, ଶୁଣି ହସନ୍ତି ହସ ହସ
ଏହି କାରଣେ ତୁମ୍ଭଙ୍କୁ ନ ଚେତାଇଲି ନିଦ୍ରା ଭଙ୍ଗିଲେ ବଡ଼ ଦୋଷ ॥୪୧॥

ଶାଶୁ ଶ୍ୱଶୁରେ ଅନେକ ଲୋଡ଼ୁଥିବେ କ୍ଷୁଧାରେ ହୋଇଣ ଆରତ
ଫଳମୂଳ କିଛି ଆଣିଅଛି ମୁହିଁ ଉଠିବା ହଜ ସେ ଭୁରିତ
ସାବିତ୍ରୀ, ଆଲିଙ୍ଗନ କରି ଚେତାଇଲେ
ପତି ପତ୍ନୀ ସେନ ଆନନ୍ଦ ହୋଇଣ ସ୍ୱସ୍ଥାନେ ଯାଇଣ ମିଳିଲେ ॥୪୨॥

ଦେଖନ୍ତି ପିତାଜନକ ସତ୍ୟତରେ ପାଇଛନ୍ତି ଦିବ୍ୟଲୋଚନ
ପୁତ୍ର ବଧୂଙ୍କୁ ସେ ଦେଖିଣ ଆନନ୍ଦ ସତ୍ୟବନ୍ତ କଲେ ଭୁଷନ
ସାବିତ୍ରୀ, ଶାଶୁ ଶ୍ୱଶୁର ପାଦେ ସେବ
ଫଳ ଭୋଜନେ ନିଶା[୪] ସୁଖେ ବଞ୍ଚିଲେ ଉଦୟ ହେଲେ ଆସି ରବ ॥୪୩॥

---

୧ । ପ. ଅଣିତା
୨ । ପ. କରେଣ
୩ । ପ. ବେଡେ
୪ । ପ. ଜାମ୍ବୀ

ନାରଦ ମହାମୁନି[1] ତହିଁ ପ୍ରବେଶ ସେ ଦ୍ୟୁମତ୍ସେନ ନୃପବର
ପତ୍ନୀ ପୁତ୍ରବଧୂ ସଙ୍ଗତେ ଘେନିଣ ପୂଜିଲେ ମୁନିଙ୍କ ପୟର
ସନ୍ତୋଷେ, ନାରଦ ତହିଁରେ ବସିଲେ
ସାବିତ୍ରୀ ଯମ ପ୍ରସ୍ତାବ[2] ମାନ ସବୁ ବିସ୍ତାର କରିଣ କହିଲେ ॥୪୪॥
ଯମନବରୁ[3] ଭ୍ରମେ ନେଇ ପାଇଲେ ସେ ସତ୍ୟବନ୍ତ[4] ପାଏ ଜୀବନ
ବିବାଦ ରଜା ରାଜ୍ୟ ଛାଡ଼ି[5] ପଳାଇ ରାଜାଙ୍କୁ କରିବେ ନମନ
ଏମନ୍ତ କହି ନାରଦ ତହୁଂ ଗଲେ
ଏହି ସମଏ ସୁଅଙ୍ଗ ଦେଶ ମନ୍ତ୍ରୀ ସୈନ୍ୟ ସହିତରେ ମିଳିଲେ ॥୪୫॥
ନୃପତି ଚରଣେ ପ୍ରସନ କରିଣ କରିରାଜ କନ୍ଧେ ବସାଇ
ମହା ଉତ୍ସବେ ରାଜାଙ୍କୁ ଘେନିଗଲେ ଶ୍ୱେତଛତ୍ର[6] ଶିରେ ଧରାଇ
ରାଜନ, ଲଭିଲେ ପୁଣ ନିଜ ଦେଶ
ନିଷ୍ଟକ ହୋଇ ତହିଁରେ ରାଜ୍ୟ କଲେ ସକଳେ ହୋଇଲେ ହରଷ[7] ॥୪୬॥
ପତିବ୍ରତାଙ୍କ ପତିବ୍ରତ ହେ କୁରୁ ପତିବ୍ରତା ନାମ ଏ ବନ
ପୂର୍ବେ ବିଧାତା ଏମନ୍ତ ଆଜ୍ଞା ଦେଲେ କେ ତାହା କରିବଟି ଆନ
ରାଜନ, ଏ ବନରେ ଏବେ ରହିବା
ଦିବ୍ୟ ଫଳମୂଳ ଲୋଡ଼ିଲେ ଆନନ୍ଦେଣ ଦିନ ହରିବା ॥୪୭॥
ମାରକଣ୍ଡ ତହୁଂ ଶୁଣି ଧର୍ମସୁତ ପର୍ଣ୍ଣଶାଳା[8] ତହିଁ ରଚିଲେ
ସକଳ ଋଷିଙ୍କ ସଙ୍ଗରେ ଘେନିଣ ଅତି ତୋଷେ ଦିନ ବଞ୍ଚିଲେ
ଏମନ୍ତେ, କେତେ ସମୟ ଗଲା ତହିଁ
ବନରେ ବିହର ଗଣ୍ଡା କାହିଁ ମାତ୍ର ଫଳ ଭୋଜନ କଲେ କାହିଁ[9] ॥୪୮॥

---

୧ । ଖ. ଦ୍ୟୁମ୍ନସେନ
୨ । ଘ. ପ୍ରସ୍ତାପ
୩ । ଖ. ଯମବରୁ
୪ । ଘ. ସତ୍ୟବନ୍ତ
୫ । ଘ: ଛାଡ଼ିଣ
୬ । ଘ. ଧ୍ୱଜଛତ୍ର
୭ । ଘ. ସନ୍ତୋଷ
୮ । ଘ. ପର୍ଣ୍ଣଶାଳା
୯ । କ. ପୋଥିରେ ୪୬ରୁ ୪୮ ପଦ୍ୟର ପାଠ ନାହିଁ

ଏମନ୍ତେ ପାଣ୍ଡବେ ବନେ ବିହରନ୍ତି ନାନା କନ୍ଦରୁକେ[1] ଆନନ୍ଦ
ଦ୍ୱାଦଶ ବରଷ ହୋଇଲାକ ଶେଷ ଶାନ୍ତ ଭଣେ ଆନନ୍ଦକନ୍ଦ ।
ସୁଜନେ, କ୍ଷମା କରିବା ମୋର ଦୋଷ[2]
ତୁମ୍ଭ ଭରସାରେ ବିରଚି ଭାରତ[3] କହଇ ବିଶ୍ୱମ୍ଭର ଦାସ ॥୪୧॥

## ଚତୁର୍ବିଂଶ ଛାନ୍ଦ

### ରାଗ—କଉଶିକ

ଏମନ୍ତେ ଶ୍ରୀକୃଷ୍ଣ ପ୍ରବେଶ ହୋଇଣ ଯୁଧିଷ୍ଠିରଙ୍କି କଲେ ଦରଶନ
ଭୀମ ଅର୍ଜୁନ ନକୁଳ ସହଦେବ ଦର୍ଶନ କରି ଭଗବାନ ।
କୃଷ୍ଣ ଆନନ୍ଦେ, ପାଣ୍ଡବଙ୍କ ପାଶେ ବସିଲେ
ବନବାସ ଶେଷ ହେଲା ପୀତବାସ ଯୁଧିଷ୍ଠିର ଦେବ ଜଣାଇଲେ[4] ॥୧॥
ବଶିଷ୍ଠ ମାରକଣ୍ଡଙ୍କୁ ପଚାରନ୍ତି ପାଶେ ବସାଇ ଭଗବାନ
ବନବାସ ଶେଷ କଲେକ ପାଣ୍ଡବେ ଗୋପ୍ୟ ହେବେ କେଉଁ ଭୁବନ
ମାରକଣ୍ଡ ସେ, କହନ୍ତି ଶୁଣ ଚକ୍ରଧାରୀ[5]
ରଣସ୍ତମ୍ଭ ଗଡ ଅତ୍ୟନ୍ତ ଗୋପ୍ୟାନ ସୁବାହୁ ନୃପଂ ଦଣ୍ଡଧାରୀ ॥୨॥
ସେ ଗଡ଼ ଭିତରେ କେହି ନ ପଶନ୍ତି ପାଣ୍ଡବଙ୍କୁ ତହିଁ ରଖିବା
ବଶିଷ୍ଠ ବୋଲନ୍ତି ଅପୂର୍ବ ସ୍ଥାନେକ[6] ମୋର ତହିଂ ଯେବେ ଶୁଣିମା
ଶୃଙ୍ଗଗିରିର ପାଶରେ ଶୃଙ୍ଗମାଳ ଦେଶ
ଅଗମ୍ୟ ସ୍ଥାନ ସେ[7] ବାସ କରିଅଛି ମେରୁଶୂଳ ନାମେ ରାକ୍ଷସ ॥୩॥
ଚଉଦ ଭୁବନ ଏକା ଏ ଜିଣିଲା ମେରୁଶୂଳ ତାର ଶରୀର
ଦେବ ସହସ୍ର ଶରେ ନ ଭେଦଇ ବଜ୍ର ତା ଅଙ୍ଗେ ହେବ ଚୂର
ମୋହ ଉପୁରେ, ଦେବେ କମ୍ପନ୍ତି ତାର ନାମେ
କୋଦାଳ ଆୟୁଧ ନିଜ କରେ ଧରି[8] ସକଳ ଜିଣିଲା ସଂଗ୍ରାମେ ॥୪॥

---

୧ । ଗ. ପାଣ୍ଡବେ ନାନା କନ୍ଦରୁକେ ବିହରନ୍ତି ସେ ଆନନ୍ଦେ
ଘ. ଏହି ପ୍ରକାରେ ପାଣ୍ଡବେ କନ୍ଦରୁକେ ବନେ ବିହରନ୍ତି
୨ । ଙ. ଦମ୍
୩ । ଘ. ବିରଚି ଭାରତ
୪ । କ ଗ. ପୋଥିରେ ଏ ଧାଡ଼ିଟି ନାହିଁ
୫ । ଘ. ଚକ୍ରଧର
୬ । ଖ. ଥାନେକ
୭ । ଖ. ଥାନ ବାସ କରିଅଛି ସେ
୮ । ଘ. ଧରି

ମେରୁଶୃଙ୍ଗ ମାର୍ଗ ନସ୍ତ କରଣ ପାଣ୍ଡବଙ୍କୁ ତର୍ଣ୍ଣିରେ ରଖି[1]
ସହଦେବ କହେ[2] ଯାହା ସେ କହିଲ ପ୍ରତକ୍ଷେ ଏହ୍ନକଣି ଦେଖ
ମାଳଣ୍ଡ ନାମେଣ ସୁବଣ୍ଡ
ଫିପୁର ମୋହ୍ନଣ୍ଡ ନାମରେ ତାହାର ଅତ୍ୟନ୍ତ ସୁନ୍ଦରୀ ଦୋହିତା[3] ॥୫॥

ଦୁର୍ବାସା[4] ଯାଇ ମିଳିଲେ ତାର ପୁରେ[5] ଦେଖି ଦାନବ[6] ପୂଜା କଲା
ମୋର ଦୋହିତା[7] ଅନୁରୂପେ ବର ଗୋଟିଏ କହିବା ବୋଇଲା
ତୋଷ ହୋଇଣ କହନ୍ତି ତାଙ୍କୁ ତପିବର
କାର୍ତ୍ତିକେଶ୍ୱର ନାମରେ ମହାଶକ୍ତି ମହାଦେବଙ୍କର କୁମର[8] ॥୬॥

ଅତି ସୁନ୍ଦର ସୁକୁମାର ଶରୀର କନ୍ୟାକୁ ସେହି ଅନୁରୂପ
ତୋର ଆଜ୍ଞା ଦେଲେ ଆଣିମା[9] ତାହାଙ୍କୁ ଶୁଣି ସନ୍ତୋଷ ଜଣପ
ତାଙ୍କୁ କହଇ ବହନ ଯାଇଁ ଆଣ ବର
ଫିପୁର ମୋହ୍ନମାନ ବଶ କରିବ[10] ଅତି ଜହ୍ନବ[11] ମୋର ପୁର ॥୭॥

ମେରୁ ଶୃଙ୍ଗ ତଦ୍ଧଂ ଏମନ୍ତ ଶୁଣିଣ ସଭରେ ଦୁର୍ବାସା[12] ଚଳିଲେ
ମନ୍ଦର ପର୍ବତ ନିକଟେ ତାହାଙ୍କୁ ନାରଦେ ଆସନ୍ତେ ଦେଖିଲେ
ସର୍ବ ବୃତ୍ତାନ୍ତ, ଦୁର୍ବାସା[13] କହିଲେ ତାହାଙ୍କୁ
ଫିପୁର ମୋହ୍ନଣ୍ଡ କନ୍ୟା ବଶ ଅର୍ଥେ ଆଣି ମୁଁ କାର୍ତ୍ତିକେଶ୍ୱରଙ୍କୁ ॥୮॥

---

୧ । ପ. ତଦ୍ଧଂରେ ପାଣ୍ଡବଙ୍କୁ ରଖି
୨ । ପ. ଅସ୍ଥିକ
୩ । ଗ. ଦୁହିତା
୪ । ଗ. ଦୁର୍ବାଶା
ପ. ଦୁର୍ବାସା
୫ । ପ. ସେ
୬ । ପ. ବାଦବ
୭ । ଘ. ଦୋହିତା
ପ. ଦୁହିତା
୮ । ପ. କୁମାର
୯ । ପ. ଆଣିମି
୧୦ । ଖ. କରିବା
୧୧ । ପ. ହୁଇବେ
୧୨ । ପ. ଦୁର୍ବାସା
୧୩ । ପ. ଦୁର୍ବାସା

ଏମନ୍ତ କହି ଦୁର୍ବାସା[1] ତହୁଂ ଗଲେ ନାରଦ ଚଳିଲେ ବହନ
ଝଂଝମାନ ଦେଶେ ପ୍ରବେଶ ହୋଇଲେ ତ୍ରିପୁର ମୋହିନୀ ସଦନ
ଦେଖି ସୁନ୍ଦରୀ, ଋଷିଙ୍କ ପାଦେ ପ୍ରଣମିଲେ
କରଯୋଡ଼ି ବୋଲେ କେବଣ ନିମିତ୍ତେ[2] ମୋ ପୁରେ ଆସିବା ହୋଇଲେ ।୯।

ନାରଦ କହନ୍ତି[3] ତୁମ୍ଭର ନିମିତ୍ତେ[4] ଅପୂର୍ବ ବର କରିଥିଲୁଂ
ଦୁର୍ବାସା[5] କାର୍ତ୍ତିକେଶ୍ୱର ଆଣିଗଲେ ପଥରେ ଏମନ୍ତ ଶୁଣିଲୁଂ
ଜଟା ମୁଣ୍ଡରେ, ଅଙ୍ଗେ ବିଭୂତି ଭୂଷଣ[6]
ଷଡ଼ ଗୋଟା ମୁଣ୍ଡ ବାରଗୋଟା ହସ୍ତ ବେନି ଗୋଟି ମାତ୍ର ଚରଣ ।୧୦।

ତାହାର ପିତା ଅଟନ୍ତି ମହାଦେବ[7] ବୃଷଭ ଗୋଟିଏ ଚଢ଼ଇ
ସେହି ଅନୁରୂପେ[8] ତା ପୁତ୍ର କାର୍ତ୍ତିକ ବାହାନ ମୟୂର ଚଢ଼ଇ
ଏବେ ଶୁଣ ତୁ ଆମ୍ଭେ କରିଛୁଂ ଯେଉଁ ବର
ଦ୍ୱାରକା ନଗ୍ରରେ ବ୍ରହ୍ମାଣ୍ଡ କରତା ଦେବତା ଯାର ପରିଶ୍ୱର ।୧୧।

ଶ୍ରୀକୃଷ୍ଣ ମହିମା କେ କହି ପାରିବ କମଳା ଯାହାର ଯୁବତୀ
ତାଙ୍କର ନନ୍ଦନ ନାମତା ପଦ୍ୟୁନ ସାକ୍ଷାତ ମଦନ ମୂରତି
ତାଙ୍କ ସ୍ୱରୂପ, ଦେଖରେ ତ୍ରିପୁର ମୋହିନୀ
ତ୍ରିଜଗତେ କାମ ରୂପ ଦେଖି ବାମା ମୋହରେ ପଡ଼ନ୍ତି ଅବନୀ ।୧୨।

ନାରଦ ତାହାକୁ ସଚେତ କରନ୍ତେ ଧଇଲା ମୁନିଙ୍କ ଚରଣ
ମୋ ଠାରେ ଆପଣ ଅନୁଗ୍ରହ[9] କରି ମୋ ପ୍ରାଣ ପତି ବେଗେ ଆଣ
ସତ୍ୟ କହୁଛୁ, କେବେ କାର୍ତ୍ତିକ ନ ବରିବ
ଆପଣ ଚଳନ୍ତୁ ଜଳେ କାମ ଚିନ୍ତା ନିଶ୍ଚୟେ ଜୀବନ ତେଜିବ ।୧୩।

---

୧। ପ. ଦୁର୍ବାଷା
୨। ଘ. ନିମିତ୍ତେ
୩। ଘ. ନାରଦେ ବୋଲନ୍ତି
୪। ପ. ନିମିତ୍ତେ
୫। ପ. ଦୁର୍ବାଶା
୬। ପ. ଭସ୍ମ ଭୂଷଣ
୭। ପ. ନିଂଶଳା
୮। ପ. ଅନୁଚମେ
୯। ପ. ଅନୁଗ୍ରହ

ଶୁଣି ନାରଦେ ସନ୍ତୋଷେ ଚଳିଂ ଗଲେ ଦ୍ୱାରକା ହୋଇଲେ ପ୍ରବେଶ
ପ୍ରଦ୍ୟୁମ୍ନଙ୍କୁ କହି ଯେସନ ଆସନ୍ତି ବିମାନ ଉଡ଼ାଇ ଆକାଶ
ଏବେ ଶୁଣିମା, ଦୁର୍ବାସା[1] କଇଳାସ ଗଲେ
କାର୍ତ୍ତିକେଶ୍ୱରଙ୍କୁ ବରବେଶ କରି ସଭିରେଣ ଯେନ ଅଇଲେ ॥୧୪॥

ଦେଖି ତେତ୍ରୁଣ ନ ଆନନ୍ଦ ହୋଇଣ ଅତ୍ୟନ୍ତ ଉତ୍ସବ[2] ନଗ୍ରରେ
କାର୍ତ୍ତିକେଶ୍ୱରଙ୍କୁ ବରଣ କରଣ[3] ବସାଇଲେ ସେ ବେଦୀକାରେ
ପୁଣ କନ୍ୟାଙ୍କୁ, ସନ୍ତରେ ଜଗାଇ ମୂରବେଣ
ଅନ୍ୟଂଗ୍ୟଂ ସଜ୍ଜା ଅର୍ଥରେ ଦେବ ଗୃହେ କରାଇଲେ ନେଇ ପ୍ରବେଶ ॥୧୫॥

ତ୍ରିପୁର ମୋହିନୀ ବ୍ୟାକୁଳ ହୁଅନ୍ତି ନାରଦ ବଚନ ଦେଖିଣ
ମଙ୍ଗଳାଙ୍କୁ ସ୍ତୁତି କରେ କୃଷ୍ଣପୁତ୍ର ପ୍ରାପତ କର ପ୍ରସନ୍ନେଣ
ଏହି ସମୟ, ଆକାଶେ ବିମାନ ଦଶିଲା
ଦେଖୁଂ ଦେଖୁଂ ବାଳୀ ସମିପେ ଆସିଣ ପ୍ରଦ୍ୟୁମ୍ନ ପ୍ରବେଶ ହୋଇଲା ॥୧୬॥

ତ୍ରିପୁର ମୋହିନୀ ଆନନ୍ଦ ହୋଇଣ କୁସୁମମାଳ ଯେନ କରେ
ବରଣ ବିଧିରେ ଲମ୍ବାଇଲେ ନେଇ ଶ୍ରୀକୃଷ୍ଣ ନନ୍ଦନ ଗଳାରେ
କର ଧରିଣ, କୋଳେ ବସାଇଲେ ପ୍ରଦ୍ୟୁମ୍ନ
ନାରଦେ ବୋଇଲେ କି କଥା ପଡ଼ଇ ବୁଝିବା ଅସୁର ସଦନ ॥୧୭॥

ବର କନ୍ୟା ବେନି ଦ୍ୱାରକା ନଗ୍ରରେ ବହନ ଏବେ ଯାଅ ଚଳି[4]
ଚଳିଂ ପ୍ରଦ୍ୟୁମ୍ନ ଆକାଶେ ରଥ ବାହି ଦେଖ ନିକଟେ[5] ଆସି ମିଳି
ସର୍ବେ ଦେଖନ୍ତି, ପ୍ରଦ୍ୟୁମ୍ନ ଆସି ପରବେଶ
ତ୍ରିପୁର ମୋହିନୀ କନ୍ୟା କୋଳେ ଅଛି ମୋହୁଛି ସକଳ ମାନସ ।୧୮।

---

୧ । ପ. ଦୁର୍ବାଶା
୨ । ପ. ଉତ୍ସବ
୩ । ପ. ବରବେଶ କରି
୪ । ପ. ଯାଅ ଏବେ
୫ । ପ. କୃଷ୍ଣ

ସକଳେ ସହଦେବଙ୍କୁ ପ୍ରଶଂସନ୍ତି ଧନ୍ୟ ଭୁମ୍ଭର ମନ୍ତ୍ରୀପଣ
ଅସ୍ତଗିଂ ଅଦୃଷ୍ଟି ଯାହା ସେ କହିଲ ଆସି ଭେଟିଲା ତତକ୍ଷଣ
ପଞ୍ଚ ପାଣ୍ଡବେ, ଶ୍ରୀକୃଷ୍ଣ ଭୁଲେ ଋଷିଗଣ
ରଥରୁ ଉତ୍ତରି ଦର୍ଶନ କରନ୍ତି ପଦ୍ନ ସକଳ ଚରଣ ॥୧୯॥

ଶ୍ରୀକୃଷ୍ଣ ବୋଇଲେ ବଧୂକୁ ଘେନିଣ ଯାଅ ତୁ ଦ୍ୱାରାବତୀ ପୁର
ଅର୍ଜୁନଙ୍କୁ ଘେନି ଓଗାଳିବୁ ଆମ୍ଭେ ଯେବେ ସେ ଆସିବ ଅସୁର
ଆଜ୍ଞା ପାଇଣ ପଦ୍ନ ରଥେ ଗଲେ ଚଳି
ତ୍ରିପୁର ମୋହିନୀ କନ୍ୟାକୁ ଘେନିଣ ଦ୍ୱାରକା ପୁରେ ଯାଇ ମିଳି ॥୨୦॥

ଶ୍ରୀକୃଷ୍ଣ ଅର୍ଜୁନ ସଙ୍ଗେ ଘେନି କରି ରହିଲେ ଝ ପ୍ରବାନ୍ତର ଗଡ
ଅସୁର ଆସିବା ପଥ ଓଗାଳିଣ ରହିଲେ ଧନୁଶର ଧରି
ଏବେ ଶୁଣିମା, ନାରଦ ମହର୍ଷି ଗଲେ
ମେରୁଶୃଙ୍ଗ ରତ୍ନ ବେଦୀକାରେ ଯାଇ ଭିତରେ ପ୍ରବେଶ ହୋଇଲେ ॥୨୧॥

ଏ ସମଏ କନ୍ୟା ନେଲା ନେଲା ବୋଲି ପଡିଲା ଆସି ଚତୁଂ ଦ୍ୱାର
କେ ନେଲା କେହ୍ନେ କାହାକୁ ଦେଖିନାହିଁ କହନ୍ତେ ନାରଦ ତପସ୍ୱୀ
ଆମ୍ଭେ ପଥେଣ, ଦେଖିଲୁ ଶ୍ରୀକୃଷ୍ଣ ନନ୍ଦନ
ତ୍ରିପୁର ମୋହିନୀ କନ୍ୟାକୁ ରଥରେ ବସାଇ ନେଲାଟି ପଦ୍ନ ॥୨୨॥

ପୁଣି କାର୍ତ୍ତିକଙ୍କୁ ଅନାଇ କହନ୍ତି ଭୁମ୍ଭର ଏକ ବିଡ଼ମ୍ବଣ
ବିଶ୍ୱ ହେଲାଠାରୁ କେ କାହାର କନ୍ୟା ହରିଣ ଘେନିଯାଏ ପୁଣ
ଏତେ କଥାଏ, କେମନ୍ତ ପ୍ରକାରେ ସମ୍ଭବ
ବିଶ୍ୱମଧ୍ୟେ ବରବେଶ କରିଣ କାହାକୁ ଭୁମ୍ଭେ ଲୁଚାଇବ ।୨୩।

ପଦ୍ନେ ମାରି ଆଣି ସେ କୁମାରୀ ଜଠ ଦେ ମେରୁଶୃଙ୍ଗ ସାର
ଭୁମ୍ଭର ବଚନେ ଲଣ୍ଡଭଣ୍ଡ ହେଲେ ଦୁର୍ବାସା ପ୍ରାଏ ତପିବର
ଏତେ ଶୁଣିଣ, କୋହାଳ ଧରି ନଜ କରେ
ମେରୁଶୃଙ୍ଗ କ୍ରୋଧେ ବାହାର ହୋଇଲା କାର୍ତ୍ତିକଙ୍କୁ ଘେନି ସଙ୍ଗରେ ।୨୪।

---

୧ । ପ. ଅସ୍ତଗି
୨ । ପ. ତ୍ରିପୁରନ୍ତ
୩ । ଢହେ
୪ । ପ. ବଳେଣ
୫ । ଗ. ଦୁର୍ବାସ
ପ. ଦୁର୍ବାସ୍ପ

ପ୍ରଚଣ୍ଡ ଦର୍ଶନ ମୟୂର ଚଢ଼ିଣ ବାହାର ହେଲେ ଷଡ଼ାନନ
ଛଅଁ କରେ ଶୂଳ କାନ୍ଧିରେ ତ୍ରିଶୂଳ ସହସ୍ରମାନ ସେନ ପୁଣ[1]
ବେଗେ ଆସନ୍ତି, ତ୍ରିପୁରାନ୍ତକର ପାଶରେ
କୃଷ୍ଣ[2] ଅର୍ଜୁନ ତାହାଙ୍କୁ ଦେଖି ସେ[3] ଧନୁ ନାରାଚ ଧରି କରେ ॥୨୫॥
ଶର ପ୍ରହାରନ୍ତେ ଅସୁର ଅଙ୍ଗରେ ପଡ଼ଣ ପଡ଼ୁଛନ୍ତି ଝଡ଼
ମୟୂରକୁ ଦେଖି ଅନ୍ତରମ ଭରେ[4] ଗରୁଡ଼ କରେ ଦର୍ପ ରଡ଼
ଦେଖି ମୟୂର, କାର୍ତ୍ତିକ ସେନ ପଳାଇଲେ[5]
କୁମାର ଯେତେ ରୁଟପ ତାଙ୍କୁ ସ୍ଖଳଲେ ଗରୁଡ଼ ପୃଷ୍ଠକୁ ନଇଲେ[6] ॥୨୬॥
ସମ୍ମୁଖେ କାର୍ତ୍ତିକ ମୟୂରକୁ ଛାଡ଼ି ଶ୍ରୀକୃଷ୍ଣ ପୃଷ୍ଠରେ ପ୍ରବେଶ
ଧନୁଶର ଧରି ଶ୍ରୀକୃଷ୍ଣ ସଙ୍ଗେ ସମର କଲେ ମହାରୋଷ
ଇନ୍ଦ୍ର ନନ୍ଦନ, ମେରୁଶୃଙ୍ଗକୁ ଉଗାଳିଲେ
ଗାଣ୍ଡିବ ଧନୁରେ ଦେବଙ୍କର ଯୋଡ଼ି ଦନ୍ତ୍ୟ ଅଙ୍ଗରେ ପ୍ରହାରିଲେ ॥୨୭॥
ଅସଂଖ୍ୟ ମହାଘୋର[7] ଯୁଦ୍ଧ[8] ହୋଇଲା ଦେବ ମାନବେ ଅଗୋଚର
ଏମନ୍ତ ଦେଖି କଇଲାସ ଭୁବନେ ଗଲେ ଦୁର୍ବାଶ୍ୟା[9] ତପିବର
କୃଷ୍ଣ ଚରଣେ, ନିରତେ ରହୁ ମୋର ଆଶ
କୋଟି ଅପ୍ରାଧ କ୍ଷମା ମୋର କରିବେ[10] କହଇ ବିଶ୍ୱମ୍ଭର ଦାସ ॥୨୮॥

---

୧ । ପ. ଭାହୁଁରେ ଶର ସନ୍ଧାନ
୨ । ପ. ଶ୍ରୀକୃଷ୍ଣ
୩ । ପ. ଦେଖିଣ
୪ । ଖ. ଭୟ
୫ । ଖ. ଲୋଡ଼ିଲେ
୬ । ପ. ନଇଲେ
୭ । ଖ. ମୋହାଘୋର
୮ । ପ. ଯୁଧ
୯ । ପ. ଦୁର୍ବାଶା
୧୦ । ପ. ମୋର କ୍ଷମା କରିବା

# ପଞ୍ଚବିଂଶ ଛାନ୍ଦ

## ରାଗ—କଳସା

ଦୁର୍ବାସା[1] ମହର୍ଷି କଇଳାସରେ ସତ୍ୱରେ ପ୍ରବେଶ ହୋଇଲେ
ମହାଦେବଙ୍କ ଆଗରେ କହିଲେ
ମେରୁଶୃଙ୍ଗ ସୁତା ନିମିତ୍ତ ମୋ ସ୍ୱାମୀ କାର୍ତ୍ତିକେଶ୍ୱର କହିଲେ ହେ । ଶଙ୍କର
ଆମ୍ଭେ ଆସି କୁମାରୀ ଘେନିଗଲୁଁ ଷଣ୍ମୁଖମାନ ଦେଖଣେ ବେଗେ ମିଳିଲୁଁ
ବରବେଶ କରି କାର୍ତ୍ତିକେଶ୍ୱରଙ୍କୁ ବେଦୀଠାରେ ବସାଇଲୁ ହେ, ଶଙ୍କର ।।୧।।
ଶ୍ରୀକୃଷ୍ଣ ନନ୍ଦନ ପ୍ରଦ୍ୟୁମ୍ନ ଆସିଣ ବଳେ କନ୍ୟାକୁ ହରିନେଲା
ବହୁ ଲଜ୍ୟା ଢଙ୍ଗରେ ଲଘୁକଲା
କୋପେ ମେରୁଶୃଙ୍ଗ କାର୍ତ୍ତିକଙ୍କୁ ଘେନି ଦ୍ୱାରକାକୁ ସଜ ହେଲେ ହେ, ଶଙ୍କର
କୃଷ୍ଣ ଅର୍ଜୁନଙ୍କୁ[2] ଘେନି ସଙ୍ଗରେ ବେଗେ ଓଗାଳିଲେ ଆସି ପଥରେ[3]
ଧନୁ ଧରିଣ ସମର କରନ୍ତି କାର୍ତ୍ତିକ ବୀର ମଝିରେ ହେ, ଶଙ୍କର ।। ୨ ।।
ନନ୍ଦୀ ଭୃଙ୍ଗୀକି ଶମ୍ଭୁ ସଦାନନ୍ଦ ଅତି କୋପରେ ଆଜ୍ଞା ଦେଲେ
ମୋର ସୈନ୍ୟ ବେଗେ ସାଜ ବୋଇଲେ
ପିନାକ ଧନୁ ଅକ୍ଷୟ ତୋଣ କରି ବୃଷଭରେ ବିଜେ କଲେ ସେ, ଶଙ୍କର
ଚଉଦ କୋଟି ଶିବଗଣ ସାକ୍ଷୀ, ଡାକ[4] ଡମ୍ବରୁ ଘନଘୋର ବାଜି
ନନ୍ଦୀ ଭୃଙ୍ଗୀ ଗଜାନନ ସଙ୍ଗତେ ଗଲେ କଇଳାସ ତେଜି ହେ ସୁଜନେ ।।୩।।
ଦୁର୍ବାସା[5] ଋଷି ଆଗଭର ହୋଇଣ ପଥ କଢ଼ାଇ ଘେନିଗଲେ
ନାରଦ ମହାମୁନି ତାହା[6] ଦେଖିଲେ
ବଡ଼ କଉତୁକ ଦେଖିବା ଏଠାରେ ଈଶ୍ୱର ବିଜୟେ କଲେ ହେ ସୁଜନେ
କୃଷ୍ଣ ଛାମୁରେ ଯାଇଣ କହନ୍ତି ମହାକ୍ରୋଧେ ତ ଶଙ୍କର[7] ଆସନ୍ତି
ଦୁର୍ବାସା[8] ମହର୍ଷି ଆଗ ହୋଇଣ ପଥ କଢ଼ାଇ ଆଣନ୍ତି ହେ ସୁଜନେ[9] ।।୪।।

---

୧ । ପ. ଦୁର୍ବାସ୍ୱା
୨ । ପ. ଅର୍ଜ୍ଜୁନ
୩ । ପ. ଆସି ଓଗାଳିଲେ ତାଙ୍କୁ
୪ । ପ. ଡାକ
୫ । ପ. ଦୁର୍ବ୍ବାସ୍ୱା
୬ । ପ. ତା
୭ । ପ. ଈଶ୍ୱର
୮ । ପ. ଦୁର୍ବ୍ବାସ୍ୱା
୯ । ପ: ଶ୍ରୀହରି

ମାର ଶିବଗଣ ଶଙ୍କର ସହିତେ ଆସ ହେ ସାର[୧] ଅରଜୁନ
ତୁମ୍ଭେ ଶିବା ଶିବଙ୍କ ନନ୍ଦନ
ଏମନ୍ତ କହିଣ ବୀଣା ବଜାଇଣ ନାଚନ୍ତ ବ୍ରହ୍ମାନନ୍ଦନ ହେ ସୁଜନେ
ଶିବ ହୋଇଲେ ତହିଁରେ ପ୍ରବେଶ ଧନୁଶର ରଖିଣ ପୀତବାସ
ଅର୍ଜୁନଙ୍କୁ ସଙ୍ଗେ ଘେନିଣ ଦ୍ରୁଷନ କଲେକ ଯାଇ ବ୍ୟୋମକେଶ ॥୫॥

ଶଙ୍କର ବୋଲନ୍ତି ଶୁଣ ପୀତାମ୍ବର କେମନ୍ତ ଚରିତ ତୁମ୍ଭର
ମେରୁଶୃଙ୍ଗ ଅଣାଇ ପୁତ୍ର ମୋର
ତ୍ରିପୁର ମୋକ୍ଷଗା ନାମେଣ କୁମାରୀ ସମର୍ପିବାକୁ ତାହାର[୨] ହେ ଅଚ୍ୟୁତ[୩]
ତୁମ୍ଭ ପୁତ୍ର ପ୍ରଦ୍ୟୁମ୍ନ ତହିଁ ଗଲା, ବଳେ କନ୍ୟାକୁ ଘେନି ପଳାଇଲା
ତୁମ୍ଭେ ବାନ୍ଧି ଜଗି ସମର କରୁଛ କହିଁ ଧର୍ମକୁ ଅଇଲ ହେ ଅର୍ଜୁନ ॥୬॥

ଶ୍ରୀକୃଷ୍ଣ ବୋଇଲେ[୪] ବୁଝିବା ହଉ ସେ କିଛି ଦୋଷ ନାହିଁ ଆମ୍ଭର
ଦୂତ ପେଷିଲ ଦର୍ପରେ କୁମାରୀ
ପ୍ରଦ୍ୟୁମ୍ନକୁ ବଳେ ଘେନାଇଁ ଆଣିଣ ପୁଷ୍ପମାଳା ଦେଇ ବର ହେ, ଶଙ୍କର
ମେରୁଶୃଙ୍ଗକୁ ଘେନି ତୁମ୍ଭ ସୁତ ଦ୍ୱାରକାକୁ ଚଳନ୍ତ କୋପଚିତ
ଆମ୍ଭେ ଓଗାଳିଲେ ସମର କରନ୍ତ ଦୋଷ କାହାର ହେବ ତ ହେ ଶଙ୍କର ॥୭॥

ଶୁଣି ସଦାନନ୍ଦ ଆନନ୍ଦ ହୋଇଣ କାର୍ତ୍ତିକଙ୍କୁ କହେ ଉତ୍ତର
ତୁମ୍ଭେ ନ ବୁଝି କଲ ତ ସମର
କନ୍ୟାଏ ପ୍ରଦ୍ୟୁମ୍ନକୁ ଯେବେ ବରିଲେ[୫] ସେ କାହିଁ ହେଲା ତୁମ୍ଭର[୬] ହେ ନନ୍ଦନ
ଆମ୍ଭେ ଏକ ଆତ୍ମା ସେ ହରିହର, ତୁମ୍ଭେ କମ୍ପାଇଁ କରୁଛ ଅନ୍ତର
ସ୍ତ୍ରିଙ୍କ ସ୍ତ୍ରର ପାଇଁ ଅପ୍ରୀତି ହୋଇବା ଦଶିବନା ଅସୁନ୍ଦର ହେ ନନ୍ଦନ ॥୮॥

---

୧ । ପ. ହେସେ
୨ । ପ. ତାହାର
୩ । ପ. ଅଚ୍ୟୁତ
୪ । ପ. ବୋଲନ୍ତି
୫ । ପ. କନ୍ୟା ଇଚ୍ଛାଏ ପ୍ରଦ୍ୟୁମ୍ନକୁ
୬ । ପ. ସେହି ତ ହେଲା ଆମ୍ଭର

ଏତେ କହି କାର୍ତ୍ତିକକୁ କୋଳେ ଧରି କଇଳାସକୁ ହର ଗଲେ
ଦେଖି ଶ୍ରୀକୃଷ୍ଣ ହରଷ ହୋଇଲେ
ମେରୁଶୃଙ୍ଗ ଦେଖି କୋଦାଳ ବୁଲାଇ[୧] ଆସି ଯୁଦ୍ଧରେ ମିଳିଲେ ହେ ସୁଜନେ,
କୋପ ଭରେଣ ଗୁଡ଼ିଲା ଗର୍ଜନ ଶୁଣି ଚମକେ ଚଉଦ ଭୁବନ
ମେରୁ ତୁଲ୍ୟ କରି କାୟା ବଢ଼ାଇଲା କରି ଅତି କୋପ ମନ ହେ ସୁଜନେ ॥୯॥

ଦେଖି ଅର୍ଜୁନ ଶ୍ରୀକୃଷ୍ଣ ଉଭୟ କରି ଗିରି ଶିଖରେଣ[୨] ଉଠିଲେ
ଦୈତ୍ୟ ଉପରେ ଶର ବୃଷ୍ଟି କଲେ
ଯେତେକ ଶର ପେଷନ୍ତି[୩] କୃଷ୍ଣ ପାର୍ଥ ସକଳେ ଚୂର୍ଣ୍ଣ ହୋଇଲେ ହେ, ସୁଜନେ॥
ଦୈତ୍ୟ ଏକେ ଅଟଇ ବଳଆର[୪] ଇନ୍ଦ୍ରବରେ ବଜ୍ର ଚାର[୫] ଶ ର
ଚଉଦ ଭୁବନ ଇଚ୍ଛାଏ ଗମଇ ଜିଣିଲା ସକଳ ସୁର ହେ, ସୁଜନେ ॥ ୧୦ ॥

ତେଣୁ ଗର୍ବ ଏ ଅଟଇ ମେରୁଶୃଙ୍ଗ ଷଣ୍ଢୀ ତାହାକୁ ନାହିଁ ସମ
କରେ ଶ୍ରୀକୃଷ୍ଣ ଅର୍ଜୁନ ସଂଗ୍ରାମେ
ଆକାଶେ ସକଳ ଦେବେ ଦେଖୁଛନ୍ତି କେ ତାଙ୍କୁ ରଣେ ଜିଣିବ ହେ ସୁଜନେ ।
କୃଷ୍ଣ ଅର୍ଜୁନ ପେଷି ଦେବଶର, ନ ଭେଦଇ[୬] ସେ ଦୈତ୍ୟର ଶରୀର[୭]
କୋପରେ ଅର୍ଜୁନ କୋଦାଳ ଛେଦିଲେ[୮] ପେଷିଣ ଗନ୍ଧର୍ବାଣଶର ହେ ସୁଜନେ ॥୧୧॥

ଦେଖି ମେରୁଶୃଙ୍ଗ ମହାକ୍ରୋଧ ହୋଇ କୋଦାଳ ଶର ଥିଲା କରେ
ନେଇଁ ମାରିଲା ପର୍ବତ ଉପରେ
ତୋଳି ପର୍ବତ ବୁଲାଇ ଫିଙ୍ଗି ଦେଲା ପଡ଼େ ଦଶ ଯୋଜନରେ ହେ ସୁଜନେ
ଅର୍ଜୁନ ବାହୁଡ଼ି ଅସନ୍ତି, ମେରୁଶୃଙ୍ଗ ଯୁଦ୍ଧରେ ସେ ମିଳନ୍ତି
କୋପେଣ[୯] ଅର୍ଜୁନ ମାଳବାଣ ପେଷି[୧୦] ଦୈତ୍ୟର ଶିର ଛେଦନ୍ତି ହେ ସୁଜନେ ॥୧୨॥

---

୧ । ପ. ମେରୁଶୃଙ୍ଗ ଦେଖିଣ ଉଠିଲେ, କୋଦାଳ ଆୟୁଧ ବୁଲାଇ ଆସୁ କୃଷ୍ଣ
୨ । ପ. ଶୀଖରେ
୩ । ପ. ବଳବନ୍ତୀ
୪ । ପ. ଅଟଇ ଏବେ
୫ । ପ. ତାର ବଜ୍ର
୭ । ପ. ଦୈତ୍ୟ ହୃଦର
୮ । ପ. ପେସିଲେ
୯ । ପ. କୋପେ
୧୦ । ପ. ପେଟେଣ

ପ୍ରାଣ ପିବାଦେଲେ ମେରୁଶୃଙ୍ଗ ଦୈତ୍ୟ ଗ୍ରନ୍ଥଳକ ସିଂହ'ରଡ଼

ମେରୁ ପୃଥ୍ୱୀରେ ପଡ଼ିଲାକ ଝଡ଼'

ଥର ଥର ହୋଇ କମ୍ପିଲା ଧରଣୀ ଦୈତ୍ୟ ବେକ ଖଣ୍ଡ ଘଡ଼ ହେ, ସୁଜନେ ।

ଦେବଗଣ ଦେଖି ତୋଷ ହୋଇଲେ ପାର୍ଥଙ୍କ ଶିରେ ପୁଷ୍ପ ବୃଷ୍ଟି କଲେ

ଆଜହୁଁ ଆମ୍ଭେ ସେ ନିସ୍ତିନ୍ତ ହୋଇଲୁଁ ଏମନ୍ତ ଭଣି ବୋଇଲେ ହେ, ସୁଜନେ ॥ ୧୩ ॥

ଶ୍ରୀକୃଷ୍ଣ ଅର୍ଜୁନ ଆଲିଙ୍ଗନ କରି ବଦନେ ଦିଅନ୍ତି ଚୁମ୍ବନ

ଧନ୍ୟ ଧନ୍ୟ ତୁମ୍ଭେ ଦୈତ୍ୟ ଦଳନ

ଏହି କାଳରେ ଅବତାର ହୋଇ, ଉଗ୍ର ତିନି ତ୍ରିଭୁବନ ହେ, ଅର୍ଜୁନ ॥

ଏବେ ଚଳ ଆଶ୍ରମେ ତୁମ୍ଭେ ଯାଅ, ଧର୍ମନନ୍ଦନଙ୍କ ପାଶେ ଜଣାଅ

ଆମ୍ଭେ ଦ୍ୱାରବତୀ ପୁରକୁ ଯାଉଛୁଁ ଆନନ୍ଦେ ତୁମ୍ଭେ ଥାଅ ହେ, ଅର୍ଜୁନ ॥ ୧୪ ॥

ଶୁଣି ଧନଞ୍ଜୟ ନମସ୍କାର କରି ବାହୁଡ଼ି ଆଶ୍ରମେ ପ୍ରବେଶ

ଭୁପନ କରି ଧର୍ମସୁତ ପାଶ

ସକଳେ ଶୁଣି ଅତି ତୋଷ ହୋଇଲେ ଶୁଣି ମେରୁଶୃଙ୍ଗ ନାଶ ହେ, ସୁଜନେ ।

ଦ୍ୱାରକାରେ ବିଜୟ ଦାମୋଦର, ରକ୍ଷା କରନ୍ତି ଭକ୍ତ କନ୍ୟାବର

ଦ୍ୱାରକାପୁରେଁ ସମସ୍ତେ ହେ ଆନନ୍ଦ ଭାଳ କହେ ବଂଶୀଧର ହେ ସୁଜନେ ॥ ୧୫ ॥

---

୧ । ପ. ଗ୍ରନ୍ଥଳ ଏକ

୨ । ପ. ଝାଡ଼

୩ । ପ. ଆଗେ

୪ । ପ. ଦ୍ୱାରକାକୁ

# ଷଷ୍ଠବିଂଶ ଛାନ୍ଦ

## ରାଗ—ରସକୋଇଲି

ପଞ୍ଚ ପାଣ୍ଡବେ ଦ୍ରୌପଦୀଙ୍କ[1] ସେନ    ଆଉର ସଙ୍ଗେ ସର୍ବ ମହାମୁନ
ମଳୟ ବନ ତେଜିଣ[2] ବହନ    ଦକ୍ଷିଣ ମାର୍ଗେ କଲେକ[3] ଗମନ ସେ
ବିଚ୍ଛେଦ ବନେ ମିଳିଲେ ସେ[4]
ଧର୍ମ ନନ୍ଦନ ବଦନ ବୁଝି କଣ ଅଙ୍ଗୀରା ଋଷି କହିଲେ ସେ[5] ॥୧॥

ବଇଦର୍ଭ[6] ଦେଶେ ସୂର୍ଯ୍ୟ[7] କୁଳରେ    ବୀରସେନ ନାମ ମହୀପାଳରେ
ନଳ ବୋଲିକରି ତାର[8] ନନ୍ଦନ    ଅତି ସୁନ୍ଦର ସେ ଜାଣି[9] ମଦନ ସେ
ଦମୟନ୍ତୀ[10] ନାମେ ନାରୀ ସେ
ସୁନ୍ଦର ପଣରେ କେହି ତ[11] ନୋହିବେ ଭୀମ ରାଜାର କୁମାରୀ ସେ ॥୨॥

ତାର ସ୍ୱୟମ୍ବରେ ସକଳ ଦେବେ    ନାଗ ନର ଋଷି[12] ଜପି ଦାନବେ
ଇଚ୍ଛାଏ ସୁନ୍ଦରୀ ନଳକୁ ବରି    ଲଜେ ସର୍ବେ ଗଲେ ସେ ଯାହାପୁରି ସେ
ଦେବତାଏ କୃଷ୍ଟ କଲେ ସେ
ପୁଷ୍କର ସଙ୍ଗେ ନଳ ପଶା ଖେଳିଣ ସର୍ବ ସମ୍ପଦ[13] ହାରିଲେ ସେ ॥୩॥

---

୧ । ଘ. ଦ୍ରୁପଦାଙ୍କ
୨ । ଖ. ପଦ୍ମାବତୀ ବନ ତେଜି
ଗ. ପବନ ତେଜି
ଘ. ମାର୍ଗରେ କଲେ
୩ । ଖ. ବିଚ୍ଛେଦ ବନେ କଲେ
ଘ. ଦକ୍ଷିଣ ମାର୍ଗରେ କଲେ
୪ । ଗ. କେତେ ଦୂର ଚଳେ ଗଲେ ସେ
୫ । ଖ. ବଇଶମ୍ପାୟନ ମହର୍ଷି ଧର୍ମସୁତ
ଛାମୁରେ ପୁଣ କହିଲେ ସେ
ଘ. ବଇଶମ୍ପାଏନ ମହର୍ଷି ଧର୍ମସୁତ
ଛାମୁରେ କହିଲେ ସେ
୬ । ଙ ଘ ଘ. ବଇଦର୍ଭ
୭ । ଗ. ସୂର୍ଯ୍ୟ
ଘ. ସୂର୍ଯ୍ୟ
୮ । ଗ. ନାମେଣ ତାଙ୍କର
ଘ. ନାମରେ ତାଙ୍କର
୯ । ଖ. ସାକ୍ଷାତ
୧୦ । ଗ. ଦମୟନ୍ତୀ
୧୧ । ଗ. ପଣେ କେହି ସର
ଘ. ପଣ କେହି ସମ
୧୨ । ଘ. ନର ବଳ ଋଷି
୧୩ । ଗ. ସମ୍ପତ୍ତି

ବନେ ଟେଷିଲେ ଦମୟନ୍ତୀ ନଳ    ବହୁତ ଦୁଃଖେ ହୋଇଣ ଆକୁଳ
ଦମୟନ୍ତୀ ନଳ ଗୁଣ୍ଡି ବନରେ    ନଳ ରହିଲେ ଯାଇ ଅଯୋଧ୍ୟା ପୁରେ ସେ
ଦମୟନ୍ତୀ ପିତା ଭୁବନେ ସେ
ପୁଣି ଭୀମରାଜା ସ୍ୱୟମ୍ବର କଲେ ଆଇଲେ ସବେ ରାଜନ ସେ[1] ॥୪॥

ଅଯୋଧ୍ୟା ରାଜା ସଙ୍ଗେ ଗଲେ ନଳ    ଚନ୍ଦ୍ରି[2] ଦମୟନ୍ତୀ ଦେଲେ ବରମାଳ
ଏ ବନ ଏବେ ଷଟ୍ଚ୍ଛେଦ ଲୋଡ଼ନ୍ତି[3]    ଷଟ୍ଚ୍ଛେଦ ବନ ନାମ ଧାତା ଦେଲେ ସେ[4]
ଶୁଣ୍ଡି ଯୁଧିଷ୍ଠି ନରଷ ହେ
କର ଯୋଡ଼ିଣ ବୋଲନ୍ତି[5] ଏକ ମନେ ଶୁଣିମା ସବ ତାପସ[6] ହେ ॥୫॥

ବାର ବରଷ ବନବାସ କଲି[7]    ତୁମ୍ଭ ସଙ୍ଗତରେ ମୁହିଁ[8] ବଞ୍ଚିଲି
ଶାସ୍ତ୍ରର ଲୀଳା[9] ନାନା ରସ କଥା    ତୁମ୍ଭ ମୁଖୁ ଶୁଣି ହରିଲି[10] ବ୍ୟଥା ସେ
କଣ୍ଡ କୃପା ମତେ କଲ ଯେ
କ୍ଷୁଧା କ୍ଲେଶ ଜନ୍ମ ମନରେ ନ ଥିବ ମୋର ସଙ୍ଗରେ[11] ବୁଲିଲ ହେ ॥୬॥

---

୧ । ଖ. ସମସ୍ତେ ବଣ ସେ କନ୍ୟାକୁ ଚାହିଁ    ନଳକୁ ବରିବ ଜାଣିମ ଚହିଁ ସେ
ଦେବତା କୁଟ କଲେ ଯେ
ଅତ୍ୟନ୍ତ ବିରୂପ ନଳକୁ କରଣ ସଭା ତଳରେ ବସିଲେ ଯେ ॥
ପୂର୍ବେ ଯେ ଇନ୍ଦ୍ର ଆଜ୍ଞା ପାଇ ନଳ, ବସନ୍ତ ଆଗେ କହନ୍ତି ସକଳ
ସେଠାରେ ଦମୟନ୍ତୀ ତାଙ୍କୁ ଇଚ୍ଛିଲେ    ସଭାରେ ଜୋତେ ବରିବ ହୋଇଲେ ସେ
ସତ୍ୟବ୍ରତ ଛନ୍ତି ପାଳି ଜେ
ତନପୁର ଲୋକେ ତାର ସ୍ୱୟମ୍ବରେ ଲୋଭେଣ ଅଛନ୍ତି ମିଳି ଯେ
ଦମୟନ୍ତୀ ସଭା ମଧ୍ୟେ ପ୍ରବେଶ    ନଳକୁ ଅନାଇଲେ ଚତୁପାଶ
ଯାଣିଲେ ଦେବେ କୁଟ ଛନ୍ତି କରି
ବିରୂପ ହେଲେହେଁ ନଳକୁ ବଣ ଯେ ଜନେ ସବେ ବାହୁଡ଼ିଲେ ଯେ
ଦିବ୍ୟରୂପ ଧରି ସେ ନଳ ନୃପତି ଦମୟନ୍ତୀ ବରି ହେଲେ ଯେ    [ଅଧିକ ପାଠ]

୨ । ଖ. ଚନ୍ଦ୍ର
ଘ. ଚନ୍ଦ୍ରୀ ଦମୟନ୍ତୀ
୩ । ଖ. ଏ ବନେ ଯେଣୁ ଷଟ୍ଛେଦ ହୋଇଲେ
ଗ. ସେ ବନ ଷଟ୍ଛେଦ ସେଣୁ ଲୋଡ଼ିଲ
୪ । ଘ. ଧାତା ଦେଲେ ସେ
୫ । ଘ. କର ଯୋଡ଼ି ବୋଲନ୍ତି
୬ । ଖ ଗ. ତପସ
୭ । ଖ ଘ: ବନେ ବାସ
୮ । ଖ ଘ. ସଙ୍ଗରେ ମୁହିଁ
୯ । ଖ. ଲୀଳା
୧୦ । ଘ ଶୁଣି ତୁମ୍ଭ ମୁଖୁ ହରିଲି
୧୧ । ଖ. ମୋହରି ସଙ୍ଗେ
ଘ. ମୋହର ସଙ୍ଗେ

ଏବେ ତ ଅଜ୍ଞାତ[1] ବାସେ ରହିବ ବରଷେ ତେରଦିନ ମୁଁ ବଖାଣିବ
ପୁଣି ଅଭିଷେକ[2] ହୋଇବ କାଳେ ଆସିବା ହେବେ ସର୍ବ ତପଶୀଳେ[3] ହେ
ଏବେ ଚଳ ନିଜ ସ୍ଥାନ[4] ସେ
ସର୍ବ ସଣଜା ଧରି ସର୍ବେ ଚରଣେ ପଡ଼ିଲେ ଧର୍ମନନ୍ଦନ ସେ[5] ॥୭॥
କଲ୍ୟାଣ କରି ସର୍ବେ ତପିଜନ[6] ସେ ଯାହା ମଠେ ଗଲେକ ବହନ[7]
ତହୁଁ ପାଣ୍ଡବେ ସେତୁଁ ବନେ ପଶି ସ୍ମରନ୍ତେ ବ୍ୟାସେ ମିଳିଲେକ ଆସି ହେ
ପାଣ୍ଡବେ ଘେନ ଦ୍ରୌପଦୀ[8] ସେ
ବେଦବ୍ୟାସଙ୍କର ଚରଣ ତଳରେ[10] ପଡ଼ିଲେ ଯାଇ ତତ୍ପରେ ସେ ॥୮॥
ଆସନ ଦେଇ ବ୍ୟାସଙ୍କୁ ବସାଇ ବସିଲେ ପାଣ୍ଡବେ ହରଷ ହୋଇ
ଯୁଧିଷ୍ଠିର କୃଷ୍ଣଙ୍କୁ କଲେଟି[11] ଲକ୍ଷ୍ୟେ ଶ୍ରୀକୃଷ୍ଣ ତାହା ଜାଣି ଦ୍ୱାରକାପୁରେ ସେ
ବସ୍ତ୍ର ରଥ ଆରୋହିଲେ ସେ
ହସ ହସ[12] ହୋଇ ବଲ୍ଲେଦ ବନରେ ଭୁରିତେ[13] ପ୍ରବେଶ ହେଲେ ସେ ॥୯॥
ଯୁଧିଷ୍ଠିର ପାଦେ କଲେ ଦରଶନ[14] ବସିଲେ ଯାଇ ଜଗତ ଜୀବନ[15]
ଭ୍ରାତ ପାଣ୍ଡବେ ଉଠେଣ ଭୁରିତେ[16] ଶ୍ରୀକୃଷ୍ଣ ପାଦେ ପୂଜଣ ଭୁରିତେ[17] ସେ
ବସିଲେ ସମେଳ[18] ହୋଇ ସେ
ଯୁଧିଷ୍ଠିର ବୋଲନ୍ତି[19] ବନବାସ ଶେଷ ହୋଇଲା କମଳା ସାଇଁ ହେ ॥୧୦॥

---

୧। ଘ. ଏବେ ନେ ଅଜ୍ଞାତ
୨। ପୁଣ ଅଭସେକ
୩। ଗ. ତପିସିଲେ
୪। ଖ. ଆନ
ଗ. ସ୍ଥାନ
୫। ଖ. ଜାଇଁ ସ୍ୱଘନ ସେ
ଗ. ସର୍ବ ଘେନ ଚରଣେ ପଡିଲେ ଯାଇ ବନ୍ଦନ
ଘ. ସ୍ଵଣଯା ସେମା...... ଯାଇଁ ସ୍ୱଘନ ସେ
୬। ଖ. କଲେ ସର୍ବ ତପିଗଣ
ଗ. କରି ସର୍ବ ତପିଜନ
ଘ. କରି ସର୍ବ ତପିଗଣ
୭। ଖ ଘ. ଗଲେ ତତକ୍ଷଣ
୮। ଖ ଗ. ସେହି
୯। ଗ. ପାଣ୍ଡବ ଘେନ ଦ୍ରୋପଦ
ଘ. ଦ୍ରୁପଦ ସେ
୧୦। ଖ ଘ. ଚରଣେ ସତ୍ୱରେ
୧୧। ଖ ଗ ଘ. କରନ୍ତେ
୧୨। ଖ. ସହରସ
ଗ. ସେ ହରସ
ଘ. ସତ୍ୱର ହୋଇ ସେ
୧୩। ଖ ଗ ଘ. ଗୁରିତେ
୧୪। ଖ ଘ. କରନ୍ତୀ ଦର୍ଶନ
୧୫। ଖ ଘ. ଜଗତ ମୋହନ
୧୬। ଖ ଗ. ସୁଠୀଣ ଗୁରିତ
ଘ. ସୁଠୀଣ ଗୁରିତେ
୧୭। ଘ. ଉସରେସେ
୧୮। ଗ. ସୁମେଳ
୧୯। ଖ ଗ ଘ. କଣାନ୍ତୀ

ତାହିଁ ଆମ୍ଭେମାନେ ହେବୁ ଗୋପ୍ୟାନ ଭୀମସେନର ତ ଜାଣ ଭୋଜନ
ଶସ୍ତ୍ରମାନ ନେଇ[1] ତାହିଁ[2] ରଖିବୁ କହିଁ ପ୍ରକାରେ ଆମ୍ଭେ ବନ ନେବୁ ସେ
ଶୁଣି କହନ୍ତି ଶ୍ରୀଧର ଯେ
ଏହା ଜାଣି ଆମ୍ଭେ[3] ଖୋଷ୍ଟ ବନ[4] ମଧ୍ୟେ ଶମୀ[5] ବୃକ୍ଷ ଅଛୁ କହ ଯେ[6] ॥୧୧॥
ଚାଲ ସେଠାକୁ ସର୍ବେ ଯିବା ଚଳ ଆପଣ[7] ଆଗ ହେଲେ ବନମାଳୀ
ପାଣ୍ଡବେ ଦ୍ରୌପଦୀ ବ୍ୟାସ[8] ସଙ୍ଗତେ ଖୋଷ୍ଟ ବନରେ ମିଳିଲେ ଭରତ ସେ[9]
ଶମୀ[10] ବୃକ୍ଷକୁ ଦେଖିଲେ ଯେ
ଅଧେ ଧବଳ ଅଧେକ[11] ଅଟେ ମାଳ ସେ ହରଷର ହୋଇଲେ ସେ ॥୧୨॥
ପାଞ୍ଚ ଶାଖାଟି ସାକ୍ଷାତେ[12] ପାଣ୍ଡବେ ସେ ତରୁ ଖୋଟ ଦ୍ରୌପଦୀ ସ୍କନ୍ଧେ[13]
କୋଣେ କୋଣେ ପଞ୍ଚ ଡାଳ[14] ବିସ୍ତାର ତହିଁର ଖୋଟ ଅତ୍ୟନ୍ତ[15] ଗମ୍ଭୀର ସେ
ଦଶ ଯୋଜନ[16] ତା ଉଚ୍ଚ ଯେ
ଚାହିଁଲେ ଊର୍ଦ୍ଧ୍ୱ ଆକାଶ ପ୍ରାଏ ପ୍ରତେ ଅତ୍ୟନ୍ତ ନିବିଡ଼ ସଞ୍ଚ ଯେ ॥୧୩॥
ଦେଖି ପାଣ୍ଡବେ ହୋଇଲେ ଉଷତ କୃଷ୍ଣ ବୋଲନ୍ତି ଶୁଣ ଧର୍ମସୁତ
ଏ ଖୋଟେ ସହସ୍ର ରଖିବା ନେଇ[18] ଚଢ଼ି କେ ଚଢ଼ିବ[19] ଯୁଧିଷ୍ଠି କହନ୍ତି ସେ
କୃଷ୍ଣ ବୋଲେ ବୃକ୍ଷ ମୂଳ ଯେ[20]
ତତକ୍ଷଣେ ଯାଇ ଶିଖରେ ହୋଇବ ତଷ୍ଟ ବୃକ୍ଷ କଲେ କୋଳ ଯେ ॥୧୪॥

---

୧। ଖ. ସହସ୍ରମାନ ଗୋ
ଗ. ସହସ୍ରମାନ
ଘ. ସହସ୍ର ମାନ
୨। ଗ ଘ: ଭାଣ୍ଡିରେ
୩। ଖ ଙ. ମୁହିଁ
୪। ଖ: ଶମିବୃକ୍ଷ
ଘ. ଧର୍ମିବୃକ୍ଷ
୫। ଘ. ଜୋହବନ
୬। ଗ. ରଚ୍ଛି
ଙ. ଅଛୁ କରି ଯେ
୭। ଗ. ଆପଣେ
୮। ଘ. ଦ୍ରୁପଦୀ ବ୍ୟାସ
୯। ଖ. ଭୁରିଚ୍ଛେ
ଗ. ସମସ୍ତେ
୧୦। ଖ. ଶମି
ଘ. ସମି
୧୧। ଗ. 'ଅଧେକ' ପାଠ ନାହିଁ
୧୨। ଙ. ପଞ୍ଚଶାଖା ଯେ ପଞ୍ଚ
ଘ. ପଞ୍ଚଶାଖାଟି ଯେ ପଞ୍ଚ
୧୩। ଘ. ଦ୍ରୁପଦୀ ସଙ୍ଗତେ
୧୪। ଗ. ଘୁଗିଡ଼ାଳ
୧୫। ଗ. ସ୍କନ୍ଧେ
୧୬। ଖ ଗ ଙ. ଯୋଜନ ସେ
୧୭। ଖ ଘ. ଦଶ
୧୮। ଖ ଘ. ଶସ୍ତ୍ରଅସ୍ତ୍ରମାନ ସହିତ ଏହି ସେ
ଏ ଖୋଟ ଅଛି ଭିତର ହେ
ଶସ୍ତ୍ରମାନ ଏଥି ଗୋପ୍ୟ ରହିଥିବ ଦେବଙ୍କୁ ନୋହେ ଗୋଚର ହେ
ଅଜ୍ଞାତେ ଗଲେ ନେବ ଧନୁଶର ତେବେ ଯେ ବୃକ୍ଷ ହୋଇବ ଅନ୍ତର
ସକଳ ଶସ୍ତ୍ର ଏବେ ରଖ ତହିଁ (ଅଧିକ)
୧୯। ଖ ଙ. ତଡ଼ିବ
୨୦। ଘ. ତଷ୍ଟମୂଳ ହେ

ସୁଧନ୍ୱି ଅର୍ଜୁନଙ୍କ ଆଜ୍ଞା[1] ଦେଲେ ସେହି ପ୍ରକାରେ ସେ ବୃକ୍ଷେ ଉଠିଲେ
ଶମ ଡାଳରୁ ଉପାନ୍ତ ବଢ଼ାଇ ଦଶ କୋଣ ପାଞ୍ଚ ଧନୁକୁ ଦେଇ[2] ସେ
କେନ ଗଦା କୁନ୍ତ[3] ଦେଲେ ସେ
ତରୁ[4] କୋଟରେ ଅର୍ଜୁନ ସବୁ ରଖି ଲେଉଟି ପୁଣ ଆଇଲେ ସେ ॥୧୫॥

ସୁଧନ୍ୱି ବୋଇଲେ[5] ଶୁଣ ହେ ହରି କେ ଅବା ଶସ୍ତ୍ର ଏଥୁ ନେବ ହରି[6]
ଅର୍ଜୁନ ବୋଲନ୍ତି ଅଛି[7] ଉପାଏ ଶସ୍ତ୍ର ଜଗିବାକୁ ନଥିବ ଭଏ[8] ସେ
ଶଭେ କରନ୍ତୁ ସ୍ମରଣ ସେ
ପ୍ରଚଣ୍ଡ ବଳ ଅର୍ଜୁନର ଶ୍ରୀମୁଖରେ[10] ପରବେଶ ତତକ୍ଷଣ ସେ ॥୧୬॥

ଅର୍ଜୁନ ବୋଲନ୍ତି ଶୁଣ ହେ ବାଳ ଶସ୍ତ୍ର ଅଛି ଶମୀ ବୃକ୍ଷ କୋଟର
କବନ୍ଧ ରୂପେ ଡାଳେ ଲଗିଥିବୁ[11] ପରଲୋକ ଦେଖି ଉତ୍ତର ଦେବୁ[12] ସେ
ପ୍ରଚଣ୍ଡ ବଳ ହରଷ ସେ
ଅତି ଅଦଭୁତ ସେ ବୃକ୍ଷ ଡାଳରେ କବନ୍ଧ ରୂପେ[13] ପ୍ରକାଶ ସେ ॥୧୭॥
ଅତି ଧର୍ମ[14] କରି ଦେଉଛୁ ଉତ୍ତର ଶୁଣି ସୁଧନ୍ୱି ମୋହେ ତଳେ ପଡ଼ି
ଅର୍ଜୁନ କହେ ନକର[15] ଶବଦ ଶୁଣି କବନ୍ଧ ହେଲା ନିଶବଦ ସେ
ସୁଧନ୍ୱି ଚେତା ପାଇଲେ[16] ସେ
ତାର ଥିଲେ ଶସ୍ତ୍ର କେହୁ ନେଇପାରେ ବୋଲିଣ ପ୍ରଶଂସା କଲେ ସେ ॥୧୮॥

---

୧ । ଘ. ଆଜ୍ଞା
୨ । ଘ. ପାଞ୍ଚଧନୁ ଦଶ କୋଣକୁ ଦେଇ ସେ
୩ । ଖ. କୋନ୍ତ
୪ । ଖ. ବୃକ୍ଷ
୫ । ଗ ଘ. ବୋଲନ୍ତି
୬ । ଗ. ଏଥୁ ସବୁ ନେମାଭ ହରି
ଘ. ଶସ୍ତ୍ରମାନ କେବା ନଅଇ ହରି
୭ । ଗ. ପୁଣ
୮ । ଖ. ଜଗିଥିବ
୯ । ଗ. ଅଛୁ ଉପାଏ
୧୦ । ଘ. ଅର୍ଜୁନଙ୍କ ଶ୍ରୀମୁଖରେ
୧୧ । ଗ. କୋବନ୍ଧ ରୂପେ ବୃକ୍ଷ ଥିବୁ ଲଗି
ଘ. ଲଗିଥିବ
୧୨ । ଗ. ଉତ୍ତର ଉତ୍ତ
ଘ. ଉତ୍ତର ଦେବ ସେ
୧୩ । ଖ. ଅଦଭୁତୀ ବନ୍ଧନେ ଡାଳରେ
ଲଗିଲେ କବନ୍ଧ ରୂପ
ଗ. ଅଦଭୁତ ଅବନ୍ଧନରେ ସେ ଡାଳେ
ବନ୍ଧନ ରୂପ
ଘ. ଅଦଭୁତୀରେ ବନ୍ଧନ ଡାଳେ ଲଗିଲେ
କବନ୍ଧ ରୂପ
୧୪ । ଗ. ଧର୍ମ
ଘ. ଧଧ
୧୫ । ଘ. ଡାକେ ନ କର
୧୬ । ଘ. ସୁଧନ୍ୱି ଚେତନା ପାଇ ସେ

ଯୁଧିଷ୍ଠିଙ୍କି କହନ୍ତି ପୀତବାସ ସେଠାରୁ ସାତ କୋଶ ମଚ୍ଛ ଦେଶ[୧]
ବିରାଟ ନାମେ ତହିଁର ରାଜନ ସେ ନଗରେ ତୁମ୍ଭେ ହୋଇବ ଗୋପ୍ୟାନ ସେ
ଆନ ଆନ ନାମ ବହି ସେ
ବ୍ୟାସେ ଦ୍ରୌପଦୀଙ୍କି ଏକାନ୍ତେ କହିଲେ[୨] ଉତ୍ତର ଶ୍ରୀକୃଷ୍ଣ ତହିଁ[୩] ସେ ॥୧୯॥

କହିଣ ବ୍ୟାସେ ଅନ୍ତର ହୋଇଲେ ଶ୍ରୀକୃଷ୍ଣ ତାଙ୍କୁ ବହୁ ପ୍ରବୋଧିଲେ
ଯୁଧିଷ୍ଠି ପାଦେ ଦରଶନ କରି ମେଲାଣି ତହୁଁ[୪] ହୋଇଲେକ ହରି ସେ
ଖଗେଶ୍ବରେ ବିଜେ କଲେ ସେ
ବୀର ପାଣ୍ଡବଙ୍କୁ କଲ୍ୟାଣ କରିଣ ଦ୍ୱାରକା ପୁରେ ଚଳିଲେ ସେ[୫] ॥୨୦॥

ଶମୀ ବୃକ୍ଷ ତଳେ[୬] ପଞ୍ଚ ପାଣ୍ଡବେ ଦ୍ରୌପଦୀଙ୍କି[୭] ଘେନ ଆନନ୍ଦ ଭାବେ
ବସିଣ ତହିଁ[୮] କରନ୍ତି ବିଚାର ଶ୍ରୀକୃଷ୍ଣ ପାଦ ଚିନ୍ତି ନିରନ୍ତର ସେ
ଦୀନ ବିଶ୍ୱମ୍ଭର ଦାସ ସେ
ଅଭୟ ଶ୍ରୀପଦ୍ମପାଦେ[୯] ଭରସାରେ ବନ ପର୍ବ କଲି[୧୦] ଶେଷ ସେ ॥୨୧॥

---

୧ । ଖ ଗ ଘ. ମତ୍ସଦେଶ
୨ । ଗ କହନ୍ତି
ଘ. ଦ୍ରୁପଦୀଙ୍କ ଏକାନ୍ତେ କହନ୍ତି
୩ । ଗ. ଭଜ
୪ । ଗ. ତହିଁ
୫ । ଖ ଗ ଘ. ମିଳିଲେ
୬ । ଙ, ଶମୀବୃକ୍ଷମୂଳେ
ଘ. ସମୀବୃକ୍ଷ ତଳେ
୭ । ଘ. ଦ୍ରୁପଦୀଙ୍କି
୮ । ଘ. ବସିଣ ତହୁଁ
୯ । ଚ. ପାଦପଦ୍ମ
ଘ. ଅଭୟ ପାଦପଦ୍ମ
୧୦ । ଖ. ହେଲା
ଘ. ଏ ବନ ପର୍ବ ହେଲା

# ବିରାଟ ପର୍ବ

## ପ୍ରଥମ ଛାନ୍ଦ

ରାଗ—ଚକ୍ରକେଳି

ଶ୍ରୀ ଗଣେଶାୟ ନମଃ[1]

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ତ୍ରାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥୧॥

ଜୟ ଜୟ ବୃଷଭାନୁ ନନ୍ଦିନୀ
ଜୟ ନାଗ ସୁର ନର[3] ବନ୍ଦିନୀ ॥୧॥

ଜୟ ଜୟ ନିକୁଞ୍ଜ ବିନୋଦିନୀ
ଜୟ ଜୟ ଶ୍ରୀକୃଷ୍ଣ ଆନନ୍ଦିନୀ[4] ॥୨॥

ଜୟ ରାସ ଉଲ୍ଲାସ ବିଳାସିନୀ[5]
ଜୟ ବେଣୁଧର ଧୀର ନାଶିନୀ[6] ॥୩॥

ଜୟ ଜୟ ସ୍ୱଚ୍ଛ ନୀର ବାସିନୀ[7]
ଜୟ ଜୟ ଘନସାର ହାସିନୀ[8] ॥୪॥

ଜୟ ଜୟ ସରସିଜ ଲୋଚନୀ[9]
ଜୟ ଜୟ ଭବଭୟ ମୋଚନୀ ॥୫॥

---

୧ । ଖ ଗ. ପାଠ ଶ୍ଳୋକଦସ୍ତ
ଘ. ଶ୍ରୀ ଗଣେଶାୟ ନମଃ ଅବସ୍ଥ ମନ୍ତ୍ର
୨ । ଖ ଗ ଘ. ଶ୍ଳୋକଟି ନାହିଁ
୩ । ଗ ଘ. ନାଗନର ଶୁର
୪ । ଘ. ଛନ୍ଦାଦନ
୫ । କ. ବିଳାସେନ
ଗ. ବିମ୍ବାସିନ
ଘ. ପ୍ରସନ୍ନ ନାସ୍ ବିନାସିନ
୬ । କ. ନାସେନୀ
ଖ ଗ. ନାସିନ
ଘ. ନାସନ
୭ । ଖ. ନୀଳ ବାସିନ
ଗ ନୀଳଗର୍ଭ ବାସିନ
ଘ. ନୀଳ ବାସନ
୮ । ଖ. ପୋଥିରେ ପାଠ ନାହିଁ
ଘ. ହାସନ
୯ । ଖ. ପୋଥିରେ ପାଠ ନାହିଁ

ତୁମ୍ଭ ଚରଣେ ହେଉ[1] ମୋର ମନ
ଏଣୁ ଦୟା କରିବେ ଭଗବାନ[2] ॥୬॥
ତୁମ୍ଭେ ସାରଦା ରୂପେ କଣ୍ଠେ[3] ବସ
ଏହୁ ବିରାଟ ଭାରତ ପ୍ରକାଶ ॥୭॥
ଲେଖିବାର ସିନା ମୋର ଆସ୍ଥା
ଏତ ଅଗାଧ ଚରିତ ଭାରତ[4] ॥୮॥
ସାଧୁଜନେ ଶରଧାରେ ଶୁଣିମେ
କୃଷ୍ଣ ଚରିତ ହୃଦରେ[5] ଗୁଣିମେ ॥୯॥
କୃଷ୍ଣ ପ୍ରସଙ୍ଗ ହରଷ[6] ଚିତ୍ତରେ[7]
ମୋର ଦୋଷ ନ ଧରିବେ ଗୀତରେ ॥୧୦॥
ବନବାସ ଅନ୍ତେ ପଞ୍ଚ ପାଣ୍ଡବେ
ବିରାଟ ନଗ୍ରେ ଅଗ୍ୟାଂତ ବଞ୍ଚିବେ[9] ॥୧୧॥
ତହିଂ ମହାରସ[10] ଲୀଳା ହୋଇବ
ତାହା କାହା ସକ୍ଷ ଲେଖି ପାରିବ[11] ॥୧୨॥
ଏହା ବିଚାରି ଦୟାକର ମୋତେ
ତୁମ୍ଭ ବିନୁ ଭରସା ନାହିଁ ଚିତ୍ତେ[12] ॥୧୩॥
ରାଧାକୃଷ୍ଣ ଚରଣେ ନମସ୍କାର[13]
ଅତି ପତିତ ଦୀନ[14] ଡଣ୍ଡୁସ୍ୱର ॥୧୪॥
ଶୁଣ ସାଧୁଜନେ ତୋଷ ମନରେ[15]
ପଞ୍ଚ ପାଣ୍ଡବେ ହେ ଜ୍ୟୋଷ୍ଠ ବନରେ ॥୧୫॥

---

୧ । କ ଗ ଘ. ରଖ
୨ । ଗ ନ କରେ ଭଗବାନ
୩ । କ. କଣ୍ଠେ
ଖ. ମୋର କଣ୍ଠେ
୪ । ଖ. ଭାରତ ଚରିତ
୫ । ଗ. ମୁଖରେ
ଙ. ହୃଦଏ
ଘ. ମନରେ
୬ । ଙ. ପ୍ରସଙ୍ଗେ ହରଷ
ଘ. ଚରିତ ହରଷ
୭ । ଘ. ମନରେ
୮ । ଘ. ନ ଧରିବ ଚିତ୍ତରେ
୯ । ଗ. ଦେଶ ଅଜ୍ଞାତେ ବସିବ
୧୦ । ଗ. ମାହାରସ
୧୧ । ଖ. କାହାର ଶକ୍ୟରେ ଲେଖିବ
ଗ ଘ. ସକ୍ଷେ ଲେଖି ପାରିବ
୧୨ । ଘ. ତୁମ୍ଭ ଭରସା ବିନୁ ନାହିଂ ଚିତ୍ତେ
୧୩ । ଖ. ଚରଣ ସିରେ ମୋର
୧୪ । କ ଘ. ହୀନ
୧୫ । ଘ. ମନ ତୋଷରେ

ଏବେ ଦ୍ରୋପଦ ନନ୍ଦନୀ ଅଛନ୍ତି
ଶମି ବୃକ୍ଷମୂଳେ ବସି[1] ଗଳନ୍ତି ॥୧୬॥
ସୁରସ୍ୱାମିଙ୍କି ସ୍ତୁତି ଧର୍ମସୁତ[2]
ଦ୍ରୋପଦୀ[3] ଆଦ ଶୁଣ ମୋ ଭାରତ ॥୧୭॥
ଯାହା ଶ୍ରୀକୃଷ୍ଣ ଚନ୍ଦ୍ର ଗଲେ କହି
ଗୋପ୍ୟେ ବିରାଟ ନଗ୍ରେ ଥାଅ ରହି ॥୧୮॥
ବରଷେ ଭେଉଦନ କେଉଁ ରୂପେ[4]
ତହୁଁ[5] ଅଜ୍ଞାତ ବଞ୍ଚିବା ସ୍ୱରୂପେ[6] ॥୧୯॥
କେହି ଜାଣନ୍ତି ଚିହ୍ନିରେ ନୋହିବ
ଜଣ କେ ଚିହ୍ନି କ ରୂପେ[7] ରହିବ ॥୨୦॥
କର ଯୋଡ଼ି ଜଣାନ୍ତି ବୃକୋଦର
ଦେବ ମୁହିଁ ହୋଇବି[8] ସୂପକାର ॥୨୧॥
ମୋତେ ବ୍ରହ୍ମା ପ୍ରସନ୍ନ ହୋଇଲେ[9]
ନତ ପ୍ରତିରେ ରନ୍ଧନ[10] କହିଲେ ॥୨୨॥
ନଳ ଗଜସ୍ଥ ସଙ୍କଟ ଯେ ବିଧି
ମୋର ପାକରେ ଅମୃତ ପ୍ରସିଦ୍ଧି ॥୨୩॥
ମୋର ନାମ ଯେ[11] ବଲ୍ଲଭ ହୋଇବ
ବିଷ୍ଣୁ[12] ମାୟାରେ କେହି ନ ଚିହ୍ନିବ ॥୨୪॥

---

୧ । ଖ ଘ. ବୃକ୍ଷତଳେ ବସି
୨ । ଗ. ଶୁଦ୍ଧି ଧର୍ମଶ୍ରୁତ
୩ । କ ଙ. ଦ୍ରୁପଦୀ
ଘ. ଦ୍ରୋପଦ
୪ । ଗ. ମୋ ବଚନ
ଘ. ମୋ ଉତ୍ତର
୫ । କ ଘ. କହୁରୂପେ
ଙ. କହିରୂପେ
୬ । କ ବଞ୍ଚିବ ସ୍ୱରୂପେ
୭ । କ. କେ ରୂପେ
୮ । ଖ ଘ. ମୁହିଂ ହୋଇବ ତହିଁ
୯ । ଘ. ପ୍ରସନ୍ନ ହୋଇଲେ
୧୦ । ଙ. ପ୍ରତ ଲକ୍ଷଣା ସେ
ଖ ଘ. ପ୍ରତ ରନ୍ଧନ ସେ
୧୧ । କ. ମୋର ନାମ
ଙ. ମୋହୋର ନାମ
୧୨ । ଙ. ଦେବ

ପୁଣ ଅର୍ଜୁନ ତହିଁ ଜଣାଇଲେ
ମୋତେ ଉର୍ବଶୀ ପୂର୍ବେ ଶାପ[୧] ଦେଲେ ॥୨୫॥
ଏଣୁ ନପୁଂସକ ମୁଂ ଯେ ହୋଇବ[୨]
ସ୍ତ୍ରୀର[୩] ବେଶରେ ଜଗତ ମୋହିବ ॥୨୬॥
ଉତ୍ତରା ନାମେ ବିରାଟର ସୁତା[୪]
ତାକୁ ଶିଖାଇବ ନୃତ୍ୟ ସଙ୍ଗୀତା[୫] ॥୨୭॥
ନାଟ ମଢରେ ଥିବ ମୁଁ ହରଷେ
ମୋର ନାମ ବୃହନ୍ନଳା[୬] ପ୍ରକାଶେ ॥୨୮॥
ପୁଣ ଜଣାଇଲେ ତହିଁ ଦ୍ରୋପଦୀ[୭]
ମୋତେ ଜନ୍ମ ଅଛନ୍ତି ବ୍ୟାସ ଯତ୍ନ[୮] ॥୨୯॥
ମୁହିଁ ବିରାଟ ଅନ୍ତପୁରେ ଥିବ
ଶ୍ରୀକୃଷ୍ଣାଙ୍କୁ ବେଶ[୯] ଲାଗି କରିବ ॥୩୦॥
ସଇନ୍ଧ୍ରୀ ନାମ ମୋହର[୧୦] ହୋଇବ
ରାଣୀ ସଦୟା ମୋତେ କରିଥିବ ॥୩୧॥
ପୁଣ ଜଣାଇଲେ ତହିଁ ନକୁଳ
ଦେବ ମୁହିଁ ହୋଇବ ବାଜପାଳ[୧୧] ॥୩୨॥

---

୧ । ଖ. ତହିଁ ଶାପ
ଗ. ପୂର୍ବେ ଭୂପ
ଘ. ପୂର୍ବେ ଶାପୀ
୨ । କ ଘ. ନପୁଂସକ ମୂଜେ ହୋଇବ
ଗ. ନପୁଂସକ ମୁହଁ ହୋଇବ
ଘ. ନପୁଂସକ ମୁହିଁ ହୋଇବ
୩ । ଖ. ନାରୀ
୪ । କ ଗ. ସୂତ
୫ । କ-ଗ ସଙ୍ଗିତ
୬ । କ ବୃହନଳ
ଖ. ବୃହନାର
ଗ. ବୃହନଳା
୭ । କ. ଦ୍ରୋପଦୀ
ଘ. ବୋଲନ୍ତି ତହିଁରେ ଦ୍ରୋପଦୀ
୮ । ଗ. ମୋତେ କହିଣ ଗଲେ ବ୍ୟାସଜଣ
୯ । କ ଖ. ଶ୍ରୀକୃଷ୍ଣଙ୍କୁ ବେଶ
୧୦ । କ ଘ. ମୋର
ଖ. ମୋହୋର
୧୧ । ଗ ଘ. ଦେବ ହୋଇବ ମୁହିଁ ବାଜପାଳ

ମୋତେ ଅଶ୍ୱିନୀ କୁମାରେ କହିଲେ
ଅଶ୍ୱ ବିଦ୍ୟାମାନ ସ୍ତେଁ ଶିଖାଇଲେ ॥୩୩॥
ବିରାଟର ଅସାଧ୍ୟ ଅଛି ବାଜି
ତାକୁ ଦେଖନ୍ତେ ମୁଁ କରିବି[1] ସଜ ॥୩୪॥
ମୋତେ ବିରାଟ ପ୍ରସନ୍ନ ହୋଇବ
ଗ୍ରନ୍ଥୀକ ନାମ ମୋର[2] ବୋଲାଇବ ॥୩୫॥
ପୁଣ ଜଣାନ୍ତି ତହିଁ[3] ସହଦେବ
ମୋତେ ପ୍ରସନ୍ନ ହେଲେ ବାସୁଦେବ ॥୩୬॥
ଗୋକୁଳ ବିଦ୍ୟା ମୋତେ ଶିଖାଇଲେ
ପୁଣ ମୋହନ ବଂଶୀ[4] ଗୋଟି ଦେଲେ ॥୩୭॥
ପୃଥୁନା[5] ନାମେ ବିରାଟର ଗାବ
ଅସାଧ୍ୟ ସେ ମୋତେ[6] ସାଧ୍ୟ ହୋଇବ ॥୩୮॥
ମୋତେ ଗୋମାତା ହୋଇବେ ପ୍ରସନ୍ନ[7]
ଗୋରୁ ସେବାରେ ମୋର ପିବ ଧନ ॥୩୯॥
ଦିବ୍ୟ ରୂପେ[8] ମୁଂ ହୋଇବି ଗୋପାଳ
ମୋର ନାମ ହୋଇବ ତନ୍ତ୍ରପାଳ[9] ॥୪୦॥
ଶୁଣି ସନ୍ତୋଷ ଧର୍ମଙ୍କ ନନ୍ଦନ
ପୁଣ ଜଣାଇଲେ ସେ ଭୀମସେନ ॥୪୧॥
ତୁମ୍ଭେ କେମନ୍ତ ପ୍ରକାରେ ରହିବ[10]
ସତ କହିଲେଟି[11] ଜଣା ହୋଇବ ॥୪୨॥
ଶୁଣି କହନ୍ତି ଦେବ ଧର୍ମରାଜ
ଆମ୍ଭେ ହୋଇବୁଂ ସଭାପଣ୍ଡା ଦ୍ୱିଜ[12] ॥୪୩॥

---

୧। କ ଖ. ଦେଖିଲେ ମୁହିଁ କରିବି
ଘ. ଦେଖନ୍ତେ କରିବ ମୁଁ
୨। କ. ତୋର ନାମ
୩। ଖ. ଜଣାଇ
ଗ. ପୁଣି ଜଣାନ୍ତି
୪। କ ଗ. ମୋହନ ବସିଂ
୫। କ ଖ. ପ୍ରୋଥନା
୬। କ ଗ. ଅସାଧେ ସେ ମୋର
୭। ଗ ହୋଇବ ପ୍ରସନ
ଘ. ଗୋମାତ ହୋଇବ ପ୍ରସନ
୮। ଖ. ଦିବ୍ୟ ରୂପ
୯। ଗ. ତନ୍ତ୍ରପାଳ
ଘ. ତନ୍ତ୍ରିପାଳ
୧୦। ଗ. କେଉଁ ପ୍ରକାରେ ଆପଣ ରହିବ
୧୧। ଗ ଘ. ସତ କହିଲେଟି
୧୨। ଘ. ଦ୍ୱିଜ

କୁନ୍ତୀ[1] ଜନମା ଅଟନ୍ତି ଆମ୍ଭର
କୁଳଭଟ ହୋଇବ ନାମ ମୋର[2] ॥୪୪॥
ସଭାପଣ୍ଡା ହୋଇଣ ବସିଥିବୁଁ
ଚଉଟର ସଙ୍ଗେ ପଶା ଖେଳିବୁଁ ॥୪୫॥
ଭୀମସେନ ବୋଲନ୍ତି ହେ[3] ଅର୍ଜୁନ
ଭୁଲ ଏବେ ବାହୁଡ଼ି[4] ଯିବା ବନ ॥୪୬॥
ଦୁର୍ଯ୍ୟୋଧନ[5] ସଙ୍ଗେ ପଶା ଖେଳିଲେ
ଭାଇ ଭାରିଯା ସମେତ[6] ହାରିଲେ ॥୪୭॥
ରାଜ ବଭୂତ ଛାଡ଼ିଣ ବନରେ
ଏବେ ପଶା ପଡ଼ଲଣି ମନରେ ॥୪୮॥
ଧର୍ମନନ୍ଦନ ବୋଲେ ଏ[7] କୁହଇ
ଧୀର ହୋଇ ଶୁଣ ଯାହା[8] କହଇ ॥୪୯॥
ଶକୁନିର କପଟ ବିନା ପଶା
ତଣ୍ଡି ବୁଡ଼ିଲା ଆମ୍ଭର ଭରସା ॥୫୦॥
ଧର୍ମ ପଣା ଚଉଟରେ[9] ଖେଳିବୁଁ
ନାନା ଜନ୍ତୁଙ୍କେ ଧନ ବାଣ୍ଟିବୁଁ[10] ॥୫୧॥
ତୁମ୍ଭେ ସଭାକୁ ଶୁଣାଇ ଯିବ
ଆମ୍ଭଙ୍କୁ ରକ୍ଷି ଦ୍ରୁପଦ କରିବ ॥୫୨॥
ତେଣୁ କରି[11] ପ୍ରଥମେ ଯିବୁଁ ଆମ୍ଭେ
ଜଣେ ଜଣେ ହୋଇଣ ଯିବ ତୁମ୍ଭେ ॥୫୩॥

---

୧ । କ ଗ ଘ. କୋନ୍ତି
୨ । ଖ. ନାମ ହେବ ମୋହୋର
ଗ. କୋଳଭଟ—ମୋର
ଘ. କୋଳଭଟ—ମୋର
୩ । କ ଖ. ବୋଲେ ହେ
୪ । ଗ ଘ. ଭୁଲ ବାହୁଡ଼ି ଏବେ
୫ । କ ଘ. ଦୁର୍ଯୋଧନ
ଖ. ଦୁର୍ଯୌଧନ
୬ । ଖ ଘ. ସହିତେ
ଗ. ସଙ୍ଗତେ
୭ । ଖ ଗ. ବୋଇଲେ
୮ । ଖ. ତାହା
୯ । ଖ. ଛଡ଼ି ପଶା ବସାଟେ
୧୦ । ଖ ଗ ଘ. ହଣିବୁଁ
୧୧ । ଗ. ଏଣୁକରି

ଏବେ କହୁଣ ଦେବ ଧର୍ମଶିଷ୍ଟ[1]

ଆପେ ହୋଇଲେ ବିପ୍ରବର ବେଶ ।୫୪।

ପୁଣ ଅର୍ଜୁନ କହନ୍ତ ଉତ୍ତର

ଗୃପତେ ଥିବା ବିରାଟ ନଗର[3] ।୫୫।

ସୁଧିଷ୍ଟିଙ୍କି ଯେ[4] ଅପମାନ କରିବ

ଦ୍ରୋପଦୀଙ୍କି ଯେ ଭର୍ତ୍ସନା ବୋଲିବ[5] ।୫୬।

ତାଙ୍କୁ ଗୃପତେଣ ନାଶ[6] କରିବା

ଏହୁ କଥା ଚିତ୍ତରେ ଧରିଥିବା[7] ।୫୭।

ଏହୁ ସତ୍ୟ ସତ୍ୟ ଆର୍ଯ୍ୟ ନିୟମ

ଏଥି ସାକ୍ଷୀ ପୁରୁଷଙ୍କ ଉତ୍ତମ[9] ।୫୮।

ଏହୁ ବଚ୍ଚର ସର୍ବେ ସିଦ୍ଧ[10] କଲେ

ଶୁଣି ଶୁଧିଷ୍ଟି[11] ସନ୍ତୋଷ ହୋଇଲେ ।୫୯।

ଧର୍ମ ନନ୍ଦନ ପଦେ[12] ନମସ୍କାର

କହେ ଅଧମ ଦୀନ ବିଶ୍ୱମ୍ଭର[13] ।୬୦।

---

୧ । ଖ. ସିଷ୍ଟ
୨ । ଘ. ଗୃପତେଣ
୩ । ଖ. ପାଠ କାଟଦଷ୍ଟ
୪ । କ. ଯୁଦେଷ୍ଟିଙ୍କି କେ
ଘ. ଯୁଧେଷ୍ଟିଙ୍କି ଯେ
୫ । କ. ଦ୍ରୋପଦୀଙ୍କା କେ ଭ୍ରୁଛନା କହିବ
ଗ, ଦ୍ରୁପଦକ କେ ଭ୍ରୁଛନା ବୋଲିବ
ଘ. ଦ୍ରୋପଦିଙ୍କି ଯେ ଭ୍ରୁଛନା ବୋଲିବ
୬ । କ—ଗ ନାଶ
୭ । ଘ. ଏହି କଥା ଚିତରେ ଧରିଥିବା
ତାକୁ ଗୃପତେଣ ଆମ୍ଭେ ମାରିବା
୮ । କ. ଆସ୍ଥ
ଖ. ଏହୁ
୯ । ଖ. ଏଥକୁ ସାକ୍ଷ ପୁରୁଷ ଉତମ
ଗ. ଏଥି ସାଖି ପୁରୁଷଙ୍କ ଉତମ
୧୦ । ଖ. ସର୍ମସିଦ୍ଧ
୧୧ । କ. ଯୁଜେଷ୍ଟି
ଘ. ଯୁଧେଷ୍ଟି
୧୨ । ଘ. ପାଦେ
୧୩ । କ—ଗ ଧନ ବିଶମ୍ଭର
ଘ. ଦିନ ବିସ୍ୱମ୍ଭର

## ଦ୍ୱିତୀୟ ଛାନ୍ଦ

### ରାଗ—ଘଣ୍ଟିଆରି

ଶଶୀବଂଶ ଧର୍ମଧ୍ୱଜ ଯେ,[1] କପଟେ ହୋଇଲେ ଦ୍ୱିଜ[2]
ଗ୍ରୀଷମ ଋତୁ ମଧ୍ୟାହ୍ନ[3] ଉତ୍ତାପେ ବିକାଶୁଛି ତାଙ୍କ[4] ତେଜ ଯେ ॥୧॥

ଗାଲ ବସନ[5] ପିନ୍ଧିଲେ ଯେ ହିଙ୍ଗୁଳ କର ଛନ୍ଦିଲେ
ଟୀଳ ପଟମ ଅଙ୍ଗଭଙ୍ଗୀ କଙ୍କଣ ଶ୍ରୀ ଅଙ୍ଗରେ ପକାଇଲେ ଯେ ॥୨॥

ଲମ୍ବିତ[6] ଜୁଡ଼ା ସୁନ୍ଦର ଯେ ତୁଳସୀଦଳ ମଧ୍ୟର
ଦକ୍ଷିଣ[7] କର ପଲ୍ଲବ ଅନାମିକା ମୁଦ୍ରିକା ସ୍ୱର୍ଣ୍ଣ ରତ୍ନର ଯେ ॥୩॥

କପୋଳରେ ଠିଆ ଶରା ଯେ କର୍ଣ୍ଣେ ଉତ୍ତୁରି ପଇତା
ବାମକରେ ତମ୍ବା ପାଣୀ କୁଣ୍ଡଳ[8] ଦକ୍ଷିଣ କରରେ ଛତା ଯେ ॥୪॥

ଗଳାରେ ରୁଦ୍ରାକ୍ଷ ମାଳ ଯେ ଚନ୍ଦ୍ରା କଲେ ବନମାଳ[9]
ବିରାଟ ରାଜ୍ୟକୁ ଗମନ କରନ୍ତେ[10] ବେଣ୍ଣପାଣେ ନେତ୍ର ଭାଳ[11] ଯେ ॥୫॥

ନଦ ଦେଶରେ ମିଳିଲେ ଯେ ସମସ୍ତେ ନେତ୍ରେ ଦେଖିଲେ
ପ୍ରଶଂସା କରୁ କରୁ ନୃପ ଅସ୍ଥାନେ ପ୍ରବେଶ ଭୂତଳେ ହେଲେ[12] ଯେ ॥୬॥

---

୧। କ. ଧର୍ମି ଧର୍ମଧ୍ୱଜ ନେ
୨। ଘ. ଦେ
୩। ଗ. ମଧ୍ୟାହ୍ନ
ଘ. ମଧ୍ୟାହ୍ନ
୪। ଖ. ତେଜୁ ମାହାଁ
ଗ. ତେଜଅଛି ତାଙ୍କ
୫। ଗ. କଳ ବସନ
୬। କ, ଲମ୍ବିତ ଛଟ
ଖ. ଲମ୍ବିତ ଜାଟା
୭। ଙ. ଦକ୍ଷିଣ
ଙ. ଉଆଡ
୮। କ ଖ. କୁସୁବନ୍ତ
୯। ଗ. ଚନ୍ଦ୍ରାକର ବନମାଳ
ଘ. ଚନ୍ଦ୍ରାକରେ ବନମାଳ
୧୦। ଚ, ଗମନ କରନ୍ତି
୧୧। ଘ. ନେତ୍ର ଭାଳ
୧୨। କ. ନୃପ ଅଗ୍ରେ ଭୂତଳେ ହେଲେ
ଖ. ନୃପ—ହେଲେ
ଗ, ନୃପ ଅସ୍ଥାନେ ଭୂତଳେ ପ୍ରବେଶ ହେଲେ।
ଘ, ନର୍ମ ଅସ୍ଥାନେ—ହେଲେ

ବିରାଟ ରାଜାଏ କରି ସେ ବତୁଥାଠ ଛନ୍ତି ପୁରି
ଯାତକେଶ୍ୱର ମନ୍ତ୍ରୀକ ସଙ୍ଗେ ସେନ ରାଜମଣ୍ଡରେ[1] ବସ୍ଥିର ସେ ।୭।
ଯୁଧିଷ୍ଠି[2] ଚଳି ପ୍ରବେଶ ସେ ଦେଖି ସର୍ବେ କଲେ ହାସ
ନମସ୍କାର କରି ଆସନ[3] ଗ୍ରହଣ ଭକ୍ତ ହୋଇଲେ ନରେଶ ସେ ।୮।
କରେ ଧରି ରତ୍ନ ଝରି[4] ହେ ପାଦ ପ୍ରକ୍ଷାଳନ[5] କରି
କନକ ଆସନେ ବସାଇ ନୃପତି[6] ବହୁ ପୂଜା ତାଙ୍କୁ କରି ହେ ।୯।
କର ଯୋଡ଼ିଣ ଜଣାଇଁ ସେ କମ୍ପା ରାଜାଏ ଗୋସାଇଁ
କେଉଁ ଦେଶେ ଘର କ ନାମ ତୁମ୍ଭର କହିବା ହେଉ ବୋଇଲେ ସେ[7] ।୧୦।
ଯୁଧିଷ୍ଠି[8] କହନ୍ତି ହସି ସେ ଶୁଣ ହେ ନୃପତି ବଶୀ[9]
ପଞ୍ଚକଟକ ଜାଣୁଟିକ ହସ୍ତିନା ଆମ୍ଭେ କୃଷ୍ଣଗଳ[10] ଦେଶୀ ହେ ।୧୧।
ଚଳି ଯୁଧିଷ୍ଠି[11] ନୃପତି ହେ ପଞ୍ଚ ପାଣ୍ଡବ ଦ୍ରୌପଦୀ[12]
ପଶାରେ ହାରିଣ ଅରଣ୍ୟେ ପଶିଲେ ତେଣ ସକଳ ବଞ୍ଚିତ ହେ ।୧୨।

---

୧ । କ. ଜାତେକେଶ୍ୱର ମନ୍ତ୍ରୀକ ସଙ୍ଗେ ସେନଗ ସେ
ଖ. ଜାତକେଶ୍ୱର ମନ୍ତ୍ରୀକ ସେନ ସଙ୍ଗେ ଜନମାଗ୍ଲକ
ଘ. ଯାତେକେଶ୍ୱର ମନ୍ତ୍ରିକ ସଙ୍ଗେ ସେନ ରାଜନଗ ସେ
୨ । କ. ଯୁଠେଷ୍ଟି
ଘ. ଯୁଠେଷ୍ଟି
୩ । ଖ. ଅସ୍ଥାନ
୪ । ଖ. ରତ୍ନ ଝରି
୫ । କ. ପଖାଳିଣ
ଘ. ପଖାଳିଣ
୬ । କ. ନୃପତି
୭ । ଖ. କହ୍ଦେସେ ପୁର କ ନାମ ତୁମ୍ଭର ଗୋସାଇଁ
ଘ. କେଉଁ ଦେଶ ପୁର କ ନାମ ତୁମ୍ଭର କହିବା ହେଉ ବୋଲନ୍ତି ହେ
୮ । କ. ଯୁଠେଷ୍ଟି
ଘ. ଯୁଧେଷ୍ଟି
୯ । କ. ବଶି
୧୦ । ଖ. କୃଷ୍ଣଗଳ
୧୧ । କ. ଯୁଠେଷ୍ଟି
ଘ. ଯୁଠେଷ୍ଟି
୧୨ । କ. ଦ୍ରୋପତୀ
ଘ. ଦ୍ରୁପଦୀ

ବାର ବରଷ କାନନେ ହେ     ରହିଲେ[୧] ଆନନ୍ଦ ମନେ
ବରଷେ ଚେର ବନ ଅଜ୍ଞାତକୁ ଅଇଲେ ତୋର ଭୁବନେ ହେ ।୧୩।

ଆମ୍ଭ ନାମ କୁଳଭଟ[୨] ହେ     ନ ଜାଣୁ କିଛି କପଟ
ଯେ ସେ ଯୁଧିଷ୍ଠିର[୩] ପ୍ରତାପେ ପଟୁ[୪] ଆମ୍ଭେ ଶଂସଯୁ ରାଜ ନିକଟ ହେ ।୧୪।

ସଭା ମଧ୍ୟେ ବସିଥାନ୍ତି ହେ     ସବୁଠାରେ ପୂଜା ପାନ୍ତି
ଯୁଧିଷ୍ଠିର[୫] ଦେବଙ୍କ ସଭାପଣ୍ଡା ଆମ୍ଭେ ଚେଣ୍ଡ କର ସେ ବୋଲାଉ ହେ[୬] ।୧୫।

ତୋ ରାଜ୍ୟ ଅଇଲେ[୭] ଶୁଣି ହେ     ଭେଟିଲୁ ସେ ତତକ୍ଷଣି
ପଞ୍ଚ ପାଣ୍ଡବେ ଦ୍ରୌପଦୀ ସଙ୍ଗେ ସେବ ଅଇଲେ ନୃପତି ମଣି[୮] ହେ ।୧୬।

ବିରାଟ କହେ ଉତ୍ତର ହେ     କାହିଁ ସେ ଭାଗ୍ୟ ମୋହର[୯]
ଏ ଚର୍ମ ଲୋଚନେ ଧର୍ମ ନନ୍ଦନଙ୍କୁ ଦେଖିବକ ମୋହୋ ଛାର[୧୦] ହେ ।୧୭।

ରାଜସି ପାରକୁ ଗଲ ହେ     ଷୋଳ ଦିବସ ରହିଲ
ଶ୍ୟାମ ଠାକୁରେ ମୋତେ ସେ[୧୧] ଟେକ ନେଲେ ତେବେ ଦେଖି ନ ପାରିଲ ହେ ।୧୮।

---

୧ । ଖ ଘ. ଭ୍ରମିଲେ
୨ । ଚ. କୋଳଭଟ
୩ । ଡ. ଯୁଜେଷ୍ଠି
  ଘ. ଯୁଧେଷ୍ଠି
୪ । ଖ. ସେତୁ
୫ । ଚ. ଯୁଜେଷ୍ଠି
  ଘ. ଯୁଧେଷ୍ଠି
୬ । ଚ ଖ. ତେଣୁ ଚଣ୍ଡ ବୋଲାଉ ସେ ହେ
୭ । ଖ. ତୋ ପୁରେ ଅଇଲେ
  ଘ. ଅଇଲ
୮ । କ. ଦ୍ରୌପଦୀ ସେବା ଅଇଲେ ନୃପ ଶିରୋମଣି ହେ
  ଖ. ଦ୍ରୌପଦୀ ସେବା ସହିତ ନୃପମଣି ହେ
  ଘ. ଅଇଲେଟି ନୃପମଣି ହେ
୯ । ଘ. ମୋହୋର
୧୦ । କ. ଧର୍ମରାଜାଙ୍କୁ ଦେଖିବକ ମୋହର ଛାର ହେ
  ଘ. ମୋହ ଛାର ହେ
୧୧ । ଘ. ମୋତେ

ତାହାଙ୍କୁ ଭେଟିବ କାହିଁ ହେ　　ଏଡ଼େ ପୁଣ୍ୟ କର ନାହିଁ
କୋଳେ ତୁମ୍ଭଙ୍କୁ ତାଙ୍କ ପ୍ରାୟେ ପୂଜିବ ମୋର ପାଶେ ଥାଅ ରହି ହେ[୧] ।୧୯।
ଶୁଣି କହେ ଧର୍ମସୁତ ଯେ　　ଏକଥା ଅଟେ ଉଚିତ
ଆମ୍ଭେ ରହିବାକୁ ଇଚ୍ଛା ତ କଲୁଣି[୨] ତୁମ୍ଭର ନର୍ମଳ ଚିତ୍ତ ହେ[୩] ।୨୦।
ନୃପତି[୪] ତୋ ପାଶେ ଏବେ ହେ　　ଆମ୍ଭେ ଅଇଲୁଣି ଯେବେ
ଏହି ସ୍ୱରୂପେ ଯୁଧିଷ୍ଠି ଧର୍ମରାଜା[୫] ବସନ ତୁମ୍ଭଙ୍କୁ[୬] ଦେବେ ହେ ।୨୧।
ଶୁଣି ହରଷ ରାଜନ ହେ　　ଅଣାଇ ଶାଢ଼ୀ ବସନ[୭]
ଯାଚନ୍ତେ ଯୁଧିଷ୍ଠି[୮] ତପ୍ତ ହୋଇଣ ରକ୍ତ ପଦ୍ମଲୋଚନ ହେ ।୨୨।
ଏହା ଶାଢ଼ୀ[୯] ଯେଣ କରେ ଯେ　　କେମନ୍ତେ ବା ଛିବା ଶିରେ[୧୦]
ତୁମେ ଶାଢ଼ୀ ବାସ ବିରାଟ ନୃପତି ଥୋଇଲେ[୧୧] ନେଇ ଭୂମିରେ ଯେ ।୨୩।
ଯୁଧିଷ୍ଠି ଦେବ[୧୨] ସମାନ ଯେ　　ଯାହାକୁ କଲ ବସନ
ତାହାଙ୍କୁ ପୁଣି ମୁଁ ଶାଢ଼ୀ ଯାଚୁଅଛୁ ମୋ ଗୁର ପାପୀ[୧୩] ଅଜ୍ଞାନ ଯେ ।୨୪।

---

୧ । ଖ. କୋଳେ—ସେବିବ ମୋର ପାଶେ
　　ଥିବ ରହି ହେ
୨ । ଘ. କଲୁଇ
୩ । ଗ. ପୋଥିର ୬ଷ୍ଠ ପତ୍ରଟି ନଥିବାରୁ
　୧ରୁ ୨୦ ପଦର ପାଠ ନାହିଁ
୪ । ଭ. ନୃପତି
　ଖ. ନୃପତି
୫ । କ. ଶତ୍ରୂପେ ଯୁଧିଷ୍ଠି ଧର୍ମରାଜା
　ଖ. ମହାରାଜା
　ଗ. ଦେବରାଜ
　ଘ. ଯୁଧିଷ୍ଠି ନୃପରାଜା
୬ । ଘ: ତୁମ୍ଭଙ୍କୁ ଦୃଢ଼ନ
୭ । କ. ଅଣାଅ ଶାଢ଼ି ବସନ
　ଟ. ଶୁଣିଣ ତୋଷ ରାଜନ ଯେ
　　ଅଣାଇ ଶାଢ଼ ବସନ୍ତ
　ଗ ଘ. ଶାଢ଼ି ବସନ
୮ । କ. ଯୁଜେଷ୍ଠି
　ଘ. ଯୁଧେଷ୍ଟି
୯ । କ—ଗ ଶାଢ଼ୀ
୧୦ । ଗ ଘ. ବାନ୍ଧିବ ଶିରେ
୧୧ କ. ଶାଢୀବାସ ବିରାଟ ନୃପତି ଆଇଲେ
　ଖ. ଶାଢ଼ୀବାସ ଥୋଇଲେ ନୃପତି
୧୨ । କ. ଯୁଜେଷ୍ଠି ଦେବଙ୍କ
　ଖ. ଯୁଧିଷ୍ଠି ଦେବଙ୍କ
　ଘ. ଯୁଧେଷ୍ଠି ଦେବ
୧୩ । କ. ତାଙ୍କୁ ପୁଣି ମୁ ଶାଢ଼ୀ ଯାଚୁଛି
　ମୋ ଗୁର ପାପି
　ଖ. ତାଙ୍କୁ ପୁଣି ମୁ ଶାଢ଼ୀ ଯାଚୁଛି
　　ମୋ ଗୁର ବଡ

ଶ୍ରୀକୃଷ୍ଣ ଏମନ୍ତ କହିଲେ ଯେ ବିରାଟ ଅଙ୍ଗେ ପଶିଲେ
ତେଣୁ ଦିବ୍ୟଜ୍ଞାନ ଲଭିଲା ରାଜନ ସର୍ବ ମନରୁ ତେଜିଲେ ହେ[1] ॥୨୫॥

ପ୍ରଣମ୍ୟ କରି ରାଜନ ଯେ କହେ ବିନୟ ବଚନ
ଚରଣେ ଦାସ ନିଜଗୁଣ କରୁଣା କରି ସ୍ନେହେ ଦେବ ଦ୍ରସନ ଯେ[2] ॥୨୬॥

ତୁମ୍ଭେ ମୋ ସଙ୍ଗରେ ଥିବ ହେ ଭଲ ମନ୍ଦକୁ ବୁଝିବ
ଅଜ୍ଞାନତି ସେବଥିବ ତୁମ୍ଭ ପାଦେ ଦୁଷ୍ଟ ପ୍ରଧର୍ଷି ଦେବ ହେ[3] ॥୨୭॥

କୃଷ୍ଣେ[4] ହରଷ ହୋଇଲେ ଯେ ଉଠି ତାଙ୍କୁ କୋଳ[5] କଲେ
ବହୁ ପ୍ରକାରେ ତୋଷି ତାଙ୍କ[6] ମନ ପାଶେ ନେଇ ବସାଇଲେ ଯେ ॥୨୮॥

ଅଣାଇଲେ ପଶାସାର ଯେ ପାଲି କାଟିଲେ ଭୂମିର[7]
ନାନା କଉତୁକେ ପଶା ଖେଳୁଛନ୍ତି ବିରାଟ ଧର୍ମ କୁମର ହେ ॥୨୯॥

ଦୀନ ବିଶ୍ୱମ୍ଭର ଦାସ ଯେ ଶ୍ରୀକୃଷ୍ଣ ଚରଣେ ଆଶ[8]
ମହାଘୋର[9] ଚିନ୍ତା ଜଳଧିରୁ ମୋତେ ପାରକର ପୀତବାସ ଯେ ॥୩୦॥

---

୧ । ଗ. ୨୫ ପଦଟିର ପାଠ ନାହିଁ
ଗ. ଦିବ୍ୟଜ୍ଞାନ ତହୁଁ ଲଭିଲେ ରାଜନ ସର୍ବ ମନରୁ ତେଜିଲେ ଯେ
ଘ. ଦିବ୍ୟଜ୍ଞାନ ତେଣୁ ଲଭିଲେ-ତେଜିଲେ ହେ

୨ । ଚ. ଚରଣେ ଦରଶନ ମାଗୁଛନ୍ତି କରୁଣ ପ୍ରଭୁ ଦରଶନ ଦେଲ ହେ
ଗ. ବିରାଟ ପ୍ରଣମ୍ୟ କଲେ ଯେ କରଯୋଡ଼ି ଜଣାଇଲା ।
ଚରଣେ – ଦରଶନ ଦେଲ ବୋଇଲ ହେ

୩ । କ. ସୁଦୃଷ୍ଟି ଦେବେ ହେ
ଗ. ଦୃଷ୍ଟି—ଦେବ ଯେ

୪ । କ ଗ. କୃଷ୍ଣେ
ଘ. କୃଷ୍ଣ

୫ । ଗ ଘ କୋଳ ତାଙ୍କୁ କଲେ

୬ । ଗ. ତାଙ୍କୁ
ଘ. ତୋଷି ତାଙ୍କ ମନ ପାଶେ ନେଇ

୭ । ଖ. ଭୂମିରେ କଲେ କୁଠାର
ଘ. କୋଠୀ କାଟିଲେ ଭୂମିର

୮ । ଚ-ଘ. ଶ୍ରୀକୃଷ୍ଣ-ଆସ

୯ । ଘ. ମାହା ଘୋର

## ତୃତୀୟ ଛାନ୍ଦ

ରାଗ—ସୌରି

କାଳିନ୍ଦୀକେ ବୃକୋଦର ସାକ୍ଷାତ[1] କ ସୂପକାର
ଉନଜ ତର୍ମତ ପ୍ରାଏ[2] ବସନେ ତନୁ
କପୋଳରେ ଗୋରଚନା ଟୋପି କଳେକ ରଞ୍ଜନା[3]
ଚନ୍ଦ୍ରମଣ୍ଡଳେ କ ଉଦେ ହୋଇଣ[4] ଭାନୁ
କରଯୁଗେ ହେମ[5] କଙ୍କଣ
କର୍ଣ୍ଣରେ ଶୋହେ[6] କୁଣ୍ଡଳ ରବ କିରଣ ॥୧॥

କଣ୍ଠରେ ମୁକୁତା ମାଳ ଶୋଭାପାଏ ବକ୍ଷସ୍ଥଳ
ହୀରା ମୁଦ୍ରିକା[7] ଅଙ୍ଗୁଷ୍ଠି ମୂଳେ ଲଗଲେ
କର୍ପୂର ଚନ୍ଦନ ଗୋଳ ଅଙ୍ଗରେ ହୋଇଲେ ବୋଳ
କେଶରେ ମାଳତୀ ପୁଷ୍ପ[8] ଗନ୍ଥ ବାନ୍ଧଲେ
ଆଳପାଟ[9] ସୁରଙ୍ଗ ଧଡ଼ି
କଟୀ ତଟେ ଝରଙ୍ଗିରେ ପିନ୍ଧଲେ ଭିଡ଼ି[10] ॥୨॥

---

୧। ଖ. ସାକ୍ଷାତେ
୨। ଘ. ଜନେକ ଚର୍ମେକ ବପ୍ରାଏ
୩। କ ଗ. ରଞ୍ଜନା
୪। ଖ. ହୋଇଲା
ଗ ଘ. ହୋଏଲେ
୫। କ. ହୋମ
୬। ଖ ଗ. କର୍ଣ୍ଣେମକର
୭। କ. ହିରମୁଦ
ଗ. ହିର ମୁଦ୍ର
୮। କ. ପୁଷ୍ପ
ଖ. ଫୁଲ
ଗ. ପୁଷ
୯। ଖ. ଆଳପାଟ
୧୦। ଗ. ଶ୍ରୀଅଙ୍ଗରେ ବାନ୍ଧଲେ ଭିଡ଼

କଲେକ ଦୋସଡ଼ା ପୁଣି    ଇନ୍ଦ୍ର ଗୋପ କାନ୍ତି ଜିଣି
ସେ ପାଟରେ କନକର ଲତା[୧] ପଡ଼ିଛି

କର୍ପୂର ପାନ ସଙ୍ଗରେ    ଅଳାଇଚ ଲବଙ୍ଗରେ
ପାନେ ଅଧର ମଣ୍ଡନ[୨] ଶୋଭା ଦିଶୁଛି[୩]
କରରେ ପଇତା[୪] ସୁନ୍ଦର
କନ୍ଦର୍ପ ମୋହ୍ନ ହୋଇବ ଛନ୍ଦ[୫] କ ଚାର ॥୩॥

କଲେ ମାରୁତ ଗମନ    ଅଙ୍ଗଦେଶ କମ୍ପମାନ
ଭ୍ରୂଲତା[୬] ନଚାଇଣ ଖେଳାଇ କଟାକ୍ଷ[୭]

କଟକେ ହୋଇଲେ[୮] ପ୍ରବେଶ    ମୋହୁଛନ୍ତି[୯] ଦଶ ଦିଶ
କେ ବୋଲେ କନ୍ଦର୍ପ ଏହି ରୂପେ ପ୍ରତକ୍ଷ[୧୦]
କେ ବୋଲେ ଏ ରାଜା[୧୧] ସ୍ୱର୍ଗର
କିବା ଅଳକା[୧୨] ଭୁବନ ପତି କୁବେର ॥୪॥

କରନ୍ତି ନାନା ବିସ୍ମର    ଗୋଡ଼ାଇ ତାଙ୍କ ପଛର[୧୩]
ବିରାଟ ଆସ୍ଥାନ ତଳେ ଯାଇ[୧୪] ପ୍ରବେଶ

---

୧। ଜ. କନକଲତା
ଘ. କନେକର ଲତା
୨। କ. ଅଧର ମଣ୍ଡନ
ଖ. ଶ୍ରେବାନ୍ତେ କଲ ସୁରେଣ
୩। ଖ. ଦିଶ ପଡ଼ୁଛି
ଗ ଘ. ଯାଉଛି
୪। କର୍ପୂରପୈତା
୫। ଗ. ଛନ୍ଦକ ପାର
ଘ. ପାଠ କାଟଦେଷ୍ଟ
୬। କ ଖ ଘ. ଭ୍ରୂଲତା
୭। ଗ. ନଚାଇ ଖେଳାଇଣ କଟାକ୍ଷ
୮। ଗ ଘ. ହେଲେ
୯। ଘ. କାନ୍ତଅଛି
୧୦। ଗ. ଏହି ରୂପ ପ୍ରତକ୍ଷ
୧୧। ଭ. ରାଜ
୧୨। କ ଙ. କି ଅବା
୧୩। ଗ ଘ. ପଙ୍କର
୧୪। ଖ. ଆସ୍ଥାନ କଲେ ହେଲେ
ଘ. ଆସ୍ଥାନ ତଳେ ଯାଇ

କଙ୍କ ରାଜନ ଦୃଷ୍ଟି ପକାଇଲୁ ପଶାକାଠି
ଦେଖ ହେ କୋନ୍ତ ଗୋସାଇଁ ଦିବ୍ୟ ପୁରୁଷ
କାହୁଁ ଏ ଅଇଲେ ପଣ୍ଡୁର
କି ଭାଗ୍ୟ ଆଜ ଦିବସ ହେଲା ମୋହର[1] ॥୫॥
ଧର୍ମସୁତ ଦେଖି ଜଣ ମନେ ଏମନ୍ତ ବିଗୁଣି[2]
ଗୋପ୍ୟରୂପ ହେଲେଁ[3] ବିଶେ ଉତ୍ତର ପ୍ରାଏ
ପୁଣି ବିରାଟ ରାଜନ ସମ୍ଭବନେ ବର୍ତ୍ତମାନ[4]
ଯାହାକୁ ଦେଖିଲେ ଶତ୍ରୁ କରନ୍ତି ଭଏ[5]
ଏହା ଦେଖିଲି ମୁଁ ନେତ୍ରର
ମୋର ହେତୁ ଏତେ ଦଶା ପାଇଲେ ବୀର[6] ॥୬॥
ଯୁଧିଷ୍ଠି ଯହୁଁ ଚାହିଁଲେ[8] ମାରୁତି ପ୍ରଣମ୍ୟ କଲେ
ଅଙ୍ଗ ଉହାଡ଼ କରି[9] ବିରାଟ ସମ୍ମୁଖୁ
ରାଜନ ବୋଇଲେ[10] ପୁଣ ଉଠ ଉଠ ହେ ବ୍ରାହ୍ମଣ
ସେ କଥା ଉଠିବେ ବିରାଟର ବୋଲକୁ[11]
ଦେଖି କୁନ୍ତେ[12] ବିସ୍ମୟ କଲେ
ଏକ ଉଠିବେ ଆମ୍ଭର ଆଜ୍ଞା ନୋହିଲେ ॥୭॥

---

୧ । ଖ. ହୋଇଲା ମୋର
୨ । କ ଖ ଘ. ଏମନ୍ତେ ମନେ ବିଗୁଣ
୩ । ଘ. ରୂପେ ହେଲେ
୪ । କ ଖ. ବର୍ତ୍ତମାନ
୫ । କ. ଦେଖିଲେ ସର କରଇ ଭଏ
ଘ. ଦେଖିଣ ଶତ୍ରୁ କରନ୍ତି ଭଏ
୬ । ଗ ଘ. ଏହା ମୁଁ ଦେଖିଲି ନେତ୍ରର
୭ । ଗ. ପୋଥିରେ ଚଉଥ ପଦଟିର ପାଠ ନାହିଁ
ଘ. ଦଶା ପାଇଲ ବୀର
୮ । କ. ଜ୍ୟେଷ୍ଠି ଜହୁଁ ଚାହିଁଲେ
ଖ. ଜହୁଁ ଦେଖିଲେ
ଘ. ଯୁଧେଷ୍ଠି ତାଙ୍କୁ ଚାହିଁଲେ
୯ । ଖ. ଅଙ୍ଗଭର ହୋଇଣ
୧୦ । ଖ. ବିରାଟ ବୋଇଲେ
ଗ. ରାଜନ ବୋଲନ୍ତି
୧୧ । ଖ. ସେ କିପାଇଁ ଉଠିବେ ବିରାଟ ବୋଲକୁ
୧୨ । କ ଘ ଘ. ଦେଖି କୋନ୍ତ

ଧର୍ମ ନନ୍ଦନ ବୋଲନ୍ତି[1] ଠାକୁରେ ଆଜ୍ଞାଂ କରନ୍ତୁ
ଉଠିକରି ଜଣାଅ କି କାର୍ଯ୍ୟ[2] ତୁମ୍ଭର

ତତ୍‌କ୍ଷଣେ ଭୀମ ଉଠିଲେ କରଯୋଡ଼ି ଜଣାଇଲେ
ଶୁଣିମା ଦ୍ରୋଦେବ ଏବେ ମୋର ଉତ୍ତର[3]
ପଞ୍ଚ କଟକର[4] ରାଜନ
ସାକ୍ଷାତ[5] ବଜଏ ଯନ୍ତ୍ରି ଧର୍ମନନ୍ଦନ ॥୮॥

ତାହାଙ୍କର[6] ଅଟେ ସାନ ଭୀମ ପବନ ନନ୍ଦନ
ଖାଟିଏ ପଙ୍କ୍ତିରେ ଭୋଜନ ବେଳକୁ
ତେବେ ନୃହନ୍ତି କିପ୍ରତ ମହାବୀର ସେ ମାରୁତି[8]
ଯମ ଭଏ କରଇ ଦେଖିଲେ ଯାହାକୁ
ତାହାଙ୍କର ମୁଁ ସୂପକାର
ରନ୍ଧନ କରଇ ମନ ଜାଣି ତାଙ୍କର ॥୯॥

ବଲଭ ମୋହର ନାମ ଅଛୁ କଛୁ ପରାକ୍ରମ[10]
ଶତ୍ରୁ ଉପଗତ ହେଲେ ରଣ କରଇ[11]

---

୧ । ଖ, କହନ୍ତି
୨ । ଘ, କାର୍ଯ୍ୟ
୩ । ଢ ଙ, ମୋହ ଉତ୍ତର
୪ । ଜ ଖ, କଟକ ରାଜନ
୫ । ଘ, ପାଠ ଜାଟଦେଷ୍ଟ
୬ । ଢ ଖ, ତାଙ୍କର
୭ । ଜ ଖ, ପୌଷ୍ଟିରେ ଭୋଜନ
୮ । ଘ, ମାହାବୀର ସେ ମାରୁତ
୯ । ଖ, ତାହାଙ୍କ
୧୦ । ଗ ଘ, କଛୁ ଅଛୁ ପରାକ୍ରମ
୧୧ । ଢ, ହେଲେ ମୁ ରଣ

ଭୀମସେନର ମୋହର    ନ ଥାଇ କିଛି¹ ଅନ୍ତର
ଯେ ଭୀମସେନ ପ୍ରତକ୍ଷେ ମୂର୍ତ୍ତି ଅଟଇ
କଉରବେ² ପଶା ଖେଳିଲେ
ସବ ସମ୍ପଦ ଯୁଧିଷ୍ଠି ଦେବ³ ହାରିଲେ ॥୧୦॥
ପଞ୍ଚ ପାଣ୍ଡବ ଦ୍ରୋପଦୀ⁴    ବନେ ଆସି ବିହରନ୍ତ
ଦ୍ୱାଦଶ ବରଷ କଉତୁକେ ବଞ୍ଚିଲେ
ଅଇଲେ ତୋର ରାଜ୍ୟକୁ    ଗୋଡ଼ାଇଲ ଶବଦକୁ⁵
ମୂର୍ତ୍ତି ଅଇଲଇଁ⁶ ଏବେ ବୋଲି ବୋଇଲେ
ଏହା ଶୁଣି⁷ କହେ ବସନ୍ତ
ମୁଂ କାହିଁ ଭେଟିବି ନୃପକୁଳ ମୁକୁଟ⁸ ॥୧୧॥
ଏ ଭାଗ୍ୟ କାହିଁଛି ମୋର    ପଞ୍ଚପାଣ୍ଡବ ପଦ୍ମର
ମୋ ରାଜ୍ୟେ ପଡ଼ିବ ମୂର୍ତ୍ତି କେବେ ଦେଖିବ
ପିଇଲି ଅମୃତ ଆଣି⁹    ପବିତ୍ର ହୋଇଲି ଶୁଣି¹⁰
ରହ ତୁମ୍ଭ ପାଦେ ସେବା କରଣ ଥିବ¹¹
ବଲ୍ଲଭ କହନ୍ତି ଉତ୍ତର
ସହଦେବ ସୂପକାର ଅଜ୍ଞାନ୍ତ ଭୂମ୍ବର ॥୧୨॥

---

୧। ଗ. କିଛୁହ ନାହିଁ
ଖ. ଅପ୍ରଳନ୍ତ ଖେଳ ପୁଣି
୨। ଗ ଘ. କଉରେବେ
୩। ଭ. ସମ୍ପତ୍ତି ଯୁଜେଷ୍ଟି ଦେବ
ଗ. ସମ୍ପଦ ଯୁଧିଷ୍ଟି ଦେବେ
ଘ. ସମ୍ପଦ ଯୁଧେଷ୍ଟି ଦେବ
୪। ଭ. ଦ୍ରୋପଜା
ଗ ଘ. ଦ୍ରୁପଦ
୫। ଗ. ତୁମ୍ଭ ରାଜ୍ୟକୁ ଗୋଡାଇ ଏ ଶବଦକୁ
ଘ. ଗୋଡ଼ାଇ ଏ ଶବଦକୁ
୬। ଭ. ଅଇଲି ଏବେ ବୋଲି
୭। ଗ ଘ. ଶୁଣିକରି
୮। କ. କୃଷ୍ଣକୁଳ ମୁକୁଟ
ଗ. ଦେଟିବି ଧର୍ମରାଜା ମୁକୁଟ
ଗ. ଦେଖିବି ନୃପକୁଳ ମୁକୁଟ
୯। ଭ ଗ. ପିଇଲି ଅମୃତ ବାଣୀ
ଘ. ପିଇଲି ଅମୃତ ବାଣି
୧୦। ଗ. କୃତାର୍ଥ ହୋଇଲି ପୁଣି
୧୧। ଚ. ସେବା ରଣ କହିବ

ସେ ଭୂମ୍ବର ଶ୍ରେଷ୍ଠବର¹ — ସମସ୍ତ କର ବାହାର
ସହସ୍ରେ ଲୋକର ପଞ୍ଚ ମୋତେ ତୁ ଦେବୁ
ଏକା କରିବୁ ରନ୍ଧନ² — ସର୍ବେ କରିବେ ଭୋଜନ
ମନୋଜ୍ଞ ଅନ୍ନେଣ ପୁଣ ରଜା³ ତୁଷିବୁ
ଆଶ୍ଚର୍ଯ୍ୟ⁴ ବିରାଟ ନୃପତ
ସୂପକାରଙ୍କୁ ବାହାର କଲେ ତଡ଼ତ ॥୧୩॥

ଶାନ୍ତ୍ରୀ ସେନ ନୃପବର⁵ — ବଦନ୍ତେ ସେ ସୂପକାର
କ୍ରୋଧେ ଅଙ୍ଗ⁶ କମ୍ପାଇ ଘୂର୍ଣ୍ଣନ୍ତ ନୟନ⁷
ଯୁଧିଷ୍ଠ ଭଲ⁸ ମନରେ — ଏତା ସ୍ଥିର ଶାନ୍ତ୍ରୀ ଶିରେ
କେମନ୍ତେ ସେନ ସେ⁹ ସମୀରଣ ନନ୍ଦନ
ତେଣୁ କୋପ କରୁ ଅଛନ୍ତି¹⁰
ନ ପୁଣ ବିରାଟଙ୍କୁ ଜୀବନେ ମାରନ୍ତି¹¹ ॥୧୪॥

---

୧ । ଖ. ତୋର ମତପୂର୍ଣ୍ଣ ସର
୨ । ଗ ଘ. କରିବୁ ରନ୍ଧନ
୩ । କ. ଅନ୍ନପୂର୍ଣ୍ଣ ରଜା
ଖ. ଅନ୍ନରେ ରଜା ପଶେଇ
ଗ. ଅନ୍ନରେ ପୁଣ ରଜା
୪ । ଖ. ଆଶ୍ଚର୍ଯ୍ୟ
ଘ. ଅର୍ଯ୍ୟେ
୫ । କ. ଶାନ୍ତ୍ରୀ ସେନ ନୃପବର
ଘ. ଶାନ୍ତ ସେନ ନୃପବର
୬ । ଘ. କ୍ରୋଧ ଅଙ୍ଗ
୭ । ଗ. ଘୂର୍ଣ୍ଣନ୍ତ ଲୋଚନ
୮ । କ. ଜ୍ୟେଷ୍ଠି ଭଲ
ଘ. ଯୁଧିଷ୍ଠି ଭଲେ
୯ । ଗ. ସେନମ
ଘ. ସେନମେ
୧୦ । ଗ. କରି କୋପ
୧୧ । ଖ. ପୋଥିରେ ପଦଟିର ପାଠ ନାହିଁ
ଘ. ବିନାଶ କରନ୍ତି

ଚିନ୍ତାକଲେ ନାରାୟଣ  ରଖିବା ବିରାଟ ପ୍ରାଣ
ତତକ୍ଷଣେ ବସ୍ତ୍ର ମାୟା ହେଲା ପ୍ରକାଶ
ଧର୍ମ ନନ୍ଦନ ଶ୍ରୀମୁଖରେ  ଶାଢ଼ୀ ଥୋଇ ନୃପବର[1]
ବୋଲନ୍ତି ତୁମ୍ଭେ ଠାକୁର ମୋହର ବେଶ[2]
ଶାଢ଼ୀ ଏବେ[3] ଦେବା ତାହାକୁ
ବଲଭେ ସନ୍ତୋଷେ[4] ଯାନ୍ତୁ ବେଷ ଘରକୁ[5] ॥୧୫॥

କନକର ମାନ ପାଟ[6]  ସେନ କରେ କୁନ୍ତଭଟ[7]
ଭୀମସେନ ମସ୍ତକରେ[8] ବାନ୍ଧିଲେ ନେଇ
ଶାଢ଼ୀ ବାନ୍ଧି ଭୀମସେନ  ତହିଁରୁ[9] ଗଲେ ବହନ
ବେଷ ମଧ୍ୟରେ ପ୍ରବେଶ ହୋଇଲେ ଯାଇ
କରେ ଶସ୍ତ୍ର ଆମ୍ଭେ ସେନ୍ଧିଲେ
ଶତେ ପଖା ବେନଚୂଲ ତହିଁରେ ଜଳେ[10] ॥୧୬॥

କଣ୍ଠା ଗୋଟା ଗୋଟା ଦାରୁ  ଚୂଲିରେ ନେଇଣ ଭରୁ[11]
ଅତ ପ୍ରଖରେ ଅନଳ ତହିଁ ଜଳଇ[12]

---

୧ । କ ଗ. ଶ୍ରୀମୁଖେ ଶାଢ଼ୀ ଥୋଇ ନୃପବରେ
ଘ. ନୃପମଣେ
୨ । କ. ତୁମ୍ଭେ ଠାକୁର ମୋହର ବେଶ
୩ । କ. ଶାଢ଼ୀ ଏବେ
୪ । କ ଗ. ବଲଭେ ସନ୍ତୋଷ
୫ । ଖ. ସଦଣ୍ଟିର ପାଠ ନାହିଁ
୬ । ଙ. କନେକର ନର୍ଭିପାଟ
ଗ. ନର୍ଭିପାଟ
୭ । ଗ ଘ. ସେନକର କୋନ୍ତଭଟ
୮ । ଗ ଙ. ଭୀମସେନଙ୍କ ମସ୍ତକେ
୯ । କ. ଶାଢ଼ି ଦେଲା ଭୀମସେନ ତହିଁରେ
୧୦ । ଖ. କଶବୃଟା ହଡଯାଟ ଅଣାଇ ଭଟ
ବିରାଟ କୁନ୍ତଙ୍କ ହସ୍ତରେ ତାଙ୍କ ଶାଢ଼ୀ
ବନ୍ଧାଇ
ଶାଢ଼ି ବାନ୍ଧି ଭୀମସେନ  ତହିଁରୁ କଲେ ଗମନ
ବେଢ଼ାଠାରେ ପରବେଶ ହେଲେ ବହନ
କର ଶସ୍ତ୍ର କରେ ସେଣ୍ଢଲେ
ଶତେ ପଖା ବେନ ଚୂଲ ତହିଁରେ ଜଳେ ।
୧୧ । କ. [illegible] ଗର୍ଭରେଣ ଭଣ
ଖ. କଣ୍ଠା କଣ୍ଠା ଗୋଟା ଦାରୁଚୂଲି ଗର୍ଭେ
ନେଇ ଭଣ
ଘ. କଣ୍ଠା କଣ୍ଠା ଗୋଟା ଦାରୁ ଚୂଲି ଗର୍ଭେ
ନେଇ ଭରୁ
୧୨ । ଗ. ଅତି ପ୍ରଖରେ ହେବେ ଅଗ୍ନି ଲଗାଇ

ନ ଜାତି ପରବା ମାନ ଲୁଣ ବେସର ସମାନ[1]
ଘୃତ ମଧୁରୁ ନେଇ ଏକତ୍ର କରଇ[2]
ସିଝନ୍ତେଣ ବ୍ୟଞ୍ଜନ ଖରେ[3]
ଚଳାଇ କଅନ୍ତ ସେହୁ ଆପଣା କରେ ॥୧୭॥

ଏ ମଧ୍ୟ ଓରଅମାନ[4] କେତେ ପିଠା ଭିନ ଭିନ
ଘୃତରେ ପକାଇ ଅତ ବେଗେ କାଢ଼ନ୍ତି
ସ୍ନେମକୁ ଦେଖି ଜଗରେ କହୁଲେ ସଜା ଗ୍ରାମରେ[6]
ଶୁଣିକରି ବତ୍ସ ଆଶ୍ଚର୍ଯ୍ୟ ହୁଅନ୍ତି[7]
କେମନ୍ତ ଏ କୁଳ[8] ଗୋସାଇଁ
ଦେଖିଲୁ ଗ୍ରନ୍ଥ ତ[9] ଏହା ଶୁଣିଲୁ ନାହିଁ ॥୧୮॥

କୋଳ୍ପେ ବୋଇଲେ ଭୁଞ୍ଜିଲେ ଜାଣିବାନା[10] ତାହା ଭଲେ
ବତ୍ସ କୋଳ୍ପଙ୍କ କର ଧରି ଉଠିଲେ
ଖୁଣ୍ଟିଆ ଆଗରେ ହେଲ[11] ପଦଣ୍ଡ ମଣାଇ ନେଲ
ରୋଷଘରେ ନରପତି ବଜଏ କଲେ
ପାଦ ଧୋଇ ପୋଛି ବସନେ[12]
ଶୀଳା ପିଢ଼ାରେ[13] ବସିଲେ ଆନନ୍ଦ ମନେ ॥୧୯॥

---

୧। ଖ. ବେଞ୍ଜନ
ଗ ଙ. ବେସର ସମାନ
୨। ଗ. ଘୃତ ମଧୁ ଏକତ୍ର ନେଇଣ କରଇ
ଘ. ଏକତ୍ର ନେଇ କରଇ
୩। କ. ମେଞ୍ଜ ନ ଖରେ
ଗ. ବ୍ୟଞ୍ଜନ ଝରେ
ଘ. ବେଞ୍ଜନ ଝରେ
୪। ଖ. ଓରାଆନ
୫। ଘ. କେତେ କେତେ ପିଠାମାନ
୬। ଖ. ଜନ୍ମର କହିଲେ ରାଜା ଆଗର
୭। ଘ. ଆଶ୍ଚର୍ଯ୍ୟ ହୁଅନ୍ତ
୮। କ. ଏ କୋଳ୍ପ
ଖ. ସେ କୋଳ୍ପ
ଘ. ଏ କୋଳ୍ପେ
୯। ଗ ଘ. ଦେଖିବା ଗ୍ରନ୍ଥ ତ
୧୦। ଙ ଝ. କୋଳ୍ପ ବୋଇଲେ ଭୁଞ୍ଜିଲେ ଜାଣିମାନା
ଘ. ଜାଣିମାନା
୧୧। ଗ ଘ. ଆଗ ହୋଇଲ
୧୨। ଗ ଘ. ଚରଣ ଧଇତ ବଧାନେ
୧୩। ଙ ଖ. ଶୀଳା ପିଢ଼ାରେ
ଗ. ଲିଳା ପିଢ଼ାରେ

କୋଟେ ବିରାଟ ନୃପତି[1]    ପୂର୍ବ ପଶ୍ଚିମେ[2] ବସନ୍ତି
ପାଞ୍ଚ ମନ୍ତ୍ରୀ ସେନାପତି ସଙ୍ଗେ[3] ବହୁତ
ଦେଖିକରି ଭୀମସେନ    ବୈକଣ୍ଠ ପିନ୍ଧା ବସନ[4]
ଆର୍ଦ୍ରକ ସଙ୍ଗେ ଲବଣ ଦେଲେ ଭୂରିତ[5]
ରତ୍ନ ଝରି ଭୃଙ୍ଗାରେ[6] ଆଣି
ଭଣ୍ଡିରେ ପୂରାଇ ଦେଲେ ସୁବାସ ପାଣି ॥୨୦॥

କର୍ପୂର ମୃଗନଜ ଚୂର    ବେନ ଠାବ ଛଣ୍ଟି କରି[7]
ହେମକୁଣ୍ଡେ ଜଳ ଥୋଇ ଭଣ୍ଡିରୁ[8] ଗଲେ
ସୁବର୍ଣ୍ଣ ଥାଳରେ ଅନ୍ନ    କନକ[9] ଚାଟିଆ ମାନ
ପଞ୍ଚାଶ ଜାତରେ ଆଣି ବ୍ୟଞ୍ଜନ[10] ଦେଲେ
ଚଉଦିଶି ଭଜା[11] ନର୍ମାଣ
ଗୁଆ ଘୃତ ଦଧି ଦୁଗ୍ଧ[12] ଦେଲେ ନେଇଣ ॥୨୧॥

---

୧ । କ ଖ ଘ. ନୃପତି
୨ । ଘ. ପୂର୍ବ ପଶ୍ଚିମେ
୩ । ଖ. ଅମାତ୍ୟ ସେନା
୪ । ଙ. ପିନ୍ଧେ ବସନ
୫ । ଗ. କର୍ପୂରେ ମୃଗନଜ ଠାବ କରି ଭୂରିତ
୬ । ଖ. ପତ୍ରରେ
୭ । ଙ. ଆଦ୍ରକ ସଙ୍ଗେ ଲବଣ ଦେଲ ସୁବର୍ଣ୍ଣ ଚନ୍ଦେଣ
୮ । ଙ. ଭଣ୍ଡାରେ
୯ । କ. ଶୁବର୍ନ୍ନ—କନକ
ଖ. ଶୁବର୍ନ୍ନ—ସୁବର୍ଣ୍ଣ
ଗ. ସୁବର୍ଣ୍ଣ ଥାଳରେ ଅର୍ଣ୍ଣ
୧୦ । ଙ. ପଞ୍ଚାସ ଜାତରେ ଆଣି ବେଞ୍ଜନ
ଗ. ବ୍ୟୋଞ୍ଜନ
ଘ. ବେଞ୍ଜନ
୧୧ । ଗ. ଚଉଦିଂସ ଭଜା
ଘ. ଚଉଦ୍ଦିଂଶ ଭଜା
୧୨ । କ. ଦୁଗ୍ଧ
ଘ. ଦୁଗ୍ଧ

ଅମୃତପାନ କଦଳୀ — ନାଡ଼ୀ ଝିଲ ସରପୁଳୀ
ସରମଣ୍ଡା ଛେନା ଲଡ଼ୁ[୧] ଆରିଷା କାନ୍ତି
ବଡ଼ା ପେଡ଼ା[୨] ସାତ କୋଷ — କେନ ବୁନ୍ଦିଆ କାକରା[୩]
ଛତୁଆ ଡାଲମ୍ବ ମାଣ୍ଡୁ[୪] ଆଣି ଉପନ୍ତ
ଅଙ୍ଗଦାସ[୫] ପଇଡ଼ ପଣା
ଖିର ଖିରସାଣି ଏକୁ ଏକକୁ ଜଣା[୬] ॥୨୨॥

ଭୁଞ୍ଜି ନୃପତ ତୃପତ — ପ୍ରଶଂସା କଲେ[୭] ବହୁତ
ସେ ସୂପକାରଙ୍କୁ ଭାଗ୍ୟେ ପାଇଲ କୋଟେ
ଅପୂର୍ବ ଏହା ରଚନା — ଏକକୁ ଆରେକ ଜଣା[୮]
ଅମୃତ ପରାଏ ସବୁ ଲାଗିଲା[୯] ମୋତେ
ମୁଖ କର ଜଳ ଧଇତ[୧୦]
ବସନେ ପୋଛଣ ରାଜା[୧୧] ଉଠେ ଭୂପତ ॥୨୩॥

କୋଟେ[୧୨] ବରିଷ୍ଠ ନୃପତ — ତଳ୍ପିରୁ ଗଲେ[୧୩] ତତକ୍ଷତ
କର୍ପୂର ବଡ଼ିଆ ଲାଗି ହୋଇଲେ ବେନ[୧୪]

---

୧ । ଖ. ରସପୂର୍ଣ୍ଣ ରସମଣ୍ଡା ଛେନାଲଡ଼ୁ
ଘ. ଛେନା ଲଡ଼ୁ
୨ । ଙ. ବଡ଼ ପେଡ଼ା
୩ । ଡ ଝ ଘ. ଭାକେର
୪ । ଙ. ଛତୁ ଡାଳିମ୍ବ ମାଣ୍ଡୁଆ
ଘ. ଛତୁ ଡାଳିମ୍ବ ମାଣ୍ଡୁଆ
୫ । ଚ. ଗଙ୍ଗାବାସ
ଘ. ଗଙ୍ଗାବାଣ
୬ । କ ଖ. ଏକକୁ ଆରକ ଜିଣା
ଗ. ଏକୁଂ ସେକକୁ ଜଣା
୭ । ଙ. ସନ୍ତୋଷ ପ୍ରସଂସା କରେ
ଝ. ପ୍ରସଂସା କରେ
ଗ. ପ୍ରଶଂସା କଲା
୮ । ଗ. ଏକୁଂ ଆରକକୁ ଜଣା
ଘ. ଏକକୁ ଆରେକ ଜଣା
୯ । ଗ. ଲାଗଇ
୧୦ । ଖ. ଧୋଇ ଭୁଞ୍ଜତେ
୧୧ । କ ଖ. ପୋଛୁ ରାଜା
୧୨ । ଗ. କୁଣ୍ଡେ
୧୩ । କ. ନୃପତି ତଳ୍ପରେ ଗଲେ
ଖ. ନୃପତି ତଳ୍ପିରୁ ଉଠି
ଗ ଘ. ନୃପତି-ଗଲେ
୧୪ । ଖ. ହେଲେ ଭୁଞ୍ଜତେ

ଆସ୍ଥାନେ ଭଜଏ[1] କଲେ    ପୁଣ ପଶାରେ ବସିଲେ
ଭୁଞ୍ଜି ସନ୍ତୋଷ ହୋଇଲେ ସର୍ବ ସଭାଜନ
କେ ପଶବା ଆଣି ଦଅନ୍ତି
ବ୍ୟଞ୍ଜନ କରାଇ ନିଜ ବାସେ[2] ନଅନ୍ତି ॥୨୩॥
ସର୍ବେ ପ୍ରଶଂସା କରନ୍ତି    ଯେ ଯାହା ମତେ ଭକ୍ଷନ୍ତି[3]
କେ ଘରବା ଦୂତସର[4] ଦଅନ୍ତି ଆଣି
ଗ୍ରାମ ସନ୍ତୋଷେ ରହିଲେ[5]    ବହୁ ଭୋଜନ ପାଇଲେ
ବହୁତ[6] ସ୍ନେହ କରନ୍ତି ନୃପତି ମଣି[7]
ବଲ୍ଲଭ ନାମରେ ପ୍ରକାଶ
ପ୍ରଶଂସା କରନ୍ତି ନଗ୍ର ସ୍ତ୍ରିୟ୍ର ପୁରୁଷ ॥୨୫॥

କଦମ୍ବ ତଳ[8] ବେହାଳୀ    କରଭୁକେ ବେଣୁ ଧରି[10]
ରାଜା ମନ ମୋହନ[11] ଶ୍ରୀନନ୍ଦନନ୍ଦନ
ଦୁଃଖୀ ଲୋକଙ୍କ[12] ସୋଦର    କୃପାଳବ ପାରାବାର
ଅରକ୍ଷ ରକ୍ଷକ ସୁର[13] କୁଳ ବନ୍ଦନ
ପାଦପଦ୍ମ[14] କରୁଣ ଧ୍ୟାନ
ଜନ ବଶ୍ୱମ୍ଭର[15] ଆଉ ନ ଜାଣେ ଆନ ॥୨୬॥

---

୧ । ଗ. ଆସନେ ଭଜଏ
୨ । ଖ. ବେଞ୍ଜନ କରଣ ନିଜପୁରେ
ଗ. ବେଞ୍ଜନ କରାଇ ନିଜ ବାସେ
ଘ. ମେଞ୍ଜନ କରାଇ ନିଜ ବାସେ
୩ । ଗ ଘ. ଇଛା ଭୁଞ୍ଜନ୍ତି
୪. ଖ. କେ ତଣ୍ଡୁଳ ଘୃତସର ଆଣି ଦଅନ୍ତି
୫ । ଘ. ସନ୍ତୋଷ ହୋଇଲେ
୬ । ଗ. ଅନେକ
୭ । ଖ ଘ. ନୃପତି ମଣି
୮ । ଖ. ତଳେ ନସ୍ତ
୯ । ଗ: କଦମ୍ବ ମୂଳ
୧୦ । ଘ. ବଣା ଧର
୧୧ । ଖ. ଘାନ ମୋହନ
୧୨ । ଗ. ଦୁଃଖୀ ଲୋକର
୧୩ । କ. ଶୁର
୧୪ । ଗ ଘ. ପଦ୍ମପାଦ
୧୫ । କ. ଜନ ବଶ୍ୱମ୍ଭର

## ଚତୁର୍ଥ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଇନ୍ଦ୍ରନୀଳମଣି ପରାଏ ସୁନ୍ଦର ଦିଶଇ ଅର୍ଜୁନ ତନୁ
ପକ୍ୱ ବିମ୍ବାଧରେ ମନ୍ଦ ମନ୍ଦ ହାସ ଭ୍ରୂଲତା[1] କୁସୁମଧନୁ ।୧।

କଳା ଧଳା ରଙ୍ଗ ସଙ୍ଗେ କି ତରଙ୍ଗ ବେନି ଶତପତ୍ର ଡୋଳା[2]
କାଳନ୍ଦୀ ଲାବଣ୍ୟ ଜଳରେ କି ବେନି ହଂସ କରୁଛନ୍ତି ଲୀଳା[3] ।୨।

ଚନ୍ଦ୍ରଗଣ୍ଡ କପାଳର ମଧ୍ୟେ ଶୋଭା ଦିଶଇ ସିନ୍ଦୂର[4] ବିନ୍ଦୁ
ନବୀନ ଘନ କୋଳରେ କି ଅରୁଣ ଉଦୟକୁ ଅଛି ବନ୍ଧୁ[5] ।୩।

କୁଟିଳ କୁନ୍ତଳେ ଅତି ଯତ୍ନ କରି ବନାଇଛିଲେ ଦିବ୍ୟ ବେଣୀ
ନୀଳ ମନ୍ଦାଧର ଉପରକୁ ଅବା ଖେଳ ଯାଉଅଛି ଫଣୀ[6] ।୪।

ତିଳ ଫୁଲ ନାସା ବାମପୃଷ୍ଠେ ନଥ ସିନ୍ଧୁ ଫଳରେ[7] କେଷ୍ଟିତ
ମର୍କତ ଚାଟଙ୍କ[8] ଶ୍ରବଣେ ଝୁଣ୍ଟିକ ଦେଖିଲେ ହରଇ ଚିତ୍ତ ।୫।

ତହିଁ ଉପରେ ହେମକଳ୍ପୀ[9] ଝଲକା ଫୁଲ ସଙ୍ଗେ ଅଛି ମିଶି
ପଲକ ନ ପଡ଼ଇ ତାହା ଦୃଷ୍ଟିଲେ କାମେ ବଶ ହେବେ ଋଷି[10] ।୬।

---

୧ । କ ଖ ଘ. ଭୂଲତା
୨ । କ ଗ ଘ. ସ୍ୱର୍ଣ୍ଣପତ୍ର ଡୋଳା
ଖ. ସ୍ୱତପତ୍ର ମେଳା
୩ । କ. ନୀଳ
ଗ. ଖେଳା
ଘ. ଲୀଳା
୪ । କ. କପୋଳର ମଧ୍ୟ ଯୋଗ୍ୟ ଦିସଇ ସିନ୍ଦୂର
ଖ. ସୁନ୍ଦର
ଗ. କପାଳର ମଧ୍ୟେ ଦିଶେ ସୁନ୍ଦର ସିନ୍ଦୂର
୫ । ଖ. ଛବି ବନ୍ଧୁ
୬ । କ. ଉପରେ କି ଅଛେ ଖେଳୁଅଛୁ କଳା ଫେଣି ।
ଖ. କୁଟିଳ କୁନ୍ତଳ କବରୀ ସ୍ୱଗରେ ବନାଇଲେ ଦିବ୍ୟ ଯୁଡ଼ା ।
ଯେବଣି କୁସୁମ ଗନ୍ଧରେ ଗନ୍ଥିଲେ ହେମ କେତକୀ ପାଖୁଡ଼ା
ଘ. ଫେଣି
୭ । କ. ଲେଥ ସିନ୍ଧୁ ଫଳରେ
ଖ. ନୋଥ ସୀ ଫଳରେ
ଘ. ଲେଥ ସିନ୍ଧୁ ଫଳରେ
୮ । ଖ. ବନ୍ଧୁଆ
ଘ. ମୁକୁତା ଚାଟଙ୍କ
୯ । କ ଗ. ଉପରେ ହେମ ମଲ୍ଲୀକଳୀ
ଘ. ଉପରେ ହେମ ମଲ୍ଲିକଳି
୧୦ । କ ଖ. ବଶ ହେବ ଋଷି
ଗ. ତାହା ଦୃଷ୍ଟି ଦେଖିଲେ କାମେ ବଶ ହେବେ ଋଷି
ଘ. ଏହା ଦୃଷ୍ଟିଲେ କାମେ ବଶୀ ହେବେ ଋଷି

କଣ୍ଠେ[1] ସ୍ଫଟିକର ମାଳାରେ ଜଡ଼ିତ ପାଟଡ଼ୋ ମାଳ କଣ୍ଠରେ[2]
କରେ କଳୀଆସ୍ତ[3] ମୁଦ୍ରିକ ସନ୍ଧିରେ ଜଡ଼ିତ ଅଷ୍ଟ ରତ୍ନରେ ॥୭॥
ମାଣିକ୍ୟ ବେନ ଚୂଡ଼ ପୁଣି ଖଞ୍ଜିଲେ[4] ବେନ ବାହେ ରତ୍ନ ତାଡ଼[5]
ଚରଣେ ବାଜେଣି[6] ନୂପୁର ଝୁଣ୍ଟିଆ[7] ନାନା ରତ୍ନରେ ଜବାଡ଼[8] ॥୮॥
ହୀରା ମାଳା ମାଣିକ୍ୟ[9] ବସି କନକ ମୁଦ କର ଅଙ୍ଗୁଳିରେ[10]
ରଙ୍ଗ କେତପା ପାଟଲୁଗା[11] ପିନ୍ଧିଲେ କନକ ଜରି ଧଡ଼ିରେ ॥୯॥
ସୁରଙ୍ଗଣି ପାଟ କାଞ୍ଚୁଲି ଉପରେ ପୁଞ୍ଜି ପୁଞ୍ଜି ବସି[12] ହୀର
ହୃଦରେ ମୋତିମାଳ ମଧ୍ୟେ[13] ପଦକ ଝଟକେ ଦଶଇ[14] ତୋଷ ॥୧୦॥

---

୧। କ ଖ. କଣ୍ଠରେ
୨। ଖ. ମାଳାକଣ୍ଠି
ଗ. ସ୍ଫଟିକର ମାଳାରେ ଜଡ଼ିତ
ପାଟଡ଼ୋ ମାଳା କଣ୍ଠରେ
ଘ. ମାଳା କଣ୍ଠିରେ
୩। ଗ କରେ କର ଆଳି
୪। କ ଖ. ପୁଣ ଖଞ୍ଜିଲେ
ଘ. ପୁଣ ଖଞ୍ଜିଲେ
୫। କ. ରତ୍ନଗଡ଼
୬। କ. ଚରଣେ ବାଜେ ବାଜେଣି
୭। ଗ. ଝୁଣ୍ଟିଆ ନୂପୁର
୮। ଗ. ଜଡ଼ିତ
୯। ଖ. ହୀର ମାଳା ବସି
ଗ. ହୀର ମାଳା ମାଣିକ୍ୟ
୧୦। ଖ. ମାଣିକ କନକ ମୁଦ କନକ ଅଙ୍ଗୁଳି
୧୧। କ. କେତପା ପାଟ
ଗ. କେତପାଟ ଲୁଗା
ଘ. କେତେପା ପାଟଲୁଗା
୧୨। କ. ଅଙ୍ଗରେ ପୁଞ୍ଜା
ଖ. ପୁଞ୍ଜ ପୁଞ୍ଜ ବସି
୧୩। କ. ମୋତିମାଳା ମଧ୍ୟରେ
ଖ. ମୋତିମାଳ ମଧ୍ୟେ
ଘ. ମୋତିମାଳ ହୃଦେ
୧୪। ଖ, ପଦକ ଝଟକ ଦଶେ
ଗ. ପଦେକ ଝଟକ ଦଶଇ

ଝଲମିଳ ପୀତ ପଟଣୀ ଓଢ଼ଣୀ ଧଡ଼ରେ କନକଲତା
ହେମ ଚମ୍ପା ତା'ର ଦେହରେ ପଡ଼ିଛି ଦଶଇଁ[୧] ବଡ଼ ଶୋଭିତା ॥୧୧॥

ଲବଙ୍ଗ ଅଳାଇଚ ପାନ ଭୁଞ୍ଜିଣ ଝୁମ୍ପା ପାଟ ବାନ୍ଧି[୨] ଡ଼ୋରେ
ଅପୂର୍ବ ହେମ ପଖାଉଜ ଗୋଟିଏ ପକାଇଛନ୍ତି କନ୍ଧରେ[୩] ॥୧୨॥

ଧୀର ଧୀର ହୋଇ କରଣ ଗମନ ମଧ୍ୟ[୪] ଦେଶରେ ମିଳିଲେ
ନର ନାରୀ ତାଙ୍କୁ ପ୍ରଶଂସା କରଣ ଆଗରେ କଢ଼ାଇ ନେଲେ[୫] ॥୧୩॥

ନୃପତି ଆସନ[୬] ତଳରେ ତୁରିତେ ହୋଇଲେ ଯାଇ[୭] ପ୍ରବେଶ
ପଖାଉଜେ କର ଠୁକନ୍ତେ ତାହାକୁ ଅନାଇ ଦେଲେ[୮] ନରେଶ ॥୧୪॥

ଦେଖିକରି ବଡ଼ ଆଶ୍ଚର୍ଯ୍ୟ[୯] ହୋଇଣ ବୋଲନ୍ତି ଦେଖ ହେ କୁନ୍ତେ[୧୦]
ଅପୂର୍ବ ନାୟିକା କାହୁଁ ଏ[୧୧] ଅଇଲା ଜାଣିମା ତାଙ୍କୁ କେମନ୍ତେ[୧୨] ॥୧୫॥

କୁନ୍ତେ ଅନାବନ୍ତେ ଅର୍ଜୁନ ପ୍ରଣାମ[୧୩] କରି ଭୂମିରେ ଶୁଣ୍ଡଲେ[୧୪]
ଉଠ ଉଠ ଠାକୁରଙ୍କ ଆଜ୍ଞା ହେଲା ଯୁଧିଷ୍ଠିର ଦେବ ବୋଇଲେ[୧୫] ॥୧୬॥

---

୧ । କ. ଦଶଇ
୨ । କ. ଭୁଞ୍ଜିଣ ଚମ୍ପା ପଟଧର୍ଜ୍ଜା
ଖ. ଖେଳାଇ କମ୍ପା ଧାଉଡ଼ି
ଘ. ପାନ ପାନରେ ଝୁମ୍ପା ପାଟ ବନ୍ଧ
୩ । କ. ଦେହରେ
୪ । କ. ମଧ୍ୟ
ଗ ଘ. ଗମନ କରିଣ ମଧ୍ୟ
୫ । ଖ. କରନ୍ତି ଆଗରେ କଢ଼ାନ୍ତି ଧରିରେ
୬ । କ ଖ. ଘ. ନୃପତି ଆସ୍ଥାନ
୭ । ଖ. ନାଶ ତୁରିତେ ହେଲେ
୮ । ଖ. ଅନାଇଲେ ସେ
୯ । କ. ଆଶ୍ଚର୍ଯ୍ୟ
ଘ. ଆଚର୍ଯ୍ୟ
୧୦ । ଗ. କୋନ୍ତେ
ଘ. ହୋଇଲେ—କୋନ୍ତେ
୧୧ । କ ଖ ଘ. ନାଏକା କାହୁଁ ସେ
୧୨ । ଖ. ଜାଣିମାକୁ ପୂନ୍ତେ
୧୩ । କ: କୋନ୍ତେ ଅନାମନ୍ତେ—ପ୍ରଣମ୍ୟ
ଗ ଘ. କୋନ୍ତେ—ପ୍ରଣମ୍ୟ
୧୪ । ଖ. ଶୋଇଲେ
୧୫ । କ: ଜ୍ୟେଷ୍ଠ ଦେବ ବୋଇଲେ
ଖ. ବୋଲନ୍ତେ

ଶୁଣିଣ ଅର୍ଜୁନ[୧] କୁଶଳେ ଉଠିଣ[୨] ନମସ୍କାର ତାଙ୍କୁ କରି[୩]
ପଶାଖେଳ ଠାକୁର ତାନାନା ବୋଲଣ[୪] ଗାନ୍ଧାର ସ୍ୱରେ[୫] ହୁଂକାର ॥୧୭॥

ବିରାଟ ବୋଇଲେ ରଢ଼ ହେ ଗାଏଣି ତୁ କେଉଁ ଦେଶୁ ଆଇଲୁ[୬]
କସ ବଦ୍ୟା ତୋର କ କାର୍ଯ୍ୟେ ଗମନ ଅପୂର୍ବ ରୂପ[୭] ଧଇଲୁ ॥୧୮॥

ଅର୍ଜୁନ ବୋଲନ୍ତି କୁନ୍ତଳ ଦେଶେ[୮] ହସ୍ତିନା ପଞ୍ଚ କଟକେ[୯]
ତହିଁରେ ନୃପତି ଧର୍ମଙ୍କ ନନ୍ଦନ ସାକ୍ଷାତ ଧର୍ମ ବିବେକେ[୧୦] ॥୧୯॥

ତାହାଙ୍କର ସାନ[୧୧] ସାର ଭୀମସେନ ତାଙ୍କ ସାନୁଜ ଅର୍ଜୁନ
ତାହାଙ୍କ[୧୨] ମଣ୍ଡମା ଜାଣୁକ ବିରାଟ କ୍ଷତ୍ରିୟ[୧୩] କୁଳ ମଣ୍ଡନ ॥୨୦॥

ନାଟ ମଣ୍ଡପରେ ନୃତ୍ୟ ଗୀତ କରଇ ଥାଇ ତାଙ୍କ ଅନ୍ତଃପୁର
ନତ ପୁରୁଷ ନତ ସ୍ତ୍ରୀ[୧୪] ଅଟଇ ନାମ ମୋର ବୃହନ୍ନଳା ॥୨୧॥

---

୧ । କ. ଶୁଣି ଅର୍ଜୁନ
ଖ. ଶୁଣି ଅରଜନ
ଘ. ଶୁଣି ଅରର୍ଜୁନ

୨ । ଖ. ଉଠିଲେ

୩ । ଗ. ନମସ୍କାର ତହିଁ କର

୪ । ଖ. ତେନା ତେନା ବୋଲି
ଗ. ତାନା ତାନା ବୋଲି

୫ । ଖ. ଗାନ୍ଧାର ସ୍ୱର

୬ । ଖ. ରଡ଼ ରଡ଼ ଗାଇଣି କେଉଁ ଦେଶରୁ ଆଇଲୁ
ଗ ଘ. ବିରାଟ ବୋଲେ ରଡ଼ ରଡ଼ ଗାଏଣି କେଉଁ ଦେଶରୁ ଆଇଲୁ ।

୭ । କ. କାସ ବଦ୍ୟାରେ ତୋର କ କାର୍ଯ୍ୟେ ଗମନ ଏମନ୍ତ ରୂପ ।
ଗ. କ କାର୍ଯ୍ୟେ ଗମନ ଏମନ୍ତ ରୂପ

୮ । କ ଖ. କୁନ୍ତଳ ଦେଶୀ

୯ । ଘ. ପଞ୍ଚ କଟକେ

୧୦ । ଘ. ବିବେକେ

୧୧ । କ ଖ. ତାଙ୍କର ସାନ

୧୨ । କ. ତାଙ୍କ

୧୩ । କ ଗ. କ୍ଷେତ୍ରୀୟ
ଖ. କ୍ଷତ୍ରି

୧୪ । କ. ନତ ପୁରୁଷ ନତ ସ୍ତ୍ରିୟ

ଅନ୍ୟ ଦୁଷ୍ଟଙ୍କର ଅନ୍ତର ନ ଥାଇ ବୃହନ୍ନଳା ଧନଞ୍ଜୟ[1]
ଯେ ସେ ଅର୍ଜୁନ ମୁଁ ଅଟଇ ବିରାଟ[2] ଏଥି ନକର ସଂଶୟ ॥୨୨॥

ସେ ପାଣ୍ଡବେ ତୋର ରାଜ୍ୟକୁ ଆଇଲେ ଏମନ୍ତ ଶବଦ[3] ଶୁଣି
ସେହି ଶବଦକୁ ଗୋଡ଼ାଇ ଆଇଲ ଶୁଣ ଏବେ ନୃପମଣି[4] ॥୨୩॥

ବିରାଟ ବୋଲନ୍ତି ଯେଉଁ ଯୁଧିଷ୍ଠିରଙ୍କ[5] ସେବାରେ ବସ୍ତୁ ତତ୍ପର
ଏ ଚର୍ମ ଲୋଚନେ ସେମନ୍ତ ପ୍ରଭୁଙ୍କୁ[6] ଦେଖିବାକ ମୋହତ୍ତର[7] ॥୨୩॥

ତୁମ୍ଭେ[8] ରହିବାକ ମୋ[9] ଝିଅ ଉତ୍ତରା ନୃତ୍ୟ ଗୀତ ଶିଖାଇବ
ଅର୍ଜୁନ ବୋଲନ୍ତି ରହିଲେ ରହିବା ସଦୟା ଯେବେ[10] କରିବ ॥୨୫॥

ବିରାଟ ବୋଇଲେ କହିଲ ଯେ ନତ ସ୍ତ୍ରୀ ପୁରୁଷ[11] କେମନ୍ତେ
ସ୍ତ୍ରୀ ପୁରୁଷ ବାହାର ନପୁଂସକ ବୋଲଣ କହିଲେ ତୁମ୍ଭେ[12] ॥୨୬॥

---

୧ । କ ଖ ଘ. ଧନଞ୍ଜୟ
୨ । ଖ. ଯେବା ଅର୍ଜୁନ ପ୍ରତକ୍ଷେ ମୁ
ଗ. ଯେବା ଅର୍ଜୁନ ପ୍ରତକ୍ଷେ ମୁ ରାଟ
ଘ. ଯେବା ଅର୍ଜୁନ ମୁ ପ୍ରତକ୍ଷେ
୩ । ଖ. ରାଜକୁ ଆଇଲେ ଏ କଥା ସେ ମୁହିଁ
୪ । କ ଖ ଘ. ନୃପମଣି
୫ । କ. ଯେଉ ଯୁଦ୍ଧେଷ୍ଠିଙ୍କ
ଖ. ଯଉ ଯୁଧିଷ୍ଠିଙ୍କ
ଗ. ବୋଲଇ କେଉଁ ଯୁଧିଷ୍ଠିଙ୍କ
ଘ. ଯୁଧେଷ୍ଠିଙ୍କ
୬ । ଖ. ଧର୍ମନନ୍ଦନଙ୍କୁ
କ. ସେ ମହାପ୍ରଭୁଙ୍କୁ
ଘ. ସେ ମାହାପ୍ରଭୁଙ୍କୁ
୭ । ଘ. ମୋହୋତ୍ତର
୮ । କ—ଗ ତୁମ୍ଭେ
୯ । କ. ମୋ
୧୦ । ଘ. ବୋଇଲେ—ମୋତେ
୧୧ । କ. ନାତପ୍ରିସ୍ତ୍ରୀ ପୁରୁଷ
ଗ. ବୋଲଇ କହିଲେ ଯେ ନତପ୍ରିସ୍ତ୍ରୀ ପୁରୁଷ
ଘ. ବୋଲନ୍ତି—ପୁରୁଷ
୧୨ । କ ଘ: କୋନ୍ତେ
ଗ. ପୁରୁଷୁଂ ବାହାର ନମ୍ପୁସକ—କୋନ୍ତେ

ବିରାଟ ବୋଇଲେ ଦେଖିଲେ ଯିବା ସେ ସେ କଥାକୁ ଯିବା ପ୍ରତେ[୧]

ନିର୍ମଳ ହୋଇ[୨] ଅନ୍ତଃପୁରେ ରହିବ ଆଶଙ୍କା ନ ଥିବ ଚିତ୍ତେ ॥୨୭॥

ଅର୍ଜ୍ଜୁନ ବୋଲନ୍ତି[୩] ପରୀକ୍ଷା ଦେବ ସେ ପ୍ରତକ୍ଷେ ବୃଦ୍ଧ ବିରାଟ

ବିଶ୍ୱାସ[୪] ଲୋକ ଜଣେ ଆସି ଦେଖିବ ପଢ଼ିବ ଅନ୍ତର ପାଟ ॥୨୮॥

ନୃପତି ଅଙ୍କରେ[୫] ଆସ୍ଥାନ ତଳରେ ଅନ୍ତର ପାଟ ପଢ଼ିଲା

ପାଟକେଶ୍ୱର ମନ୍ତ୍ରୀ ଯାଇ ଭୂଷଣେ ପରୀକ୍ଷା ଯାଇ[୬] ଦେଲା ॥୨୯॥

ଶୁଣି ନୃପତି[୭] ଆନନ୍ଦ ହୋଇକରି ଜରିବାସ[୮] ଅଣାଇଲେ

କୋଳିଙ୍କ ହସ୍ତରେ ବୃହନ୍ନଳା ଶିରେ[୯] ଶାଢ଼ୀ ବେଗେ ବନ୍ଧାଇଲେ ॥୩୦॥

ବୃହନ୍ନଳା କର[୧୦] ଧରିଣ ବିରାଟ ଅନ୍ତଃପୁରରେ ପ୍ରବେଶ

ଉତ୍ତରା ବାଳିକା ଅଣାଇ ଭୂଷଣେ ସମର୍ପିଲେ[୧୧] ତାଙ୍କ ପାଶ ॥୩୧॥

---

୧। ଖ. ଖଂଡ଼ରତେ
ଗ ଘ. ବିରାଟ ବୋଲନ୍ତି—ତା କଥାକୁ ପ୍ରତେ

୨। ଗ. ନିର୍ମଳ ହେଲେ

୩। ଙ. ବୋଇଲେ

୪। କ. ବିଶାସ

୫। କ. ନୃପ ଅଙ୍କ
ଖ. ନୃପତି ଅଙ୍କରେ
ଘ. ନୃପତି ଅଗ୍ରେରେ

୬। କ. ପାଟେକ ଶର ମନ୍ତ୍ରୀ ଯାଇ ପ୍ରତକ୍ଷେ ପରୀକ୍ଷା ଯାଇ
ଙ. ପାଟେଶ୍ୱର ମନ୍ତ୍ରି ବେନି ଭୂଷଣେ ବେନି ଭୂଷଣେ
ଚ. ମନ୍ତ୍ରି ଆସି ଭୂଷଣେ ପରୀକ୍ଷ ଦିଲୁଂ
ଘ. ପରୀକ୍ଷ ଦିଲୁ

୭। କ ଖ ଘ. ନୃପତି

୮। କ. ଜରିପାଟେ
ଗ ଘ. ଜରିପାଟେ

୯। ଗ. ବୃହନ୍ନଳା ଶିରେ

୧୦। ଙ. ବୃହନ୍ନଳା କର

୧୧। ଘ. ବେଗେଣ ଅଣାଇ ସମର୍ପିଲେ

ନୃତ୍ୟ ଗୀତ ଶିଖାଇବ ବୋଲିକରି[1] ଅପୂର୍ବ ମନ୍ଦିର ଦେଲେ
ଆମ୍ଭର ଶ୍ରେଷ୍ଠ ମନ୍ଦିରେ ଏ ଭୁଞ୍ଜିବେ[2] ବହ୍ଲଭଳୁ ରାଜା ବୋଲେ ॥୩୨॥

ନାଟ ମନ୍ଦିରେ ଧନଞ୍ଜୟ ରହିଲେ ସେଦିନ ଉତ୍ତରା ବାଳୀ[3]
ନୃତ୍ୟଗୀତ ତାଙ୍କୁ ଶିଖାଇ ବଞ୍ଚନ୍ତି ପଖାଉଜେ କରି[4] ସ୍ନେହ ॥୩୩॥

ବିରାଟ ପାଇ ଆସ୍ଥାନରେ ମିଳିଲେ କୌରଭଟଙ୍କ ସଙ୍ଗତେ
ପୁଣ ବେନି ତନ୍ତ୍ରଂ ପଣ ଖେଳୁଛନ୍ତି ଅତିହିଁ ଆନନ୍ଦ ଚିତ୍ତେ[5] ॥୩୪॥

ପଞ୍ଚ ଅକ୍ଷର ଅନୁଲୋମ ବିଲୋମ ବୃତ୍ତେ କରି[6] ବୋଲନ୍ତି ହରି
କହେ ବିଶ୍ୱମ୍ଭର[7] ବିରାଟ ଭାରତ ସେହି ନାମ ହୃଦେ ଧରି ॥୩୫॥

---

୧। ଖ. ତାଙ୍କୁ
ଗ. ପଖାଉଜ ଧରେ
୨। ଖ. ଆମ୍ଭ ମନ୍ଦିରେ ମନ୍ଦିରେ ଭୁଞ୍ଜିବ
ଘ. ତାଙ୍କୁ ଶିଖାଉଛନ୍ତି ପଖାଉଜ ଧରେ
୩। ଖ. ଧନଞ୍ଜୟ ରହିଲେ ସେଦିନ ଉତ୍ତରା ବାଳୀ।
୫। ଚ. ଅତି ଆନନ୍ଦ ମତେ
ଚ. ଅର୍ଜୁନ ରହିଲେ ଉତ୍ତରା ବାଳିକା ସେଦିନ
୬। ଭ. ଅକ୍ଷରେ ଅନୁଲୋମ ବିଲୋମ ବୃତ୍ତେଣ
ଖ ଘ. ଅନୁଲୋମ—ବୃତ୍ତେକ
୪। ଚ. ତାଙ୍କୁ ଶିଖାଇ ବଞ୍ଚନ୍ତି ପଖାଉଜ ଧରେ
୭। କ. ବିଶ୍ୱମ୍ଭର

## ପଞ୍ଚମ ଛାନ୍ଦ

### ରାଗ—ନ ଟୋଇ ବୃତ୍ତେ

ଦ୍ରୋପଦ ନନ୍ଦନୀ ତ୍ରିପୁର ମୋହିନୀ କନକ କେତକୀ ତନୁଛାର[1]
ମୁଖ ଶତପତ୍ର[2] ଚକ୍ଷୁ ବେନନେତ୍ର ଲୁଚର ବକତ[3] ଇନ୍ଦୀବର ।୧।
ଅତସି କୁସୁମ ନୋହେ ଚକ୍ଷୁ ଧମ କୁଟିଳ ମାଳ ଅପୂର୍ବ କେଶ[4]
ନାସା ତିଳଫୁଲ ଜବାପୁଷ୍ପ ଭୁଲ ସୁନ୍ଦରି[5] ସୃଷ୍ଟି ଉଦନ ବାସ ।।୨।।
ଦନ୍ତ କୁନ୍ଦପର କୁନ୍ଦେ ଏକ ସର[6] ଭଲ ବିଧାତା ନିର୍ମାଣ କଲ
ଭ୍ରୁତ୍ତ[7] ଫୁଲଧନୁ କଣ୍ଠ ମୋହ ପାଶେ ଜଗତ ଜୀବନ[8] ବନ୍ଦୀ ହେଲ[9] ।।୩।।
ଜାନ୍ତ[10] ଚମ୍ପାକଳ ପତ୍ରଏ ଅଙ୍ଗୁଳି କମଳ କରରେ[11] ଶୋଭାପାଏ
ଜିତ ନଖମାନ ଜାନ୍ତରେ[12] ସମାନ ଖିଷ ବେଣୁପତ୍ର ଅଗ୍ରପ୍ରାଏ ।।୪।।
କୋମଳେ[13] ଶିରିଷ ପ୍ରାପ୍ୟେ ତନୁଦେଶ ମଦ୍‌ଜୋଷ ଅବା କୁଚଭର[14]
ଚରଣ ଅଙ୍ଗୁଳି ଅଶୋକର କଳ ଦ୍ୱାଦଶ କୁସୁମେ[15] ତନୁ ଛାର ।।୫।।

---

୧। କ. କନେକ—ତନୁବାର
ଘ. କନେ କେତକ ତନୁଚାର
୨। କ. ସେତପତ୍ର
ଖ-ଘ. ସତପତ୍ର
୩। ଘ. ବକର
୪। କ. ଅତସି କୁସୁମ ଚକ୍ଷୁ ବେନ ନୋହେ ଧମ କୁଟୀଳ ଅପୂର୍ବ କେଶ
ଖ. ଅସିତ କୁସୁମ—କୁଟିଳ ସିତ ଅପୂର୍ବ କେଶ
ଙ. କୁଳ ଅପୂର୍ବ କେଶ
୫। କ ଘ. ପୁଷ୍ପତୁଲି ସୁନ୍ଦର
ଖ. ପୁଷ୍ପତୁଲ ସୁନ୍ଦରି
୬। ଙ. ବଢ଼ କୁନ୍ଦସର କୁନ୍ଦେ ଏକ ପନ୍ତି
୭। କ. ଭ୍ରୁ
୮। କ ଗ. ମୋହପାଶେ ଜଗତ ଜିବନ
ଖ. ମୋହପାଶେ ଜଗତ ବନ୍ଦନ
୯। ଘ. ବନ୍ଦୀକଲ
୧୦। ଖ ଗ. ଜାଣି
୧୧। କ. କରକ
ଘ. ଜାନ୍ତ ଚମ୍ପାକଳୀ – କରରେ
୧୨। କ. ଜାତ ନଖମାନ ଜାଗରେ
ଗ. ଜିତ ନଖମାନ ଜିତର
୧୩। ଙ. କମଳ
୧୪। ଗ ଘ. କିବା କୁଚଭର
୧୫। କ. କୁସୁମରେ

କପୋଳେ ସିନ୍ଦୂର[1] ଦିଶଇ ସୁନ୍ଦର ଚନ୍ଦ୍ରମଣ୍ଡଳେ କି ଉଦେ ଭାନୁ
ଗଣ୍ଡରେ ମକର ଲମ୍ବିଛି କି କର ବଚନେ ନ ଆସେ[2] ଅନୁମାନୁ ।।୬।।

ଚିବୁକେ ଭ୍ରମର କିବା ସେ ଭ୍ରମର ବଧୂଙ୍କ[3] ମଧୁ ଚୁମ୍ବିବା ଆଶେ[4]
କୁଞ୍ଚିତ କୁନ୍ତଳ[5] ଝିଲମିଲ ମାଳୀ ତଥି ଚନ୍ଦ୍ରସୂର୍ଯ୍ୟ ଶୋଭା ଦିଶେ ।।୭।।

ନୟନେ ଅଞ୍ଜନ କଳେଇ ରଞ୍ଜନ[6] ବେଣୀ ଲମ୍ବିଲା ଲାଗି[7] କର୍ଣ୍ଣଧର
ସୁକେଶ ମୁକୁଳ ଜାତି ପୁଷ୍ପମାଳ[8] ଅଗ୍ରରେ ବାନ୍ଧିଲେ ଥୋପି କର ।।୮।।

ନାସେ ନାସାମଣି ପଦ୍ମରାଗ ମଣି[9] ବାମ ଦକ୍ଷିଣ ପୃଷ୍ଠରେ ଗୁଣା
କର୍ଣ୍ଣେ[10] ମଲ୍ଲୀକଳି[11] ରତ୍ନେ ଅଛି ଝଳି ଦେଖିଲେ ବିବେକ ହୋଏ ବଣା[12] ।।୯।।

ଝଲକା ଝଲକ ନପଡ଼େ ପଲକ ଫୁଲ ଭୂଲକୁ[13] ଉପମା ନାହିଁ
କର୍ଣ୍ଣର ବଦଆ ସେ ଚିତ୍ର ବଦଆ ଅଙ୍ଗେ ସେ ଅବା ଦେବ ଗୁଞ୍ଜି[14] ।।୧୦।।

---

୧ । କ-ଖ କପୋଳେ ସିନ୍ଦୂର
୨ । କ. ନ ଅଧୁ
ଖ ଘ. ନୁଅ ସେ
୩ । କ ଖ: ବଧୂକ
୪ । କ-ଘ ଅଂଶ
୫ । ଖ. କବୁଁ ରକୁନ୍ତଳ
୬ । ଗ ଘ. କଣ୍ଠ ରଞ୍ଜନ
୭ । ଖ. ଲମ୍ବିକଛ
୮ । ଚ. ଯାତି ପୁଷ୍ପମାଳ
ଘ: ଯାତ ପୁଷ୍ପମାଳ
୯ । ଚ. ଘାଣି
୧୦ । ଭ. କର୍ଣ୍ଣେ
୧୧ ଘ. କଢ଼ୀ
୧୨ । ଖ. ଭିତରେ ବଣା
ଘ: ପଦ୍ମଚମ୍ପେକ ମୋହନମାଳା
୧୩ । କ ଙ. ପଲକ ଭୂଲକୁ
୧୪ । ଖ. ବାସେନେ ଅବାକଣ ଗୁରଣ୍ଠି
ଙ. ଅଗାଡ଼ଗନେ ଅବା ଦେବ ଗୁଣ୍ଠି

କଣ୍ଠେ ସ୍ଫଟିକ ରହିଅଛି ପୂର୍ବ ପଦ୍ମରାଗ ମୋହନମାଳା
କରେ କଙ୍କଣ ଗୁଞ୍ଜରତ୍ନ ମିଳି' ଜମବାଗ୍ମି ମିଶି ସ୍ବଗ ଗଳା' ॥୧୧॥

ସୁବର୍ଣ୍ଣ ପାଉଁଜି ତାଙ୍କ ରତ୍ନେ ଝଳ ହେମ କଙ୍କିଣୀ କଟୀରେ ଶୋଭେ
ଦିବ୍ୟ ଅଙ୍ଗୁଳିରେ ରତନ ମୁଦରେ ଭୁଜଲେ ଜଗତଜନ ମୋହେ' ॥୧୨॥

ଚରଣରେ ବଜା ପାହୁଡ଼ ସୁବଜା ନୂପୁରେ' କରେ ଅପୂର୍ବ ଧ୍ୱନି
ଚଳନେ ପାଦ ଝୁଣ୍ଟିଆ ଶବଦ ଶୁଣି କାମେ କ୍ଷଣ ହେବେ ମୁନି ॥୧୩॥

ଅମଳାଣ ପାଟ ବଟଣ ଝଟ ଝଟ ଧଡିରେ କନକ ପଦ୍ମ ପଡ଼ି'
ପିନ୍ଧିଲେ ସଜାଡ଼ି କଟୀତଟେ ଭିଡ଼ି ସେ କୁଞ୍ଚ ଖୋସିଣ ଦେଲେ ଗୁଡ଼ି ॥୧୪॥

ଓଢ଼ଣି ପୀତାମ୍ବର ପାଟ ମନୋହର କନକ ଫୁଲରେ ଶୋଭାପାଏ
ବେନ ମୁଖ ଧଡ଼ି ଜରିରେ ବନ୍ଧାଇ ଚନ୍ଦ୍ରପାଶେ ମୋତିହାର ଶୋଭେ' ॥୧୫॥

ଅଳାଇଚ ପାନ ବୋଳ ମୋତି ଚୂନ ଲବଙ୍ଗ ମିଶାଇ ଲଗି ହେଲେ''
ନାସିକା ଫୁଲାଇ କଟାକ୍ଷ ଖେଳାଇ ମନ୍ଦ ମନ୍ଦ ହସି ହଜେ କଲେ ॥୧୬॥

---

୧। ଖ. ଗର୍ଭୀସ୍ଥାନ—ମିଳ
ଘ. କଟିଆଳ ଗୁଞ୍ଜରତ୍ନ ମିଳ

୨। ଗ. ହସ୍ତରାଜ

୩। କ. ଭୁଜଲେ ଜଗତଜନ ମୋହେ
ଖ. କନକ ମୁଦରେ ଭୁଜଲେ
ସଖନ ମନ ମୋହେ।
ଘ. ଭୁଜଲେ—ମୋହେ

୪। ଙ. ନେପୁର

୫। କ ଖ. ପ୍ରଚଳଣ ପାଦ
ଘ. ଚୁଚଳନେ ପଦ

୬। ଖ. କନେକ ପଦ୍ମ ପଡ଼ି
ଗ. କନକଲତା ପଡ଼ି

୭। କ. ସେ କୁଞ୍ଚ ଖୋସିଣ ହେଲେ ଗୁଡ଼ି
ଖ ଗ. ସେ କୁଞ୍ଚ ଖୋସି ଦେଲେ ଗୁଡ଼ି

୮। ଖ. ଓଢ଼
ଘ. ଓଢ଼ି

୯। କ. ମୋତହାର ଶୋଭେ
ଖ ଗ. ମୋତୀହାର ହୋଇଛେ
ଘ. ହୋଏ

୧୦। ଖ. ସ୍ନେହାଇଲେ

ବିରାଟ ନଗର ପଶ୍ଚିମ ଦୁଆରେ[1] ପରବେଶ ହେଲେ ତନ୍ୱୀ ଯାଇ[2]
ତାଙ୍କୁ ଦେଖି କରି ସର୍ବ ପରିବାର ପୁଚ୍ଛିଲେ ତୁମ୍ଭେ ଅଇଲ କାହିଁ[3] ॥୧୭॥

ବୋଲନ୍ତି ପାଞ୍ଚାଳ ଶୁଣିସିରେ ବାଳ[4] ରାଣୀଙ୍କ ଛାମୁରେ ଯାଇ କହ
ରକ୍ଷା ତାଙ୍କ ପାଶ କରିବ ସୁବେଶ ଯେବେ ମୋରଠାରେ ହେବ ସ୍ନେହ[5] ॥୧୮॥

ଶୁଣି ଦାସୀଗଣ ମନେ ବିସ୍ମରଣ ବୋଲନ୍ତି[6] ଏତ ଅପୂର୍ବ ଶୋଭା
ରାଣୀ ଏହା ଲାଗି ହୋଇବେ ଦୁର୍ଭାଗୀ ନୃପତି ଦେଖି ହୋଇବେ ଲୋଭା[7] ॥୧୯॥

କେ ବୋଲନ୍ତି[8] ଆସ ଦେଖାଇବା ବାସ କେ ବୋଲନ୍ତି[9] ଦେବା ପଲଙ୍କ ଡ଼ାଇ
କେ ବୋଲନ୍ତି[10] ରହ କର ମୋର ବୋଲ ରାଣୀଙ୍କ ଛାମୁରେ ସେ ଜଣାଇ[11] ॥୨୦॥

ଆଜ୍ଞା ଦେବେ ଯାହା କରିବା ନା ତାହା ଦେବସ୍ତ୍ରୀ ପ୍ରାଏ ଏହେ ଦିଶି[12]
ଏତେ ମନେ ଭାଳି ଗଲେ ସର୍ବଆଳୀ ରାଣୀ ଛାମୁରେ ଜଣାନ୍ତି ଆସି[12] ॥୨୧॥

---

୧ । କ. ପଶ୍ଚିମଦ୍ୱାର
ଗ. ପଶ୍ଚିମ ଦୁଆର
୨ । ଗ. ଯାଇଁ ତହିଁ
୩ । କ. ଦେଖିକରି ଗଲେ ପରିବାର ଶ୍ରୀକୃଷ୍ଣା ଆଗରେ ଯାଇଁ କହି
ଖ. ଶ୍ରୀକୃଷ୍ଣେ ଛାମୁରେ କେତେ କହି
ଗ. ଦେଖିକରି ତହିଁ ପରିବାର ଆଶ୍ଚର୍ଯ୍ୟ ହୋଇଣ ସର୍ବେ ରହି
୪ । ଘ. କହନ୍ତି ଦ୍ରୌପଦୀ ଶୁଣରେ ଯୁବତୀ
୫ । କ. ସଇନ୍ଧ୍ରୀ ବେଶରେ ରହିବି ପାଶରେ ଯେବେ ସେ କରିବେ ମୋତେ ସ୍ନେହ
୬ । କ. ଶୁଣି ତହିଁ ଦାସୀ ମନରେ ବିସ୍ମୟ
୭ । ଘ. ହୋଇବ ଦୁର୍ଭାଗି ନୃପତି ଦେଖିଲେ ହେବେ ଲୋଭ
୮ । ଘ. ବୋଲନ୍ତି
୯ । ଘ. ବୋଲନ୍ତି
୧୦ । ଘ. ବୋଲଇ
୧୧ । ଗ. ଯେତ ହଣେ
୧୨ । କ ଖ. ପୋଥିରେ ୧୮ରୁ ୨୧ ପାଠ ନାହିଁ ।
ଗ. ଏତେ ବୋଲିକରି ଗଲେ ସର୍ବେ ନାରୀ ସମସ୍ତେ ଜଣାନ୍ତି ରାଣୀ ପାଶେ ।

ରାଣୀ ଆଜ୍ଞା ଦେଲେ ନାରୀମାନେ ଗଲେ ଦ୍ରୋପଦୀଙ୍କି ନେଲେ ତାଙ୍କ ପାଶ
ଶ୍ରୀକୃଷ୍ଣା ଉଠିଲେ ଆଲିଙ୍ଗନ କଲେ ପୂଜାକରି ତାଙ୍କୁ ଦେଲେ ତୋଷ ॥୨୨॥

ପଚାରନ୍ତି ରାଣୀ ଶୁଣ ମହାମ୍ମାଣୀ[1] କେ ତୁମ୍ଭେ ଆଇଲ କେଉଁ ଦେଶୁ
କି କାର୍ଯ୍ୟେ[2] ମୋ ପୁରେ ଗମନ ସତ୍ୱରେ ସ୍ୱର୍ଗର ସୁନ୍ଦରୀ[4] ପ୍ରାଏ ଦିଶୁ ॥୨୩॥

କହନ୍ତି ପାଞ୍ଚାଳି ଶୁଣସିରେ ରାଣୀ ପଞ୍ଚକଟକ ହସ୍ତିନା ପୁରୀ
ସେ ପଞ୍ଚ ପାଣ୍ଡବ ମହିମା ଦୁର୍ଲ୍ଲଭ ଦ୍ରୋପଦୀ ନାମେ ତାହାଙ୍କ[5] ନାରୀ ॥୨୪॥

ତାଙ୍କର ମୁଂ ସଖୀ ତାଙ୍କୁ ମୋତେ ଲେଖି କହୁଛନ୍ତି ନଥାଇ ମୋ[6] ଅନ୍ତର
ରଖି ତାଙ୍କ ପାଶ କରଇ ସୁବେଶ ସଇନ୍ଧ୍ରୀ ନାମ ଅଟଇ ମୋର ॥୨୫॥

କୂଟ[7] ପଶାଖେଳ ପାଣ୍ଡବ ପଞ୍ଚାଳି ରାଜ୍ୟ ତେଜି ବନେ ବାସ[8] କଲେ
ବାର ବରଷରେ ଭ୍ରମିଲେ[9] ବନରେ ତୁମ୍ଭର ରାଜ୍ୟକୁ ସେ ଆଇଲେ ॥୨୬॥

ସେ ଶବଦ ଶୁଣି ଅଇଲ ମୁଂ ପୁଣି[10] ଶ୍ରୀକୃଷ୍ଣା ବୋଲନ୍ତି[11] ରହ ରହ
ମୁକୁଳିତ କେଶ ଏକ ଉବସ ସତ୍ୟକରି ମୋର ଆଗେ କହ ॥୨୭॥

---

୧ । ଘ. ମାହାମ୍ମାଣି
୨ । ଘ. କି କାର୍ଯ୍ୟ
୩ । ଖ. 'ଗମନ ସତ୍ୱରେ' ପାଠ ନାହିଁ
୪ । ସ୍ୱର୍ଗ ସୁନ୍ଦରୀର
୫ । କ. ଦ୍ରୁପଦୀ ନାମେ ତାହାଙ୍କ
ଗ. ଦ୍ରୋପଦୀ ନାମେ ତାଙ୍କର
ଘ. ସେ ପଞ୍ଚ ପାଣ୍ଡବେ ମହିମା ଦୁର୍ଲ୍ଲଭେ
ଦ୍ରୋପଦୀ ନାମେ ତାହାଙ୍କ
୬ । ଖ. ମୋତେ ନ ଥାଇ
୭ । କ ଘ. କୁଟ
୮ । ଘ. ବନବାସ
୯ । ଙ. ଭୁଲିଲେ
୧୦ । ଘ. ଅଇଲିଃ ପୁଣି
୧୧ । ଖ. ବୋଇଲେ

କହନ୍ତ ଚଣ୍ଡାଳ ଦୁଅରର[1] ଜନ ମୋ କେଶ ଧଇଲା ସେ ପାମର[2]
ସେହିଦିନୁ ମୁହିଁ କେଶ ନ ବାନ୍ଧଇ ମନରୁ[3] ନ ଯାଇ କଥା ତାର ॥୨୮॥
ମୋର ସ୍ୱାମୀ ଯେବେ ଭୁଜ ଉପାଡ଼ିବେ ରୁଧିରରେ ବାନ୍ଧିବ ମୁହିଁ ଜୁଡ଼ା
ଏମନ୍ତ ଶୁଣିଣ ମନରେ ଗୁଣିଣ ଶ୍ରୀକୃଷ୍ଣ ପାଇଲେ ମନେ ପୀଡ଼ା[5] ॥୨୯॥
ମୋର ଶତେ ଭ୍ରାତ[6] ହୋଇବେ ସେ ହତ ନାରଦ[7] ଅଛନ୍ତି ପୂର୍ବେ କହି
କହିଲେକ[8] ଗଣି ସବୁଅଛି ଜାଣି ମୁଁ ସେବା କରିବ ଥାଅ ରହି ॥୩୦॥
ଯାଗ୍ୟସେଣୀ କହ ରହିବ ଯେ ମୁହିଁ[9] ପୁରୁଷରେ ମୋତେ ନ ଦେଖିବ[10]
ସୁଙ୍କରେ ନନ୍ଦନ କରିବ ଭୋଜନ ମୋହଠାରେ ସତ୍ୟ ରଖିଥିବ ॥୩୧॥
ଶ୍ରୀକୃଷ୍ଣ ବୋଲଇ[12] ସବୁ ମୁଁ ଜାଣଇ[13] ଶୁଣିଅଛି ତୁମ୍ଭ କଥାମାନ[14]
ତୁମ୍ଭେ କୃପା କଲେ[15] ଅଜ୍ଞାତ ସରିଲେ ପାଣ୍ଡବେ କରିବ[16] ଦରଶନ ॥୩୨॥
ବହୁ ପୁଣ୍ୟକଲି[17] ତୁମ୍ଭଙ୍କୁ ଭେଟିଲି ମୁହିଁ ସେବଥିବ ତୁମ୍ଭ ପାଦେ
କିଛି ନ ବଳିବ ରହ ମୋର ପୁର ଜନ ଶେଷପାଏ[18] ଅପ୍ରମାଦେ ॥୩୩॥
ନଣ୍ଡିନ୍ତେ ଦ୍ରୋପଦ ନନ୍ଦନୀ ପ୍ରସାଦ ହୋଇ ରହିଲେ ଶ୍ରୀକୃଷ୍ଣ ପାଶ
ଶ୍ରୀକୃଷ୍ଣ ଚରଣ ମୋହର ଶରଣ ଭଣେ ଦାନ[19] ବିଶ୍ୱମ୍ଭର ଦାସ ॥୩୪॥

---

୧ । ଖ. ଦଅରରେ
ଘ. ଦୁଅରେ
୨ । ଘ. ସେ ପାମନର
୩ । ଙ. ବାନ୍ଧଇସନର
୪ । ଖ ରେହେରେ
ଚ. ରେଧିରେ ବାନ୍ଧିବ ମୁହିଁ
୫ । ଜ. ଶୁଣି ଶ୍ରୀକୃଷ୍ଣ ପାଇଲେ ମନେ ମହାପୀଡ଼ା ।
ଖ. ମନେବ୍ୟଥା
ଗ. ଶ୍ରୀକୃଷ୍ଣ ମଣିଲେ ମନେ ପୀଡ଼ା
୬ । ଜ ଖ. ସତେ ଭ୍ରାତ
୭ । ଘ. ନାରଦେ
୮ । ଜ ଗ. କହିଲେ ଜ
୯ । ଜ. ଯାଗ୍ୟସେଣୀ କହ—ମୁହିଁ
ଖ. ଜଗ୍ୟସେଣ ଭଦ୍ର ହେବଇ ମୁହ
ଘ. ଜଗ୍ୟସେନି କହେ ଯେବେ ମୁ ରହିବ
୧୦ । ଖ. ପୁରୁଷରେ ମୋତେ ଦେଖିବୁ
୧୧ । ଗ. ମୋ ଠାରେ ସତ୍ୟ
ଘ. ମୋହ ପରେ ସତ୍ୟ
୧୨ । ଖ. ବୋଲଇ
୧୩ । ଖ. ଜାଣିଅଛୁ ମୁହ
୧୪ । ଗ ଘ. ଇତିମାନ
୧୫ । ଜ ଗ ଘ. କୃପା କଲେ
ଖ. ତୁମ୍ଭଙ୍କୁ ପାଇଲେ
୧୬ । ଜ. ଜରିବ
୧୭ । ଜ ଗ. ପୁଣ୍ୟବଳ
୧୮ । ଖ. ଦନ ସେଷ ହେବ
୧୯ । ଜ. ଶ୍ରୀକୃଷ୍ଣ—ଭଣେ ଦନ
ଖ ଘ. ଭଣେ ଦନ
ଗ. ମୁଁ ତହିଁ ସରଣ ଭଣେ ଦନ

## ଷଷ୍ଠ ଛାନ୍ଦ

ରାଗ—କଳସା[1]

ଦାହ କନକର କାନ୍ତି[2] ନକୁଳ କୁମାର
ଅପୂର୍ବ ସୁନ୍ଦର ସେ ଅତ୍ୟନ୍ତ[3] ସୁକୁମାର ॥୧॥
କରରେ ହେମ କଙ୍କଣ କର୍ଣ୍ଣରେ କୁଣ୍ଡଳ[4]
କସ୍ତୁରୀ ତିଳକ ଶୋଭା ପାଉଛି କପୋଳ[5] ॥୨॥
କର ଅଙ୍ଗୁଳିରେ ଶୋହେ ମରକତ[6] ମୁଦ
ଟେକ ଭିଡ଼ ପିନ୍ଧିଛନ୍ତି[7] ନୀଳପାଟ ଖଦା ॥୩॥
ଜରିର କନକ ପଦ୍ମ[8] କୁସୁମି ପାଗରେ
ଅତି ଯତ୍ନ କରିଣ ବାନ୍ଧିଲେ[9] ମସ୍ତକରେ ॥୪॥
ଅଷ୍ଟରତ୍ନ ଜଡ଼ିତରେ ମଣ୍ଡାଇଲେ ପେଟ
ଝୁଲକ ହେମ ଟାଙ୍ଗିଆ ଖୋଷିଲେ ସୁପଟ୍ଟ[10] ॥୫॥

---

୧। ଗ. ଘ. ରାଗ କଳସା ବାଣିରେ
୨। ଗ. ଜାହାର କନକ କାନ୍ତି
ଖ. ଦାହ କନକ ଗଢ଼ନ
ଘ. ବାହା କନକର ତନୁ
୩। ଖ. ଅତ୍ୟନ୍ତ ସୁନ୍ଦର ସେ ଅତି
୪। ଗ. କର୍ଣ୍ଣେଣ କୁଣ୍ଡଳ
୫। କ ଖ. କସ୍ତୁର ତିଳକ ଶୋଭା ପାଉଛି କପୋଳ
ଗ. ଶୋଭା ପାଉଛି କୋପଳ
୬। ଗ ଘ. ମର୍କତର
୭। ଘ. ପିନ୍ଧିଅଛି
୮। ଗ. ଜରି-କନକ ପଦ୍ମର
ଘ. ଜରି କନକ ପଦ୍ମର
୯। ଖ. ବାନ୍ଧିଛି
୧୦। ଖ. ଝୁଲକ ହେମ-ଟାଙ୍ଗିଆ-ସଜଗ
ଗ ଘ. ଖୋସିଲେକ ସୁପ

ସବୁ ମାଳ ଜରିପାଗ ଉପର ପାଟିରେ[୧]
ବେନ ଲମ୍ବି[୨] ଓହଳାଇ ବାନ୍ଧିଲେ କଟୀରେ[୩] ॥୬॥

ସେବତୀ ଫୁଲ ଗଭାଏ ପାଗଠାରୁ ଖୋସିଲେ[୪]
ବେନ ଫଣ ମୋଡ଼[୫] କର୍ଣ୍ଣମୂଳେ ଲଗାଇଲେ ॥୭॥

ଟୋପା ଟୋପା ଯାମଦାନି[୬] ଜାମା ସେ ସୁନ୍ଦର
କନକ ଚମ୍ପକଲତା[୭] ପଡ଼ିଛି ତହିଁର ॥୮॥

ବେନ ଚରଣ ଗଳାଇ ଆପଣେ[୮] ପିନ୍ଧିଲେ
ଜରିପାଟ ଡୋର ଆଣି ଅଣ୍ଟାରେ କସିଲେ[୯] ॥୯॥

ଅଙ୍ଗେ କୁସୁମ ମାଳାଏ[୧୦] ହୋଇଲେକ ଲଗି
ବେନ[୧୧] ଧଡ଼ିରେ ଅଷ୍ଟରତ୍ନ ଅଛି ଲଗି ॥୧୦॥

କନକର ଲତା ବଣୁଅଛି[୧୨] ଧାଡ଼ି ଧାଡ଼ି
ଦେହପାକେ କନକ ଲତିକା ଅଛି ଜଡ଼ି[୧୩] ॥୧୧॥

---

୧ । ଖ: ସବୁଜାଲ ପାଟଜରି ଉପରେ ପଟିରେ
ଘ. ସବୁଜାଲ ଜରିପାଟ ଉପର ପାଟୀରେ
୨ । ଖ ଘ. କାନ୍ଧ
୩ । ଖ ଘ. କଣ୍ଟରେ
ଘ. ଓହ୍ଲୋଳାଇ—କଣ୍ଟରେ
୪ । କ. ବାନ୍ଧିଲେ
ଘ. ସେବତୀଫୁଲ ଗଭଣ୍ଡେ ପାସରେ
ଖୋସିଲେ ।
୫ । ଢ ଗ. ଯୋଡ଼
୬ । ଖ. ଯଟପାଟର ପାଏ
ଗ. ସ୍ୱଏଟ ପାଟର ପାଦ
ଘ. ସ୍ୱଏଟ ପାଟରେ ପାଦ
୭ । ଘ. ଚମ୍ପେକଲତା
୮ । କ ଘ. ଆପଣ
ଖ. ଚରଣେ ଗଳାଇ ଆପଣେ
୯ । ଖ. କଟିରେ ଭିଡ଼ିଲେ
ଗ ଘ. ଡୋର କଟୀ ଭିଡ଼ି ଗଣ୍ଠି ଦେଲେ
୧୦ । କ. ଚନ୍ଦ୍ରାଏ
ଗ. କୁମ୍ଭି ଚନ୍ଦ୍ରାଏ
ଘ. କୁହୁମି ଚନ୍ଦ୍ରାଏ
୧୧ । ଖ ଖ. ବାହୁନ
୧୨ । ଖ. ଚହ୍ନ ପଡ଼ି
ଗ. ଦଶ୍ରୁଚନ୍ଦ୍ର
ଘ. ଲଗିଅଛି
୧୩ । ଖ ଘ. କନକର ଫୁଲ ଅଛି ପଡ଼ି
ଗ. କନକର ଫୁଲମାନ ପଡ଼ି

ମାଳପାଟ ପଟୁକାଏ କଟୀରେ ବାନ୍ଧିଲେ
ବେଣପାସେ ମର୍କତର[1] ଝୁମ୍ପା ଲମ୍ବାଇଲ ।।୧୨।।
ହୀରାର ବାହୁଟି ବାନ୍ଧ ଦକ୍ଷିଣ ବାହାରେ[2]
ଶ୍ୱେତ[3] ଭ୍ରମର ଗୋଟିଏ[4] ଖୋଷିଲେ ଚହ୍ଳିରେ ।।୧୩।।
କନକର ପଦ୍ମମାଳ[5] ଅଷ୍ଟରତ୍ନେ ଜଳି[6]
ଛନସରି ହୋଇଣ ଗଳାରେ ଅଛୁ ଲୁନ[7] ।।୧୪।।
ମୋତିମାଳରେ ହୀରା ପଦକ ହୃଦତଟ[8]
ଚଉପାସ ରତ୍ନରେ ଝଣଇ ଝଟ ଝଟ[9] ।।୧୫।।
ସୁବର୍ଣ୍ଣର[10] କଳଆର ପକାଇ କାନ୍ଧରେ
ପାଟ କୋରଡ଼ାଏ ଘେନ[11] ଦକ୍ଷିଣ କରରେ ।।୧୬।।
ଅଳାଇଚ ଲବଙ୍ଗ ଖଣ୍ଡଆପାନ କଲେ[12]
ଧୀର ଧୀର ହୋଇଣ ଚହ୍ଳିରୁ[13] ଚଳିଗଲେ ।।୧୭।।

---

୧ । କ. ମର୍କତରେ

୨ । ଖ. ହୀରାବାହୁଟି ବାନ୍ଧିଲେ ଦକ୍ଷିଣ ବାହୁରେ ।

ଘ. ଦକ୍ଷିଣ କରରେ

୩ । କ ଖ ଘ. ଶ୍ୱେତ

୪ । ଘ. ଚହ୍ଳିରେ

୫ । ଗ. ପଦ୍ମମାଳେ

୬ । ଖ. ଜଡ଼ୀ

୭ । କ. ଲୁହ

ଗ. ପଡ଼ୀ

ଘ. କଣ୍ଠ-ଲୁଜ

୮ । ଖ. ହୃଦରେ ପଦକ

ଘ. ହୃଦତଟେ

୯ । ଘ. ଝଟଝଟେ

୧୦ । କ. ଶୁବର୍ଣ୍ଣର

୧୧ । କ. କରଡ଼ାଏ ଘେନ

ଖ. କୋରଡ଼ାଘେନ୍ତୁ

ଛ. କୋରେଡ଼ାଏ ଘେନ

୧୨ । ଖ. ଖେବାଇଲେ

୧୩ । କ. ଚହ୍ଳିରେ

ଘ. ହୋଇଣ ସେ ଚହ୍ଳ

ମତ୍ସ୍ୟ ଦେଶରେ ଯାଇ ହୋଇଲେ ପରବେଶ[1]
ସକଳ ଜନେ ଦେଖିଣ ହେଲେ ତାଙ୍କୁ ତୋଷ ॥୧୮॥

କେ ବୋଲଇ ସ୍ୱର୍ଗ ଛେକ[2] ଅଇଲେ ବଡ଼ ରାଜା
କେ ବୋଲଇ କୁବେର ଅଳକାପୁରୀ[3] ରାଜା ॥୧୯॥

ଗୋଡ଼ାଇ ପ୍ରଶଂସା କରୁଛନ୍ତି[4] ଲୋକମାନେ
ଦେଖନ୍ତି ଦେଖନ୍ତି ପରବେଶ ରାଜାର ଆସ୍ଥାନେ ॥୨୦॥

ଦେଖି ବିରାଟ କୋଳନ୍ତୁକୁ ବୋଲନ୍ତି[5] ଉତ୍ତର
ଦେଖହେ ଗୋସାଇଁ କାହୁଁ ଅଇଲେ[6] ସୁନ୍ଦର ॥୨୧॥

ଗନ୍ଧର୍ବକ ସ୍ୱର୍ଗପୁରୁ ଅଇଲେ ଉହ୍ଲାଇ[7]
କି କନ୍ଦର୍ପ ସାକ୍ଷାତ ଏମନ୍ତ[8] ବିସ୍ମରଇ ॥୨୨॥

ଯୁଧିଷ୍ଠି ରୁହାଁନ୍ତେ ଦେଖି ନକୁଳ କୁମାର
ପ୍ରଣମ୍ୟ କରି ଶୁଣିଲେ[9][10] ଜଗତି ତଳର ॥୨୩॥

---

୧ । ଗ. ପ୍ରବେଶ
ଘ. ଛାଦ୍ମଣ ହୋଇଲେ ପ୍ରବେଶ

୨ । ଡ. ସ୍ୱର୍ଗ ଛେକ

୩ । ଖ ଗ. ଏ ଅଳକାର

୪ । ଡ କରନ୍ତି

୫ । ଖ. କହନ୍ତି

୬ । ଡ. ଗୋସାଇଁ ଅଇଲେ

୭ । ଦ. ସ୍ୱର୍ଗରୁ ଅଇଲେ ଉଲ୍ହାଇ
ଗ. ସ୍ୱର୍ଗପୁରୁ ଅଇଲେ ଉଲ୍ହାଇ
ଘ. ସ୍ୱର୍ଗପୁରୁ ଅଇଲେ ଉଲ୍ହାଇ

୮ । ଖ ଘ. ଏ ମନେ

୯ । କ. ଯୁଧିଷ୍ଠିର ରୁହାନ୍ତେ ନକୁଳ

୧୦ । ଖ. ଶୋଧିଲ
ଗ ଘ. ହୋଇ ଶୁଣିଲେ

କୁନ୍ତେ[୧] ବୋଲେ ଠାକୁରଙ୍କ[୨] ଆଜ୍ଞା ହେଲା ତୋତେ
ଉଠ ଉଠ ସୁନ୍ଦର ପ୍ରଣମ୍ୟ କରୁ କେତେ[୩] ॥୨୪॥
ଯୁଧିଷ୍ଠିଙ୍କ[୪] ଆଜ୍ଞା ପାଇ ଉଠିଲେ ନକୁଳ
ମସ୍ତକରେ କର ଯୋଡ଼ି ଉଭାହେଲେ ତଳ[୫] ॥୨୫॥
ବିରାଟ ପର୍ବରେ ଭୂମେ କାହିଁରୁ[୬] ଅଇଲ
ଅପୂର୍ବ ରୂପ ଧରଣ[୭] ଜଗତ ମୋହିଲ ॥୨୬॥
ନକୁଳ ବୋଲନ୍ତି ଶୁଣ ବିରାଟ ନୃପତି
ପଞ୍ଚ କଣ୍ଟକ ହସ୍ତିନାପୁର ଆମ୍ଭ ସ୍ଥିତି ॥୨୭॥
ପୃଥ୍ବୀରେ ନୃପତିବର[୮] ଧର୍ମଙ୍କ ନନ୍ଦନ
ତାଙ୍କ ସାନୁଜ ଅଟନ୍ତି ବୀର ଭୀମସେନ ॥୨୮॥
ତାଙ୍କ ସାନ ଭ୍ରାତ ସେ ଅର୍ଜୁନ ମହାବୀର[୧୦]
ନକୁଳ କୁମାର ତାଙ୍କ ଅନୁଜ ସୋଦର[୧୧] ॥୨୯॥
ଅଶ୍ବଲାଗି କରାଇ ତାହାଙ୍କୁ ମୁହିଁ ନିତି[୧୨]
ଗ୍ରନ୍ଥିକ ମୋହର ନାମ ଶୁଣ ହେ ନୃପତି ॥୩୦॥

---

୧। କ ଗ ଘ. କୋନ୍ତେ
୨। ଖ ଗ ବୋଇଲେ ଠାକୁର
୩। ଖ. ଠାକୁରଙ୍କ ଆଜ୍ଞା ହେଲା ହେଲା ତୋତେ।
୪। କ. ଯୁଧେଷ୍ଠିଙ୍କ
ଘ. ଯୁଧେଷ୍ଠଙ୍କ
୫। ଖ. କରଯୋଡ଼ି ଉଭା ହେଲେ ତଳ
ଗ ଘ. ଉଭା ହେଲେ ତଳ
୬। କ. କାହିଁରେ
ଖ. କାହୁଁ
୭। ଖ ଘ. ମୁରତି ଧର
୮। ଖ. ମଧ୍ୟେ
ଗ ଘ. ସ୍ୱର୍ଗ୍ୟେ।
୯। ଖ. ତହିଁ ନୃପତି ଅଟନ୍ତି।
୧୦। କ. ସାନଭ୍ରାଥ ସେ ଅର୍ଜୁନ ମହାବୀର
ଖ. ସାନଭ୍ରାଥ ସନୁଜ ଅର୍ଜୁନ ବୀର
ଘ. ମହାବୀର
୧୧। ଗ. ସାନୁଜ ସୋଦର।
୧୨। କ. ଅଶ୍ୱଲାଗି ତାଙ୍କୁ କରାଇ ମୁହିଁ ନିତି।
ଖ. ଅଶ୍ୱଲାଗି ତାହାଙ୍କୁ ମୁଁ କରଇ ସେ ନିତି।
ଘ. ଅଶ୍ୱଲାଗି କରାଇଂ ତାଙ୍କୁ ମୁହିଁ ନିତି
୧୩। କ ଖ. ମୋର ନାମ।

ନକୁଳ ମୋହର ପର ଭିନ୍ନ[1] କିଛି ନାହିଁ
ଯେ ନକୁଳ ପ୍ରତକ୍ଷେ ଅଟଇ ହାଦେ ମୁହିଁ ॥୩୧॥

ତୋର ରାଜ୍ୟକୁ ପାଣ୍ଡବେ ଅଇଲାର[2] ଶୁଣି
ଚେଣୁକର ତୋତେ ସେ ଭେଟିଲୁ ନୃପମଣି[3] ॥୩୨॥

ବିରାଟ ବୋଲନ୍ତି[4] କାହିଁ ଦେଖିବି ପାଣ୍ଡବେ
ଅତି ପୁଣ୍ୟେ ତୁମ୍ଭଙ୍କୁ ଭେଟିଲି ମୁହିଁ ଏବେ[5] ॥୩୩॥

କି କି ବିଦ୍ୟା ଜାଣ ତୁମ୍ଭେ କସ[6] ଜାତି ସେବା
ନକୁଳ ବୋଲନ୍ତି ବାଜୀପାଳ ସେ ଜାଣିମା[7] ॥୩୪॥

ବିରାଟ ବୋଲନ୍ତି କେମନ୍ତ ହେଁ[8] ବାଜୀପାଳ
କୋଟ୍ରେ ବୋଲେ ରାଜା ସେ ସାକ୍ଷାତ[9] ବାଜିଆନ ॥୩୫

ନକୁଳ ବୋଲଇ[10] ଅଶ୍ୱ ବିଦ୍ୟା ମୁଂ ଜାଣଇ
ଅସାଧ ସାଧ କରଇ ରୋଗ ବୃନ୍ଦ ନାଶଇ[11] ॥୩୬॥

ବିରାଟ ବୋଲନ୍ତି ଭଲ ଭଲ ହେ ସୁନ୍ଦର
ଯାହା ସେ କହିଲ ମୋତେ ଅତି ଅଗୋଚର ॥୩୭॥

ପୂର୍ବେ ଜାଉ ଶବର ବହୁତ ଦ୍ରବ୍ୟ ନେଇ
ମହା ବଳବନ୍ତ ଅଶ୍ୱେ ଅଛି ମୋତେ ଦେଇ[12] ॥୩୮॥

---

୧ । କ. ପରଭିନ କିଛୁ ନାହିଁ ।
ଖ. ପରଭିନ କିଛୁ ନାହିଁ
୨ । କ. ତୋ ରାଜ୍ୟକୁ ପାଣ୍ଡବେ ଅଇଲାର ଯେ
ଖ. ତୋ ରାଜ୍ୟକୁ ପାଣ୍ଡବେ ଅଇଲେ ମୁହିଁ
୩ । ଘ. ଭେଟିଲି ନୃପମଣି
୪ । କ ଖ. ବୋଇଲି
ଗ. ବୋଲଇ
୫ । ଗ. ମୁହିଁ କେବେ
୬ । ଘ. କସ ବିଦ୍ୟା ଯାଣ ତୁମ୍ଭେ କି କି
୭ । କ. ଯାଣିଯା
୮ । ଗ. ହେ କେମନ୍ତ
ଘ. ସେ କେମନ୍ତ
୯ । ଘ. କୋଟ୍ରେ କହେ ରଜା ହେ ସାଜନ୍ତ ।
୧୦ । ଗ ଘ. ନକୁଳ ବୋଇଲେ ।
୧୧ । ଗ. ରୋଗ ହିଁ ଚଳୁଂଇ
୧୨ । ଗ. ମୋତେ ଅଛି ଦେଇ
ଘ. ମାହା ବଳବନ୍ତ ଅଶ୍ୱ ମୋତେ ଅଛି ଦେଇ ।

ଠାବେ ପାଣି ଘାସ ଖାଇ[1] ଶାଳରେ ସେ ଅଛୁ
କେତେବେଳେ ଅଶ୍ୱ ସାଧ ନୋହିଲାକ କଛୁ ॥୩୯॥

ମୁଖେ କାମୋଡ଼ଇ ସେ ମାରଇ ଗୋଡ଼ା ଲତେ[2]
ସାହାସ କରି ସାହାଣି ମଣ୍ଡଳନ୍ତ କେତେ[3] ॥୪୦॥

ଭଏ କେହି ଯାଇ ନ ପାରନ୍ତି ତାର ପାଶ
ଦୂରେ ଥାଇ ପକାଇ ଦଅନ୍ତି ବିରିଘାସ[4] ॥୪୧॥

ସେ ଅଶ୍ୱକୁ ସାଧ ଯେବେ କରିବୁ ସୁନ୍ଦର
ମୁହିଁ ବଶ ହୋଇଥିବି[5] ତୁମ୍ଭର ପଯ୍ୟର[6] ॥୪୨॥

ନକୁଳ ବୋଇଲେ ମୋତେ ଦେଖାଅ ସେ[7] ବାଜୀ
ପାରିଲେ ସିନା ତାହାକୁ କରିବି ମୁଁ ରାଜି ॥୪୩॥

ଯାତକେଶ୍ୱର[9] ମନ୍ତ୍ରୀକି ରାଜା[10] ଆଜ୍ଞା ଦେଲେ
ନକୁଳକୁ ନେଇ ମହାଅଶ୍ୱ[11] ଦେଖାଇଲେ ॥୪୪॥

ଅଶ୍ୱକୁ ଦେଖି ନକୁଳ ଦେଲେ ଚୂଟକାର
ଅତି ଡରେ ଅଶ୍ୱ ହସି ଉଠିଲା ସତ୍ୱର ॥୪୫॥

ଅଶ୍ୱ ପାଶରେ ପ୍ରବେଶ ହୋଇଲେ ନକୁଳ
ମସ୍ତକରେ ହସ୍ତଠୂକ ଦେଲେ କଲୀଆର[12] ॥୪୬॥

---

୧ । ଗ. ଠାବେ ଘାସ ପାଣି ଖାଇ
୨ । ଖ. ନାତ
ଘ. କାମୋଡ଼ଇ ସେ ମାରଇ ଗୋଡ଼ା ନାତେ ।
୩ । ଖ. ମଲେଣି ବହୁତ
୪ । ଖ ଗ. ଢିପ
ଘ. ଢିଙ୍ଗୀ
୫ । କ. ବଶ ହେଉଥିବ
ଖ. ମୁହିଁ ଖଟୀଥିବ ସିନା
ଘ. ବଶ୍ୟ ହୋଇଥିବ
୬ । ଗ ଘ. ତୁମ୍ଭ ବଚନର
୭ । ଖ. ଦେଖାଇବାକ
୮ । ଖ. ଦେବି ମୁହିଁ ସାଜ
୯ । କ. ଜାତେକଶ୍ୱର
ଗ. ଯାତେକସ୍ୱର
୧୦ । ଖ. 'ରାଜା' ପାଠ ନାହିଁ ।
ଘ. ବ୍ରହ୍ମ
୧୧ । ଘ. ମାହାଅସ୍ୱ
୧୨ । ଖ. କରଠୁକଣ ଦେଲେ କଉଆଳ
ଗ: କରଠୁକ ଦେଲେ କରିଆଳ
ଘ. କର ଠୁକଲେ କାଲଆର ।

ଆଗପଛ ଶିକୁଳା[1] ଫିଟାଇ ମେଲ୍ଲ କଲେ
ଆସ ବୋଲି ନକୁଳ ଆଗରେ ଛାଡ଼ି ଗଲେ[2] ॥୪୭॥

ପଛେ ପଛେ ମହାଅଶ୍ବ ଗଲେକ ଗୋଡ଼ାଇ[3]
ଆସ୍ଥାନ ତଳରେ ପରବେଶ ହେଲେ ଯାଇ[4] ॥୪୮॥

ଦେଖିକରି ଆଶ୍ଚର୍ଯ୍ୟ[5] ହୋଇଲେ ସର୍ବଜନ[6]
ଅନେକ ପ୍ରଶଂସା କଲେ ବୈରାଟ ରାଜନ[7] ॥୪୯॥

ଚଢ଼ିକରି ଅଶ୍ବ ଭୂଜେ[8] ଚଳାଅ ସୁନ୍ଦର
ଏହାର ଚାଳକ ବଡ଼ ଶରଧା ମୋହର[9] ॥୫୦॥

ଶୁଣି ନକୁଳ କ୍ଷଣରେ ବାମକର ଦେଲେ
ଅକସ୍ପେ[10] ଡେଇଁଣ ଅଶ୍ବ ଉପରେ ବସିଲେ[11] ॥୫୧॥

ପୂର୍ବ ଢଗକୁ ଦେଖାଇ ଦେଲେ ପୁଣ[12] ଗୁଡ଼
ନମିଷକେ ପାଞ୍ଚକୁଣ ଗଲେ ସେହୁ ଉଡ଼ି[13] ॥୫୨॥

ନଶ୍ୱାସକେ ସଞ୍ଚଳନେ ପ୍ରବେଶ ହୋଇଲା
ସୁରଖୁର ପୃଥ୍ବୀର ଉପରେ[14] ନ ଲାଗିଲା ॥୫୩॥

---

୧ । ଢ. ଶୀକୁଳା
୨ । ଖ. ଆଗରେ ଚାଳିଲେ
ଗ. ଆସ ଆସ ବୋଲିଣ ନକୁଳ ଆଗେ ଗଲେ ।
୩ । କ. ଗଲେକ ଗୋଡ଼ାଇ
ଖ. ପଛେ ଅଶ୍ବ ଡାର ଅଛୁ ଗୋଡାଇଣ
୪ । ଖ. ଆସ୍ଥାନ ତଳରେ ପରବେଶ ଭଇଲେଣ ।
୫ । କ. ଆଶ୍ଚର୍ଯ୍ୟ
ଖ. ଆଶ୍ଚାର୍ଯ୍ୟ
ଘ: ଅଚର୍ଯ୍ୟ
୬ । ଘ. ସର୍ବଜନେ
୭ । ଘ. ରାଜନେ
୮ । ଘ. ଅଶ୍ବକୁ
୯ । କ ଖ. ସରଧା ମୋହୋର
୧୦ । କ ଗ ଘ. ଅଲପେ
୧୧ । ଖ. ଉଠିଲେ
୧୨ । ଖ. ଦେଖାଇଣ ଦେଲେ
ଘ: ପୁଣ ଦେଲେ
୧୩ । ଖ. ଅଚ୍ଛଗଲା ପାଞ୍ଚପୁଣ ଉଡ଼ି
ଗ. ଅଦ୍ଦଗଲା ଉଡ଼ି
ଘ. ନମଷକେ ପାଞ୍ଚପୁଣ ଅଦ୍ଦଗଲା ଉଡ଼ି ।
୧୪ । ଖ. ପୃଥ୍ବିରେ ଡାଵ ।

ପୁଣ ପଶ୍ଚିମକୁ[1] ଧାଇଁ ଦେଲେ ଛଡ଼ ଜଣ[2]
ନିମିଷକେ[3] ମିଳିଲେ ସେ ଯଗଜ୍ଞ[4] ଛନେଣ ॥୫୩॥
ନୃପତି ସଙ୍ଗତେ ସର୍ବେ ଜଗ୍ଧ ହୋଇଥିଲେ
ଏମନ୍ତ ଦେଖିଣ ଅତି ଆଶ୍ଚର୍ଯ୍ୟ[5] ହୋଇଲେ ॥୫୪॥
ନକୁଳକୁ ପ୍ରଶଂସା କରନ୍ତି ସର୍ବଜନ
ଯେହ୍ନା ଦେଖା ଶୁଣା ନାହିଁ ଏ ତିନି ଭୁବନ[6] ॥୫୫॥
ବିରାଟ ବୋଲନ୍ତି ଏବେ[7] ଉତ୍ତର ଦେ ବୀର
ଅତ୍ୟନ୍ତ ଦୁର୍ଲ୍ଲଭ କର୍ମ ଦେଖିଲି ତୁମ୍ଭର ॥୫୬॥
ନକୁଳ ବୋଲନ୍ତି ଅଶ୍ୱଂ[8] ଉତ୍ତରତ ସେବେ
ଅଶ୍ୱ ପ୍ରାଣ ଘ୍ରାଣଣ[9] ପଡିବ ଏହୁ [illegible]ାବେ ॥୫୭॥
ଏତେ କହି[10] ଅଶ୍ୱପଚ୍ଛୁ ପଡ଼ିଲେକ ଡେଇଁ
ଅଶ୍ୱ ପ୍ରାଣ ଘ୍ରାଣି ବେଗେ ଭୂମିରେ ଲୋଟଇ[11] ॥୫୮॥
ଯୁଧିଷ୍ଠି ହସନେ ସେ ମୂକଛ ହୋଇଗଲ[12]
ପୁଣି ଦେବଲୋକେ ଯାଇ ଆନନ୍ଦେ ବସିଲ ॥୫୯॥
ଜାମଦେବ ଷଣ୍ଡପାଳ[13] ଆଦିତ୍ୟ ରଥରେ
ଉଚ୍ଚୈଶ୍ରବା[14] ଯୋଗାଇଲ ବାସବ ଆଜ୍ଞାରେ ॥୬୦॥

---

୧ । ଗ. ପୁଣ ପଛିମକୁ
୨ । ଖ. ସଡ଼ସୁଣ
ଘ. କଲା ଛଡ଼ସୁଣ
୩ । ଘ. ନିମସକେ
୪ । ଙ. ଆହ୍ୱାନ
୫ । ଗ. ଅତ ଆସୀର୍ଯ
ଘ. ଅତ ଆଶ୍ଚିର୍ଯ
୬ । ଙ. ନୃପତ ସଙ୍ଗତେ—ଏ ତିନ ଭୁବନ ପାଠ ନାହିଁ ।
ଘ. ଏ ମଣ୍ଡ ଭୁବନ
୭ । ଭ ଗ. ଅଶ୍ୱଂ
ଘ. ଅସ୍ୱଂ
୮ । ଙ. ଅସ୍ୱ
ଗ. ନକୁଳ ବୋଇଲେ ଅଶ୍ୱଂ
ଘ. ନକୁଳ ବୋଇଲେ ଅସ୍ୱଂ
୯ । ଘ. ଛଡ଼ୀ
୧୦ । କ. ହେତେକ କହି
୧୧ । ଘ୍ରାଣଣ ସେ ଭୂମିରେ ପଡଇ
୧୨ । ଗ. ଯୁଧିଷ୍ଠିଙ୍କ—ହୋଇଲ
ଘ. ଯୁଧେଷ୍ଠିଙ୍କ—ମୂକଛ ହୋଇଲ
୧୩ । ଖ. ରକ୍ଷପାଳ
ଗ. କ୍ଷେତ୍ରପାଳ
୧୪ । କ. ଉଚେଶ୍ରବା
ଖ ଗ. ଉଚସ୍ରବା
ଘ. ଉଚହବା

ଜାଣିକର ଝନମଣି ତାକୁ ଶାପ[1] ଦେଲେ
ମୃତ୍ୟୁ ମଣ୍ଡଳେ[2] ତୁ ଅଶ୍ୱ ହୋଇବୁ ବୋଇଲେ ॥୬୧॥

ବସିଷ୍ଠଙ୍କୁ ଅସାଧ ହୋଇଣ ଭୂଷ୍ଠି[3] ଥିବୁ
ସୁଧିଷ୍ଠି[4] ପ୍ରସନେ ନିଜ ଶରୀର[5] ପାଇବୁ ॥୬୨॥

ସେହୁବହୁ ସପ୍ତ ଅଶ୍ୱ ଆଦିତ୍ୟ ରଥରେ
ଉଚ୍ଚୈଃଶ୍ରବା[6] ରହିଲା ସେ ଇନ୍ଦ୍ରଙ୍କ ପାଶରେ[7] ॥୬୩॥

କାମଦେବ ଷଷଚାଳ ମୋକ୍ଷ ହୋଇଗଲା[8]
ସେ କଥା କାହାକୁ ଚକ୍ଷୁ ଗୋଚର ନୋହିଲା[9] ॥୬୪॥

ବିରାଟ ଦେଖିଣ ତାକୁ ହୋଇଲେକ ତୋଷ[10]
ଶାଢ଼ୀ ସମର୍ପିଲେ[11] ନେଇ କୌନ୍ତଙ୍କର ପାଶ[12] ॥୬୫॥

ପୀତ ପତନୀ ଗୋଟିଏ ସୁଧିଷ୍ଠି[13] ଧଇଲେ
ଗନ୍ଧିକାର ମସ୍ତକରେ ନେଇଣ ବାନ୍ଧିଲେ[14] ॥୬୬॥

ବିରାଟ ବୋଲନ୍ତି ଶୁଣ ମୋହର ଉତ୍ତର
ସବୁ ଅଶ୍ୱମାନଙ୍କେ ଚଷ୍ଟାପଣ ତୋର[15] ॥୬୭॥

---

୧ । କ-ଗ. ଯାନମଣି ତାକୁ ସାପ
ଘ. ଶାପଂ
୨ । କ ଘ. ମୃତ୍ୟୁମଣ୍ଡଳେ
ଖ. ମୃତ୍ୟୁମଣ୍ଡଳେ
୩ । ଖ. ଅହାଧ ରୁ ହୋଇଣ ନେ
୪ । ଘ. ଯୁଧିଷ୍ଠି
୫ । ଚ. ସ୍ୱଶର
ଖ ଗ. ହଶର
୬ । କ. ଉଚ୍ଚୈସବା
ଙ ଗ. ଉଚସବା
ଘ. ଉଚ୍ଚସବା
୭ । ଖ. ଶକ୍ରରେ
୮ । ଖ. ମୁକତ ହୋଇଲା
୯ । ଙ. ବିରାଟ ଦେଖିଣ ତାହା ଆଶ୍ଚର୍ଯ୍ୟ
ହୋଇଲା ।
୧୦ । ଘ ହୋଇଲେକ ତୋଷ
୧୧ । ଘ. ସମର୍ପିଲେ
୧୨ । ଙ. ପୋଥିରେ ୬୫ ପଦର ପାଠ ନାହିଁ
୧୩ । ଘ. ଯୁଧିଷ୍ଠି
୧୪ । ଗ. ପିତପତନୀ ଗୋଟିଏ ଭଣ୍ଡାରୁ
ଆଣିଲେ ।
ଧର୍ମପୁତ୍ର ଗନ୍ଧିକାର ମସ୍ତକେ ବାନ୍ଧିଲେ
୧୫ । ଖ ଘ. ଅଶ୍ୱପାଳରେ
ଗ. ଅଶ୍ୱମାନରେ
୧୬ । ଘ. ପଞ୍ଚାପଣ ତୋର

ପାଂଚ ଅଶ୍ୱ ସମର୍ପିଲ ଭୂମ୍ବର ପାଶରେ[1]
ସ୍ୱଇଚ୍ଛାଏ ଭୁଞ୍ଜିବି ମୋ ବେଷ ମନ୍ଦରେ[2] ॥୬୮॥
ଶାନ୍ତି ପାଇ ନକୁଳ ତହିଁରୁ[3] ଚଳିଗଲେ
ପାଂଚ ଅଶ୍ୱଶାଳେ ଯାଇ ପ୍ରବେଶ ହୋଇଲେ ॥୬୯॥
ସକଳ ସାହାଣୀମାନେ କଲେ ଦରଶନ[4]
ବେଷଘରେ[5] ଗ୍ରନ୍ଥିକାର କରନ୍ତି ଭୋଜନ ॥୭୦॥
ନିଶ୍ଚିନ୍ତ ହୋଇ ନକୁଳ ତହିଁରେ ରହିଲେ
ପାଂଚ ଅଶ୍ୱକୁ ନକୁଳ ଅତି ଯତ୍ନ କଲେ ॥୭୧॥
ଶ୍ରୀରାଧା ମାଧବ ପାଦ ଚିନ୍ତି ନିରନ୍ତର
ଭାଷା ପ୍ରବନ୍ଧରେ କହେ ଦୀନ ବିଶ୍ୱମ୍ଭର[6] ॥୭୨॥

## ସପ୍ତମ ଛାନ୍ଦ

ରାଗ—ରସ କୋଇଲି ବୃତ୍ତେ[1]

ସହଦେବ କାନ୍ତି ନବୀନ ଘନ । ବିମ୍ବ ଅଧରେ[2] କମଳ ଲୋଚନ
ବେଣୀକରେ ଶୋଭେ ହେମ କଙ୍କଣ । ବାହେ ବାହୁଟି କୁଣ୍ଡଳ କର୍ଣ୍ଣେଣ ସେ[3]
କପୋଳରେ ଗୋରୋଚନା ଯେ
ତଥିପରେ ସେ[4] ଗୁଞ୍ଜାର ମୁକ୍ତାମାଳ । କରିଅଛନ୍ତି ରଚନା ଯେ[5] ॥୧॥

---

୧ । ଖ ଗ. ଗୋଡରେ
ଘ. ସମର୍ପିଲା ଭୁମ୍ବର ଚୋଡରେ
୨ । ଖ. ମଣ୍ଡପ ଘରେ
ଘ. ମୋହର ମନ୍ଦିରେ
୩ । ଖ. ତହିଁରେ
୪ । ଘ. କଲେକ ଦର୍ଶନ
୫ । ଖ. ବେଷଶାଳେ
୬ । ଖ ଗ ଘ. ଦୀନ ବିଶ୍ୱମ୍ଭର
ଙ. ପ୍ରବନ୍ଧରେ କହେ ଦୀନ ବିଶ୍ୱମ୍ଭର

---

୧ । ଘ. ରାଗ ରସକୋଇଲି
୨ । ଘ. ବିମ୍ବା ଅଧରେ
୩ । କ. କର୍ଣ୍ଣରେ କୁଣ୍ଡଳ
୪ । କ. ତହିଁପରେ ସେ
ଗ. ତାହା ଉପରେ
୫ । କ. କରିଅଛି ରଚନାରେ

ହେମ ଖୋଲଣ[୧] ଲାଇଲେ ଶିରରେ । ଅଷ୍ଟରତ୍ନ ବସିଅଛି ଚହ୍ନିରେ
ମୟୁର[୨] ଚନ୍ଦ୍ରକା ଶିରରେ ଶୋହେ[୩] । ହେମ ଗିରିରେ ଶକ୍ରଧନୁ ପ୍ରାଏ ସେ[୪]
ଏମନ୍ତ ସୁନ୍ଦର ବଣି ସେ[୫]
ହୃଦରେ ହୀର ପଦକ ଝଟ ଝଟ ମାଣିକ୍ୟ ମର୍କତ ମଣି ସେ[୬] ॥୨॥

ଶ୍ୱେତ[୭] କାଲିଂତ ଗୁନ୍ଥିଲେ ପ୍ରାନ୍ତରେ । ପଇତା ଛନ୍ଦରେ ବେଳ ପାସରେ
କର୍ପୂର ଚନ୍ଦନ ଅଙ୍ଗରେ ବୋଳ । ନାସା ବାମରେ ପିନ୍ଧ ଫୁଲ[୮] ଲୁଳ ସେ
ପୀତାମ୍ବର ପାଟ ଜଙ୍ଘି ସେ
କନକ ଜରି ବୁଟା ଚହ୍ନି ପଡ଼ିଛି[୯] ମୁକୁତା ଝାଲର ଭଙ୍ଗୀ[୧୦] ସେ ॥୩॥

ସବୁ ରଙ୍ଗ ପାଗ ଜରି ମୁଖରେ[୧୧] । ଝିବଳୀ ସରି ସେ ବେଳ[୧୨] ଜାନୁରେ
କଟୀ ରୁଦ୍ରଛନ୍ଦ[୧୩] ଆଗ ପଛକୁ । ଲାଞ୍ଜ ବାହାର ଲେଟଇ ଚଳକୁ ସେ
ସୁବର୍ଣ୍ଣ ଘଣ୍ଟି ସାଗୃହ ସେ
ପାଟ ଡୋରରେ ଗୁନ୍ଥି ବେଳମାଳ କଣ କଟୀତଟେ[୧୪] ବାନ୍ଧେ ଭଣ୍ଡ ସେ ॥୪॥

---

୧ । ପ. ହେମ ଖଟଲଣ
୨ । ଖ. ମୟୂର
୩ । ଗ. ଶିଖରେ ଶୋହେ
ପ. ଷିଖରେ ସୋହେ
୪ । କ. ହେମ ଗିରିରେ ସକ୍ରଧନୁ ପ୍ରାଏ ସେ
ଖ. ସକ୍ରଧନୁ ରହେ ହେ
ଗ. ଶକ୍ରଧନୁ ଦୋହେ କି
ଘ. ରହେ ସେ
୫ । ଙ. ଦସେ ସେ
୬ । ଖ. ମିସେ ହେ
ଗ. ଦସେ କେ
ପ. ହୃଦରେ ପଦକ ମାଣିକ୍ୟ ଝଟକ
ମାଣିକ୍ୟ ମ୍ରକତ ମିଣି ସେ
୭ । କ. ସେତ
୮ । ଗ ପ. ପିନ୍ଧ ଫଳ
୯ । କ. କନେକ ଜଣ ବୋଟା ତଣ୍ଡି ପଡ଼
ଗ. ଗୋଟା ଚଣ୍ଡି ପଡ଼ନ୍ତି
ପ. ଜଣ ବୋଟା ତଣ୍ଡି ପର୍ତ୍ତନ୍ତି
୧୦ । ଖ ପ. ମୁକ୍ତା ଝଲର ଭଙ୍ଗି କେ
୧୧ । ପ. ମୁଣରେ
୧୨ । କ ଖ. ସର ପୋହେ ବେଳ
ଘ. ସପର ସେ ବେଳ
୧୩ । ପ. ରୁଦ୍ରଛନ୍ଦ
୧୪ । ଖ ଗ. ପାଟ ଦନ୍ତଡ଼ରେ ଗୁନ୍ଥି ବେଳମାଳ
କଟୀତଟେ ବାନ୍ଧେ ଛଡୀ କେ
ପ. ପାଟ ଦନ୍ତଡ଼ରେ ଗୁନ୍ଥି ବେଳମାଳ
କଟୀତଟେ ବାନ୍ଧେ ଖଣ୍ଡ କେ

ଚରଣେ ଶୋଭେ ବାଜେଣି ନୂପୁର । ପାଦ ପ୍ରଚଳନେ[1] ବାଜେ ମଧୁର
ସିଂହା ବେଣୁ[2] କଟୀ ତଟରେ ଖୋସି । ବଡ଼ଆ ପାନେ ମନ୍ଦ ମନ୍ଦ ହସି ସେ
ଅପୂର୍ବ ନାଟୁଆ ଛବି ଯେ
ଗଳାରେ ପୁଣି ଲମ୍ବାଇଲେ ଧଣ୍ଡାପେ[3] ମାଳତୀ ଜାତି[4] ମାଧବୀ ଯେ ॥୫॥

କରେ ଧରି କେନ୍ଦ୍ର ସର ଲଗୁଡ଼ । କଣ୍ଠେ[5] ଗାଇଦୁହଂା ପାଟ ଦଉଡ଼ି
ଝୁଲନ୍ତେ ସୁସ୍ୱର[6] ନୂପୁର ବାଣୀ । ଘଣ୍ଟି ବାଗୁଡ଼ି ନାଦ କଣି କଣି ସେ
ମତ୍ସ ଦେଶରେ ମିଳିଲେ ସେ ଯେ
ସେ ପୁର ନରନାଥ ଦେଖି ତାହାଙ୍କୁ ବହୁତ ପ୍ରଶଂସା କଲେ ଯେ[7] ॥୬॥

ଆସ୍ଥାନ ତଳେ[8] ହୋଇଲେ ପ୍ରବେଶ । ଦୃଷ୍ଟେ ତାଙ୍କୁ[9] ଅନାଇଲେ ନରେଶ
ଦେଖ ଦେଖ କୁନ୍ତେ[10] ନର୍ତ୍ତକ[11] ଆସେ । ବିଦ୍ୟାଧର ପ୍ରାଏ ସୁନ୍ଦର ବେଶେ ସେ
କେଉଁଣେ କରୁଛୁ[12] ଗମନ ଯେ
ପଚାରିଲେ ସେବକଷଣି ଜାଣିମା ସେ[13] ଏହାର ପ୍ରସଙ୍ଗ ମାନ ଯେ ॥୭॥

ସହଦେବ ସ୍ମରି ଧର୍ମ ନୃପତି । ପ୍ରଣମ୍ୟ କରି ଉଠିଲେ[14] ତଡ଼ତି
ସୁଧିଷ୍ଠି[15] ବୋଲନ୍ତି ଉଠ ହେ ବୀର । ଠାକୁରଙ୍କୁ କହ କଥା ଚୋହର ସେ
ସହଦେବ ଉଠେ ଶୁଣି ଯେ
କହନ୍ତି ଏକମନେ ଏବେ ଶୁଣିମା ମତ୍ସଦେଶ ନୃପମଣି ହେ ॥୮॥

---

୧ । କ. ପ୍ରଚଂଳ
ଘ. ପ୍ରଚ୍ଳନେ
୨ । କ. ସିଂହାବେଣୁ
ଗ ଘ: ସିଂହା ବେଣୁ
୩ । ଖା ମାଳେକ
ଘ. ପୁଣ ଲମ୍ବାଇଲେ ଧଣ୍ଡାଏ
୪ । ଘ. ମାଳ ଯାଠ ସେ
୫ । ଗ. କନ
୬ । କ ଗ. ସୁସର
୭ । ଘ. ଉପତ ହେଲେ ଜେ
୮ । କ ଖ. ଆସ୍ଥାନ ତଳରେ
୯ । ଗ. ଦେଖି
୧୦ । କ ଗ ଘ. କୋନ୍ତେ
୧୧ । କ ନର୍ତ୍ତକ
୧୨ । କ ଗ. କରୁଛୁ
୧୩ । ଗ. ଏହକଷଣି ସେ ଜାଣିମା
ଘ. ଏହକଷଣି ଜାଣିମା
୧୪ । ଖ. ଯୋଡ଼ିଲେ
ଗ ଘ. ସୁଡିଲେ
୧୫ । କ. ସୁଭିଷ୍ଟି
ଘ. ସୁଧିଷ୍ଟି

ହସ୍ତିନା ଆଦି ପଞ୍ଚ କଟକର । ଚକ୍ରିରେ ନୃପତି[1] ଧର୍ମ କୁମର
କଉରବଙ୍କୁ[2] ପଶାରେ ହାରିଲେ । ରାଜ୍ୟ ଛାଡିଣ[3] ବନସ୍ତେ ପଶିଲେ ସେ
ପଞ୍ଚ ପାଣ୍ଡବ ଦ୍ରୌପଦୀ ହେ[4]
ସାରି ବନବାସ ତୁମ୍ଭର ରାଜ୍ୟକୁ[5] ଅଇଲେ ଯେବେ ନୃପତି ହେ[6] ॥୯॥
ସେ ଶବଦ ଶୁଣି ଅଇଲୁ ଯେବେ । ପାଣ୍ଡବ ମନ୍ତ୍ରୀ ସାନ[7] ସହଦେବେ
ଶ୍ରୀକୃଷ୍ଣ ତାଙ୍କୁ ଅନୁଗ୍ରହ[8] କଲେ । ବହୁତ ଗୋଧନ ସନ୍ତୋଷେ ଦେଲେ ସେ
ମୁହିଁ ତାଙ୍କର ଗୋପାଳ ହେ
ଯେ ସହଦେବ ପ୍ରତକ୍ଷେ ଅଟେ ମୁହିଁ ନାମ ମୋର ତନ୍ତ୍ରିପାଳ ହେ[10] ॥୧୦॥
ମୋଠାରେ ତାଙ୍କର ନାହିଁ[11] ଅନ୍ତର । ଗାବ ରକ୍ଷକ ସେବା[12] ସେ ମୋହର
ଗୋରୁଙ୍କ ସେବା କରଇ ମୁଂ ଭଲ । ଆନନ୍ଦେ ରଖିଥାଇ ଗୋରୁଦଳ ସେ
ବାଂଝ ମଉଛୁ କର୍କଟୀ ହେ[13]
ଅସାଧ ସାଧ[14] ଦୁଅନ୍ତି[15] ମୋର ବୋଲେ ନ ପାରନ୍ତି କେହି ହେଟି ହୋ॥୧୧॥
ବିରାଟ ବୋଲନ୍ତି ଯାହା କହିଲ । ଅସାଧ ସେବେ କରିପାର ଭଲ
ପ୍ରଥୁନା[16] ନାମରେ[17] ମୋହର ଗାଈ । ନବଲକ୍ଷ ବଛା ମର୍ଦ୍ଦିଛେ ମାଈ ସେ
ଦଶ ସହସ୍ର ବୃଷଭ ଯେ
ତାହାର କଥା ଦେବଙ୍କୁ ଅଗୋଚର ମାନବେ ଅତି ଦୁର୍ଲ୍ଲଭ ହେ ॥୧୨॥

---

୧ । ଙ. ନୃପତି
ଘ. ଭୂପତି
୨ । ଗ ଘ. କଉରେବଙ୍କୁ
୩ । କ ଖ. ଏ ରାଜ୍ୟ ଛେଡି
୪ । ଙ. ରାଣି ଜୋଡ଼ାଏ ଅଇଲ ଯେ
୫ । କ. ତୋହୋର ରଜାଙ୍କୁ
୬ । ଙ. ବିରାଟ ରାଜାରେ ଯୁଧିଷ୍ଠି
ଠାକୁର ଅଛନ୍ତି ବୋଲି ଶୁଣିଲି ଯେ
୭ । କ ଙ. ପାଣ୍ଡବ ସାନମନ୍ତ୍ରି
୮ । କ. ଅନୁଗ୍ରଣ
ଗ. ଅନ ଗ୍ରହ
୯ । ଘ. ଯେ ସେ ସହଦେବ
୧୦ । ଖ. ମୁ ଅଟଇ—ତନ୍ତୁପାଳ ହେ
୧୧ । ଗ. ନାହିଁ ତାଙ୍କର
୧୨ । କ. ପାଦରକ୍ଷକ
୧୩ । କ ଖ. ବାଂଝ ମଉଛୁ କରଟୀ ହେ
ଗ. ମଉଛୁ କର୍କଟୀ ଯେ
୧୪ । ଙ. ସାଧକୁ
୧୫ । ଘ. ଦୁଅଇ
୧୬ । କ. ପ୍ରୋଥନା
୧୭ । ଘ. ନାମେଣ

ତାର ଗନ୍ଧବନ୍ତୁ ଛୁଟିଲା ଶିରୀ । ଅସାଧ୍ୟ ରତ୍ନଅଛି ବଂଶଗିର
ତାର କ୍ଷୀରବନ୍ତୁ ଅତି ଆକୁଳ । ସଙ୍ଗେ ଦେଖିଲି ସର୍ବସନ୍ୟବଳ ସେ
ଆଣିମାକୁ[1] ତାକୁ ଗଲି ସେ
ତନ ଷଣ୍ଡଣୀ ସନ୍ୟ[2] ମୋର ମାଇଲ୍ ପଳାଇ ତତ୍ତ୍ୱଂ ଅଇଲି ହେ ॥୧୩॥

ତାଙ୍କୁ ସାଧ୍ୟ ଯେବେ ପାଶବ କର । ସ୍ୱେ ରାଜ୍ୟେ ଠାକୁର ପଣ[3] ଭୂମ୍ବର
ମୁଣ୍ଡଂ ସେବଥିବ ଭୂମ୍ବ ଚରଣ[4] । ସନ୍ୟ ସାଜକରି ଯିବା ବହନ[5] ସେ
ଆଣିମା ପୃଥୁନା[6] ଗାଇ ହେ
ବଶିଷ୍ଠ ଠାରୁ ଏମନ୍ତ ଶୁଣିକରି[7] କହେ ମନ୍ତ୍ରୀ ସହଦେବ ହେ ॥୧୪॥

କାମ୍ପା ବନକୁ ଯିବା ହେଁ[8] ନରେଶ । ଏହୁଠାରେ ଥିବା ହୋଇ ସନ୍ତୋଷ[9]
ଚଳ ଦେଖଣ ଆସିବେ ପୃଥୁନା[10] । ସ୍ୱେହୁଠାରେ ମୁଁ କରିବ ଭାବନା ସେ
ପ୍ରତ୍ୟକ୍ଷେ ଦେଖ ନୃପତି[11] ହେ
ସହଦେବ ମୁଖୁ ଏମନ୍ତ ଶୁଣିଣ ସର୍ବେ ଆଶ୍ଚର୍ଯ୍ୟ ହୁଅନ୍ତି ହେ[12] ॥୧୫॥

ସହଦେବ ବସି ସଜ୍ଜ ତନେଣ । ଚରଣ ଉପରେ ଲଦ୍ଧ ଚରଣ[13]
ମୋହନ ମୁରଲୀ କରରେ ଧରି । ଅଧରେ ଲଗାଇ ଆଳାପ କରି ସେ[14]
ମଧୁରେ ଧୀରେ ଚୁମ୍ବିଲେ ସେ[15]
ପୃଥୁନା ଆସ ପୃଥୁନା[16] ଆସ ବୋଲି ଉଚ୍ଚେ ମୁରଲୀ ଡାକିଲେ ସେ ॥୧୬॥

---

୧ । କ. ଆଣିଯାକୁ
୨ । ଖ ଗ: ବଲ
୩ । ଘ. ଏ ଠାକୁର ପଣ
୪ । ଗ. ଭୂମ୍ବ ପାଶେଣ
ଘ. ଭୂମ୍ବ ପାଷେଣ
୫ । ଙ ଘ. ବେଗେଣ
୬ । କ. ପ୍ରୋଥନା
୭ । ଶୁଣିଣ
୮ । ଘ. କବ ହେ
୯ । ଗ. ଥିବ ହୋଇ ହରଷ
ଘ. ଥିବା ହୋଇ ହରଷ
୧୦ । କ. ପ୍ରୋଥନା
୧୧ । ଖ. ନୃପତି
ଘ. ନୃପତି
୧୨ । ଘ. ସହଦେବଠାରୁ ଏମନ୍ତ ଶୁଣିଣ
ଆଶ୍ଚର୍ଯ୍ୟ ସର୍ବେ ହୁଅନ୍ତି ଜେ
୧୩ । କ ଗ. ନନ୍ଦ ଚରଣ
୧୪ । ଘ. ଆଳାପ କରି ସେ
୧୫ । ଘ. ମଧୁର ଧିରେ ଚୁମ୍ବିଲେ ହେ
୧୬ । କ. ପ୍ରୋଥନା ଆସ ପ୍ରୋଥନା

ବାର୍ଦ୍ଧଗିର ଛଳେ ପୃଥୁନା[୧] ଥିଲେ । ମୁରଲୀ ଶୁଣି ଆନନ୍ଦେ ଘୂର୍ଣ୍ଣିଲେ
ଧନ୍ୟରେ ବସନ୍ତ ହୋଇଲୁ ଏବେ । ତୋ ପୁରେ ବଜାଏ କଲେ ପାଣ୍ଡବ ସେ
ବସ୍ତୁମାନଙ୍କୁ ଘଇଲେ[୨] ସେ
ଘୂଲ ସେ ମଦ ଦେଶକୁ ଏବେ ଯିବା[୩] ସହଦେବ ଆଜ୍ଞା ଦେଲେ ସେ ॥୧୭॥

ସକଳେ ଶୁଣି ହୋଇଲେ[୪] ବାହାର । ସାତ କୋଶ ଛଡ଼ା ଅଟଇ ଦୂର
ପୃଥୁ ଟେକଣ ହେମାରବ କର । ଧାମରେ ମହାଧୂନ ଶୁନ୍ୟେପୂର[୫] ସେ
ଧୂଳ ଉଡ଼ଲ[୬] ଗଗନ ସେ
ଗାଦଲଗି ଚକ୍ର ପାଷାଣ ସନ୍ତତେ ହେଉଛନ୍ତି ସବେ ଚୂର୍ଣ୍ଣ[୭] ସେ ॥୧୮॥

ଚଗ୍ଗଟ ବୋଲନ୍ତି କସ ଶବଦ । ଅରଣ୍ୟେ ଶୁଭୁଅଛୁ ମହାନାଦ[୮]
ଘୂର ଜଣାନ୍ତି ଆସଇ ପୃଥୁନା[୯] । ବନ ପବତ ହେଉଛନ୍ତି[୧୦] ଚୂନା ସେ
ଶୁଣି ଚାଟକା ଗଜନ ସେ
ସ୍ୱେଚ୍ଛ ସମସ୍ତେ ମଦଦେଶେ ପୃଥୁନା[୧୧] ମିଳିଲେ ଆସି[୧୨] ବହନ ସେ ॥୧୯॥

ଦେଖି ଲୋକମାନେ ପଳାନ୍ତି ଗୁଡ଼ି[୧୩] । ଘରେ ରହି ଦ୍ୱାର କବାଟ ପାଡ଼ି
ଆସ୍ଥାନ ଛଳେ ମିଳିଲେ ବହନ । ଦେଖି ଦୂରୁ ପଳାଇଲେ ଗଜନ[୧୪] ସେ
ପାଶ ମନ୍ତ୍ରୀ ସବେ ଗଲେ ସେ
ଧର୍ମନନ୍ଦନ କେବଳ ଏକା ହୋଇ ରାଜସଭାରେ ରହିଲେ[୧୫] ସେ ॥୨୦॥

---

୧ । କ. ପ୍ରାଥନା
୨ । ଖ ଘ. ବୋଧିଲେ
୩ । ଖ. ଘୂଲ ଏବେ ମଦ ଦେଶ ଜିବା ଅମ୍ଭେ
ଘ. ଘୂଲ୍ ହେ ମଦ ଦେଶକୁ ଏବେ ଜିବା
୪ । କ. ହେଲେକ
୫ । ଖ. ହୁଚେ ସୂର
ଡ. ସୁନ୍ୟେ ପୂର
ଘ. ମହାନାଦ ସୁନ୍ୟେ ପୂର
୬ । ଖ. ଧୂଳ ଉଠିଲ
୭ । ଡ. ଚୂର
୮ । ଘ. ମାହାନାଦ
୯ । କ. ଜଣାନ୍ତି ଆସନ୍ତି ପ୍ରୋଥନା
୧୦ । ଖ. ହବୁ ହୋଏ
ଘ. ହୋଉଛନ୍ତି
୧୧ । କ. ପ୍ରୋଥନା
୧୨ । ଘ. ଆସି ମିଳିଲେ
୧୩ । ଘ. ପଳାଇ ଗୁଡ଼ି
୧୪ । ଖ. ଜନ୍ତୁନ
୧୫ । ଖ. ମିଳିଲେ

ଛଡ଼ ନଗଣ୍ଠି ଆବେଶେ[1] ବିରାଟ । ଡାକନ୍ତି ପଳାଅ ହେ କୁନ୍ତଭଟ[2]
କମ୍ପା ବସିଅଛ ନିଶ୍ଚିନ୍ତ ହୋଇ । ବଡ଼ାଇ ପ୍ରମାଦ[3] ଅଟଇ ଗାତ୍ର ସେ
ତାକୁ ନପିବା ବିଶ୍ୱାସ ସେ
କାହିଂ ଅପୂର୍ବ ଗୋପାଳେ[4] ଆସି ଏବେ ଅଜନିନେ ଗଲ୍ଲ ନାଶ ସେ[5] ॥୨୧॥

ଦେଖନ୍ତି[6] ବେଢ଼ି ଛନ୍ତି ସବଗାବ । ବିଶ୍ୱ ମୂର୍ତ୍ତିରେ ଗ୍ରାଉଛନ୍ତି[7] ସବ
ସହଦେବ ପଛୁଂ ଅଦୃଶ୍ୟ[8] ହେଲେ । ଦେଖି ସକଳେ ହାହାକାର କଲେ ସେ
ପୃଥୁନାକୁଁ[9] ଦେଖିକରି ସେ
ମୂରଲ୍ଲୀ ଥୋଇ ସହଦେବ ଭୁଶତେ ପ୍ରସନ ତାହାକୁ କରି[10] ସେ ॥୨୨॥

ବୋଲନ୍ତି ମାତ ବିଶ୍ୱରୂପ[11] ଧରି । ବିଜଏ କଲ ମହାଧ୍ୱନି କରି[12]
ତୁମ୍ଭଙ୍କୁ ଦେଖି ରାଜା ପଳାଇଲେ । ଶୁଣି ଏମନ୍ତ ପୃଥୁନା କହିଲେ[13] ସେ
ଶୁଣ ବାବୁ ସହଦେବ ହେ
ବିରାଟ ନଗରେ ତୁମ୍ଭର ଆମ୍ଭର ସମ୍ଭାଷଣ କାହିଁ ହେବ ହେ[14] ॥୨୩॥

---

୧ । ଖ. ତଣ୍ଡିଶ
୨ । ଗ ଘ. ହେ କୋନ୍ତଭଟ
୩ । ଘ. ବଡ଼ାଇ ପ୍ରମାଦ
୪ । ଙ. ଅପୂରୁବ ଗୋପାଳ
ଘ. କାହିଁ ଅପୂର୍ବ ଗୋପାଳ
୫ । ଖ. କଲ୍ଲ ଘସ ହେ
୬ । ଖ. ଦେଖିଏ
୭ । କ ଗ. ବିଶ୍ୱ ମୂର୍ତ୍ତିରେ ଗ୍ରାଉଛନ୍ତି
ଖ. ଦେଖୁଛନ୍ତି
ଘ. ବିଶ୍ୱ ରୂପରେ ଗ୍ରାଉଛନ୍ତି
୮ । କ ଗ ଘ. ଅଦ୍ଭୁତ
୯ । ଙ. ପ୍ରୋଥନାକୁ
୧୦ । ଙ. କଲେ
୧୧ । ଖ: ବିଶ୍ୱମୂର୍ତ୍ତି
ଘ. ବିଶ୍ୱରୂପ
୧୨ । ଘ. ମାହାଧ୍ୱନି କରି
୧୩ । ଙ. ପ୍ରୋଥନା କହିଲେ ସେ
ଘ. ବୋଇଲେ ସେ
୧୪ । ଙ ଗ. ହସ୍ତିନାପୁରେ କେବେ ଭେଟିବେ

ଧନ୍ୟ ଏ ଦେଶ ଧନ୍ୟ ସେ[1] ନୃପତି । ପାଣ୍ଡବେ ରହିଲେ ଯେଣୁ ହୋପତି[2]
ଧନ୍ୟ ମୁଁ[3] ହୋଇଲି ତୁମ୍ଭଙ୍କୁ ଦେଖି । କେତେ ପୁଣ୍ୟ କରିଥିଲା ମୋ ଆଖି[4] ସେ
ଶୁଣି କହେ ସହଦେବ ଯେ
ତୁମ୍ଭ ସଙ୍ଗତେ ବନ ମୁହିଁ ବଞ୍ଚିବି[5] ସୁଫଳ ମୋହର ଜୀବ[6] ହେ ॥୨୪॥

ତାବନ୍ତରେ ସହଦେବ ଉଠିଲେ । ଆହେ ନୃପତି ବୋଲି[7] ଡାକ ଦେଲେ
ପୃଥୁନା[8] ସ୍ତୁତପ୍ପା କଲେ ତୁମ୍ଭଙ୍କୁ । ଜସ କରିବା କହିବ[10] ଆମ୍ଭଙ୍କୁ ସେ
ରାଜନ ଆଜ୍ଞାର୍ଥ ଶୁଣି ସେ[11]
ଧନ୍ୟ ତୁ ଗୋପାଳ ପୃଥୁନାକୁ[12] ଏବେ ଆପୃଚ୍ଛ କଲୁଚ ଆଣି ହେ[13] ॥୨୫॥

ଦୁହନ କରି[14] ମୋତେ ଦିଅ କ୍ଷୀର[15] । ତଙ୍କର ଆଶ[16] ବଢ଼ୁଛ ମୋହର[17]
ସହଦେବ ପୃଥୁନାକୁ[18] ଜଣାଇ[19] କ୍ଷୀର ଦେବା ମାତ୍ର ସନ୍ତୋଷ ହୋଇ[20] ସେ
ପୃଥୁନା[21] କହେ ବଚନ ଯେ
ମୁହିଁ ଚୋର ବଶ[22] ହୋଇଲିଣି ଯେବେ[23] ଆପଣେ କର ଦୋହନ ହେ[24] ॥୨୬

---

୧ । ଗ ଧନ୍ୟ ସେ ଦେଶ ଧନ୍ୟ ସେ
ଘ: ଧନ୍ୟ
୨ । ଖ. ନୃପତି
ଗ. ଯେଣୁ ରହିଲେ ଦ୍ରୋପତି
୩ । ଗ ଘ. ମୁଁ ଧନ୍ୟ
୪ । ଘ. ଏ ଆଖି
୫ । କ ଙ. ମୁଁ ବଞ୍ଚିବ
ଗ ମୁହିଁ ବନ ବଞ୍ଚିବ
୬ । କ ଗ. ମୋହର ଜିବ
ଖ. ସଫଳ ମୋହର ଜିବ
ଘ. ମୋହର ଜିବ
୭ । ଖ. 'ବୋଲି' ପାଠ ନାହିଁ
୮ । ଜ. ପ୍ରୋଥନା
୯ । ଖ ଗ ଘ. ସ୍ତବପ୍ପା
୧୦ । ଘ. କହିବା
୧୧ । ଖ. ହୋଇ ସେ
ଗ, ବିରାଟ ଆଜ୍ଞାର୍ଥ ଶୁଣି ସେ
ଘ. ବିରାଟ ଆଜ୍ଞାର୍ଥ ଶୁଣି ସେ
୧୨ । କ. ପ୍ରୋଥନାକୁ
୧୩ । ଘ. ଆଣି ଆଦେଶ କଲୁ ତୁ ପୁଣ ସେ
୧୪ । ଜ. ଦୋହନ କରି
୧୫ । ଗ. ଦିଅ ମୋତେ କ୍ଷୀର
୧୬ । କ ଗ ଘ. ଆଶା
ଙ. ଆଶ
୧୭ । କ ଗ. ମୋହୋର
୧୮ । ଜ. ପ୍ରୋଥନାକୁ
୧୯ । ଘ. ଜଣାଇ
୨୦ । ଘ. ପ୍ରସନ୍ନ ହୋଇ
୨୧ । କ. ପ୍ରୋଥନା
୨୨ । ଜ. ବଶ୍ୟ
ଘ. ବଶ୍ୟ
୨୩ । କ. ଯେବେ
୨୪ । ଗ ଘ: କର ଦୋହନରେ ।

ତରେକ କ୍ଷୀର ଆକାଶକୁ ଦେବ । ତରେକ କ୍ଷୀର ବସ୍ତ୍ରକୁ ସ୍ତ୍ରବ[1]
ତରେକ ପକାଇବ ଅବନୀର[2] । ତରକୁ କ୍ଷୀର ଦୁହଂ[3] ଲକ୍ଷେଲକ୍ଷେ ସ୍ତର ସେ
ଶୁଣି ସହଦେବ ତୋଷ ସେ
ବସ୍ତ୍ରଙ୍କୁ କହ୍ନ ବେଳକ୍ଷ କୁମ୍ଭ[4] ଅଣାଇଲେ ତାଙ୍କ ପାଶ ସେ ॥୨୨॥

ତିରେକ କ୍ଷୀର ଆକାଶକୁ ଦେଲେ । ସକଳ ଦେବେ ସନ୍ତୋଷେ ପାଇଲେ[5]
ପୃଥ୍ୱୀରେ[6] ତିରେକ କଲେ ଦୋହନ[7] । ସକଳ ଜୀବେ[8] କଲେ କ୍ଷୀରପାନ ସେ
ତିରେ ବସ୍ତ୍ରକୁ ସ୍ତ୍ରଲେ ସେ
ଏକ ତିରକରୁ ଲକ୍ଷେ ସ୍ତର ଦୁଗ୍ଧ[9] ଦୋହନ କରଣ[10] ନେଲେ ସେ ॥୨୮॥

ସୁରଭୀ ସୁତା ଅଟନ୍ତି ନନ୍ଦନୀ[11] । କପିଳା ନାମେ[12] ତାଙ୍କର ନନ୍ଦନୀ
ବଉଳା ନାମରେ ତାଙ୍କ ଦୁହିତ[13] । ପୃଥୁନା ନାମେ[14] ତହୁଂ ହେଲେ ଜାତ ସେ
ବଉଳା ନାମେ ତା ଝିଅ ସେ
ଦ୍ରଉ ସିନ୍ଧୁ ଶୁଣି କ୍ଷୀର ସିନ୍ଧୁ ତଟେ[15] କୋମଳ ତୃଣ ଚରଇ ହେ[16] ॥୨୯॥

---

୧ । କ ଖ ଘ. ବସ୍ତ୍ରକୁ ସ୍ତ୍ରବ
୨ । ଖ. ଅବନୀରେ ଦେବ ଛିର
୩ । ଙ. ତରେକ ଦୁହ ଛିର
୪ । ଗ. ଲକ୍ଷେସ୍ତର କୁମ୍ଭ
୫ । ଘ ଖ ଘ. ହୋଇଲେ
୬ । କ ଗ ଘ. ପୃଥ୍ୱୀରେ
୭ । ଗ ଘ. ତଲେ ଦୁହନ
୮ । ଗ ଗ ଘ. ପାତାଳ ନାଗେ
୯ । କ ଖ ଘ. ଏକ ତରକୁ ଲକ୍ଷେସ୍ତର
ଦୁଗ୍ଧ ସେ ।
୧୦ । ଗ ଘ. ଦୁହନ କରଣେ
୧୧ । କ ଖ. ଅଟନ୍ତି ଘନନୀ
ଘ. ଅଟନ୍ତି ନନ୍ଦନ
୧୨ । ଗ ଗ. କପିଳ ନାମ
୧୩ । ଗ. ବଉଳା ନାମେ ତାଙ୍କର ଦୁହିତ
ଘ. ବଉଳା ନାମେ ତାଙ୍କର ଦୋହିତ
୧୪ । ଙ. ପ୍ରଥମା ନାମେ
୧୫ । ଗ. ତରେ
୧୬ । ଖ. ୨୯ ପଦର ପାଠ ନାହିଁ

ସମୁଦ୍ର ଜଳ ତାକୁ ଆଣୁ ଆଣି[1] । ପ୍ରକ୍ଷାଳନ କଲେ[2] ଅସନ୍ତ ପୁଣି
ତାଙ୍କ ନନ୍ଦନ ରହିଥାନ୍ତି ପୁରେ । ଅନେକ ବହଳା[3] ବେଳ ଉଚ୍ଛୁରେ ସେ
ତନ୍ତୁଂ[4] ଅଇଲେ ସତ୍ୱର ହେ
ଲବଣ ସିନ୍ଧୁ ଜଳ ହେଣୁ ଉଚ୍ଛୁଳ ଲାଗନ୍ତେ ତାଙ୍କର ଚିର ହେ[5] ॥୩୦॥

ଆସି ମିଳଲେ କୁମାର ପାଶରେ । ସ୍ନେହ ବଶେ ଜିହ୍ୱା ଲାହେ ଶରୀରେ[6]
ପୃଥୁନା ସ୍ତନେ ଲଗାଇ[7] ବଦନ । କରନ୍ତେ ମାତା ତନ୍ତ୍ରି[8] କ୍ଷୀରପାନ ସେ
ମାତାଙ୍କୁ ସେ ପଚ୍ଛାରିଲ ସେ[9]
ମୋର ଅଧରକୁ କମ୍ପାଇଁ ଗୋ ମାତ ଲବଣ ଆଜ ଲାଗିଲ ସେ[10] ॥୩୧॥

ଜନନୀ ବୋଲନ୍ତି ଶୁଣ ଦୁହିତ[11] । ଲବଣ ସିନ୍ଧୁ ଆଦ୍ୟ ତନ୍ତ୍ରି ସାତ[12]
ତାହିଂ କର୍ଣ୍ଣ ଚୂଣ ତରଭ ମୁର୍ଦ୍ଧି[13] । ଆଜ ଉଚ୍ଛୁରକୁ ଅଇଲ ଧାଇଂ ସେ[14]
ଲବଣ ସମୁଦ୍ର ଜଳ ସେ[15]
ଉଚ୍ଛୁଳ ମୋହର ଚିରରେ ଲାଗନ୍ତେ ଲବଣ ହେଣୁ ଲବଳ ହେ[16] ॥୩୨॥

---

୧ । କ. ସମୋଦ୍ର କଲ ତାକୁ ଅଠ ଅଣି
ଗ. ଅଣୁ ଅଣି
୨ । ଗ ଘ. ପ୍ରଚଳନ ଯାଇ
୩ । କ. ଅନେକ ବେଲା
୪ । ଘ. ତନ୍ତୁ
୫ । ଗ ଘ. ଲାଗନ୍ତି ତାଙ୍କ ଚିରରେ ହେ
୬ । ଗ. ସ୍ନେହ ବଶେ ଜିହ୍ୱା ଲାହେ ଶରୀରେ
ଘ. ଲାହେ ଶରୀରେ
୭ । କ ଗ. ପ୍ରଥମ ସ୍ତନେ ଲଗାଇ
ଘ. ପ୍ରଥମା ଲେଖା ମାଝଲେ
୮ । ଘ. ମାତା ତନ୍ତୁ
୯ । ଗ. ସେ ପଚ୍ଛାରଲେ ସେ
୧୦ । ଗ ଘ. ହେମାତ ଲବଣ ଅଜ ଲାଗିଲେ ହେ ।
୧୧ । କ ଘ. ଶୁଣ ଦୋହିତ
୧୨ । କ. ସିନ୍ଧୁ ତନ୍ତୁ ଆଦ୍ୟ ସାତ
୧୩ । ଗ ଘ. ତରଙ୍ଗ ଯାଇ
୧୪ । ଗ. ଆସନ୍ତେ ଧାଇଂ ସେ
୧୫ । କ. ଲବଣ ସିନ୍ଧୁ ଜଳରେ ହେ
୧୬ । ଖ. ୩୦ରୁ ୩୨ ପଦର ପାଠ ନାହିଁ

ଶୁଣିଣ କୋପକଲେ ତାଙ୍କ ବନ୍ଧୁ[1] । ଏମନ୍ତ ନଳ ପୁଣି କାହିଁ ଅଛୁ[2]
ଆରବଦନ ମାତା ସଙ୍ଗତେ ଗଲେ । କ୍ରୋଧେଣ ସପତ ସିନ୍ଧୁ ଶୋଷିଲେ ସେ
ପୃଥିବୀ ଜନ[3] ଆକୁଳ ଯେ
ଜାଣିକରି ବ୍ରହ୍ମା ପ୍ରବେଶ ହୋଇଲେ ସଙ୍ଗରେ ଦେବ ସକଳ ଯେ ॥୩୩॥

ପ୍ରାର୍ଥନାକୁ ବହୁ ସ୍ତୁତି[4] ସେ କଲେ । ଶୁଣି ନଦମୀ ସନ୍ତୋଷ ହୋଇଲେ
ପ୍ରସନେ ମେଲ୍ଲ ଦେଲେ ଶ୍ବର ତିର । ପୁଣ ପୂରିଲ୍ଲ ସପତ ସାଗର ସେ
ତାଙ୍କ ନଦମୀ ପୂଜନା ଯେ[5]
ଏକ ତିରକରୁ[6] ଲକ୍ଷେଶ୍ୱର କ୍ଷୀର କଳ୍ପିତ[7] ତାହାକୁ ପିନା ଯେ[8] ॥୩୪॥

ବିରାଟ ଆଗେ ନେଇ ଦେଲେ ତାହା । କ୍ଷୀର ଭୋଜନ କଲେ ନର ନାହା
ପାତ୍ର ମନ୍ତ୍ରୀ ଆଦି ସେନା ସଇନ[9] । ସନ୍ତୋଷେ ସର୍ବେ[10] କଲେ କ୍ଷୀରପାନ ସେ
ବହୁତ ପ୍ରଶଂସା[11] କଲେ ଯେ
କର୍ମବଳେ ଦେଖ କାହୁଂ ଆସିକରି ମହାପୁରୁଷ[12] ମିଳିଲେ ଯେ ॥୩୫॥

ନବଶତ ଗୋପାଳଙ୍କୁ ଅଣାଇଁ । ସମସ୍ତଙ୍କୁ ଶାଢ଼ୀ ବିରାଟ ଦେଇ
ଅପୂର୍ବ ପାଟ ଖଣ୍ଡ ଆଏ ଆଣି । କୃଷ୍ଣଙ୍କ[13] କରେ ଦିଏ ନୃପମଣି ସେ
ଦୁଶାଅ ଯୁଧିଷ୍ଠି ଦେବ ହେ[14]
ତୁମ୍ଭ ଆଜ୍ଞାରେ ସର୍ବଦା ମୁହିଁ ଥିବି ତୁମ୍ଭେ ପିନ୍ଧ ଶାଢ଼ୀ ଦେବ ହେ ॥୩୬॥

---

୧ । ଘ. ପୁଣି କୋପକଲେ ତାଙ୍କର ବନ୍ଧୁ
୨ । ଘ. କାହିଁରେ ଅଛୁ
୩ । ଘ. ପୃଥିବ ଜନେ
୪ । କ. ବହୁ ସ୍ତୁତି
ଗ. ପ୍ରାର୍ଥନାକୁ ବହୁ ସ୍ତୁତ
ଘ. ପ୍ରାର୍ଥନାକୁ ବହୁ ସ୍ତୁତି
୫ । କ. ତାଙ୍କ ନାମଟୀ ପ୍ରାର୍ଥନା ଜେ
୬ । କ ଗ. ଏକ ତିରକୁ
୭ । ଗ. ଲକ୍ଷେଶ୍ୱର ଦୁଗ୍ଧ ସେ କଳ୍ପିତ
ଘ. ଲକ୍ଷେଶ୍ୱର ଦୁଗ୍ଧ କଳିତ
୮ । ଖ. ୩୩ ଓ ୩୪ ପଦର ପାଠ ନାହିଁ
୯ । ଖ. ସେନ୍ୟା ସଇନ
୧୦ । ଖ. ତଦି
୧୧ । ଖ. ପାଇଲେ
୧୨ । ଖ. କର୍ମବଳେ—ମାହାପୁରୁଷ
୧୩ । କ ଗ ଘ. କୋଳ୍ପଙ୍କ
୧୪ । କ. ଯୁଧିଷ୍ଠି ଦେବ ହେ

ଯୁଧିଷ୍ଠି[1] ଆନନ୍ଦେ ଧଇଣ[2] ପାଟ । ବାନ୍ଧିଲେ ସହଦେବଙ୍କ[3] ଲଲାଟ
ତଗଟ ବୋଲନ୍ତି ହେ ତନ୍ତିପାଳ[4] । ନବଲକ୍ଷ ତୁମ୍ଭ ସଙ୍ଗେ ଗୋପାଳ ସେ
ତୁମ୍ଭେ ତହିଁ ଅଧିକାରୀ ହେ
ଲକ୍ଷେଶ୍ୱର ଦୁଗ୍ଧ ଆଣୁଥିବ ଗୋଷ୍ଠୁ ଆପଣେ ଦୋହନ[5] କରି ହେ ॥୩୭॥

ପ୍ରବେଶ କରିବ ଘୋଷ ମନ୍ଦିରେ[6] । ତୁମ୍ଭେ ଭୋଜନ କରିବ[7] ସେଠାରେ
ଗୋପାଳେ ପରିତୋଷଣ ତୁମ୍ଭର । ସର୍ବେ ଖଟିଥିବେ ତୁମ୍ଭ ପଦର ସେ
ଗୋଗୋଷ୍ଠ[8] ଦେଖଣ ଯାଅ ହେ
ମହା ଅରଣ୍ୟରେ କୋମଳ ତୃଣରେ ଗାବଙ୍କୁ[9] ନେଇ ଚରାଅ ହେ ॥୩୮॥

ଶୁଣି ସହଦେବ ପୁଅନା[10] ଭୁଲେ । ଗୋଷ୍ଠ[11] ଦେଖଣ ବନସ୍ତେ ମିଳିଲେ
ତାଙ୍କ ସଙ୍ଗେ ନବଲକ୍ଷ[12] ଗୋପାଳ । ତହିଁରେ ଶ୍ରେଷ୍ଠ ଅଟେ ତନ୍ତିପାଳ[13] ସେ
ବନେ ବହରେ ଆନନ୍ଦେ ସେ
ବିଶ୍ୱମ୍ଭର ମନ ମତ୍ତଭ୍ରମର[14] ଶ୍ରୀକୃଷ୍ଣ ପଦାରବିନ୍ଦେ[15] ସେ ॥୩୯॥

---

୧ । କ. ଯୁଧିଷ୍ଠି
ଘ. ଯୁଧେଷ୍ଠି
୨ । ଗ. ଧଇଲେ
ଘ. ଦେଖଣ
୩ । ଘ ସହଦେବଙ୍କ
୪ । ଘ. ତନ୍ତ୍ରପାଳ
୫ । ଖ. ନେତ୍ୟ ଗୋଗୋଷ୍ଠ ଦୁହନ
ଗ. ଦୁହନ
୬ । ଖ. ମଡପଳି ଘରେ
ଘ. ଅନ୍ନ ମଢରେ
୭ । ଖ. ତୁମ୍ଭେ ଭୋଜନ କରୁଥିବ
୮ । କ ଗ. ସେ ଗୋଷ୍ଠ
୯ । କ. କମଳ ତୃଣରେ ବଛୁଙ୍କୁ
ଖ. କୋଣରେ ଗୋରୁଙ୍କୁ
ଗ. କମଳ ତୃଣରେ ଗାବଙ୍କୁ
ଘ. ମାହା ଅରନ୍ୟରେ—ଗାବଙ୍କୁ
୧୦ । କ. ଯୋଥନା
୧୧ । କ ଖ ଘ. ଗୋଷ୍ଠ
୧୨ । ଖ. ନବଲକ୍ଷ ସଙ୍ଗେ ଜନ୍ତ
୧୩ । ଖ. ତନ୍ତୁପାଳ
ଘ. ଶ୍ରେଷ୍ଠ ଅଟେ ତନ୍ତ୍ରପାଳ
୧୪ । ଘ. ଦାନ ବିଶ୍ୱମ୍ଭର ମନର ଭ୍ରମର
୧୫ । କ ଗ ଘ. ପାଦାରବିନ୍ଦେ

## ଅଷ୍ଟମ ଛାନ୍ଦ

### ରାଗ—କେଦାର

ଏଣେ ଦଶରଥ ନୃପତି ବର[1] । ତେଣେ କୁନ୍ତଭୋଜଙ୍କ ସଙ୍ଗର[2]
ନାନା କଉତୁକେ[3] ପଶା ଖେଳୁଛନ୍ତି ଅତି ଆନନ୍ଦ ମନର ॥୧॥
ସଙ୍ଗେ ପାତ୍ର ମନ୍ତ୍ରୀ ସେନାମାନେ[4] । ଚଉକି ବସି ଯେ ଯାହା ସ୍ଥାନେ
ପ୍ରବେଶି ମାଲ ପରବେଶ[6] ହୋଇଲେ ଦେଖନ୍ତି ସକଳ ଜନେ ॥୨॥
ଆସି ଆସ୍ଥାନ ତଳେ ମିଳିଲା । ଅତି ଉଚ୍ଚକରି[7] କୁହାଟିଲା
ବେଣବାହେ ଠିକ ଜଣେ କର ଦେଇ ଦଶରଥ ଶୁଣ ବୋଇଲା ॥୩॥
ମୁହିଁ ବଳେ ଅଟେ ବଳିଆର[8] । ଶତସିଂହ ପରାକ୍ରମ ମୋର[9]
ପୃଥିବୀ ଭ୍ରମୁଛି[10] ଷଣ୍ଢ କି ଦେଖିଲେ କରଇ ତାରେ ସମର ॥୪॥
ବଳେ[11] ବହୁତ ବୀର ମାଇଲା । ଯୋଗେ ଏଥିରେ ଆସି ମିଳିଲା[12]
ତୋ ଶଳା କଣ୍ଟକ[13] ଅତି ବଳିଆର ଏମନ୍ତ ମୁହିଁ ଶୁଣିଲା ॥୫॥
ଏବେ[14] ତାହାଙ୍କୁ ବହନ ଆଣ । ମୋର ସଙ୍ଗତରେ[15] କରୁ ରଣ[16]
ଦଶରଥ ନୃପତି ବୋଲନ୍ତି[17] ହେ ବୀର ଆମ୍ଭ ତହୁଁ ଏବେ ଶୁଣ ॥୬॥

---

୧ । କ. ନୃପ ବର
ଘ. ନୃପ ଠାକୁର
୨ । କ ଗ ଘ. କୋନ୍ତଭୋଜଙ୍କ ସଙ୍ଗର
୩ । ଘ. ଅତି କଉତୁକେ
୪ । ଖ. ସେନାମାନେ
୫ । ଖ. ବସିଅଛନ୍ତି ଆସ୍ଥାନେ
୬ । କ ଗ. ପ୍ରବେଶ
୭ । ଖ. ଉଚ୍ଚେ
୮ । କ. ବଳେ ବଳୀଆର
ଖ. ମୁଂ ଅଟଇ ବଳଆର
୯ । କ. ସତସିଂହ ପରାକ୍ରମ ମୋହର
ଖ. ଶତସିଂହ ବଳ ମୋର
ଗ. ସାତସିଂହ ପରାକ୍ରମ ମୋର
ଘ ସାତସିଂହ ପରାକ୍ରମ ମୋହର
୧୦ । ଘ. ଭ୍ରମିମୁଂ
୧୧ । ଖ 'ବଳେ' ପାଠ ନାହିଁ
୧୨ । ଖ ଗ ଘ. ପାଇଲି
୧୩ । ଘ. କଣ୍ଟକ
୧୪ । ଖ. 'ଏବେ' ପାଠ ନାହିଁ
୧୫ । ଖ. ସଙ୍ଗେ
ଘ. ସଙ୍ଗରେ
୧୬ । ଘ. କରୁ ସେ ରଣ
୧୭ । କ. ଦଶରଥ ବୋଲନ୍ତି
ଗ. ଦଶରଥ ନୃପତି ବୋଲନ୍ତି

